# ଆମେରିକାର ଶ୍ରେଷ୍ଠ ଗଳ୍ପ



ଅନୁବାଦ
ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

ଏହି ଅନୁବାଦକଙ୍କର :

ଅଚ୍ଛବ

ସଙ୍ଗମ

ବନ୍ଦିଘର

ଅଙ୍ଗୀକାର

ବାଟୋୟାଲା

ବନଶ୍ରୀ

ନଗ୍ନ ସତ୍ୟ

ମା ଓ ପୁଅ

ଆନା କାରେନିନା

ବିଦାୟ, ଗୁରୁଦେବ

ଅପରିଚିତାର ପତ୍ର

ଦେଶ ବିଦେଶର କାହାଣୀ

ଦୁଇଟି ନଗରୀର କାହାଣୀ

ବିବେକାନନ୍ଦ: ଜୀବନ ଓ ବାଣୀ

# ସୂଚୀପତ୍ର

# ଯୌବନ ସୁରା

ଚିକିତ୍ସକ ଭାବରେ ଡାଃ ହାଇଡେଗାର ଦିନେ ବେଶ୍ ପରିଚିତ ଥିଲେ । କିନ୍ତୁ ତାଙ୍କର ପ୍ରକୃତି ଥିଲା ଟିକିଏ ଅଦ୍ଭୁତ ଧରଣର । ମଥାରେ ଟିକିଏ ଗୋଳମାଳ ଥିଲା ବୋଲି ବି ଶୁଣାଯାଏ । ଏଥି ପାଇଁ ତାଙ୍କ ସମ୍ପର୍କରେ ବହୁ ଅଲୌକିକ ଗଳ୍ପ ପ୍ରଚଳିତ ଅଛି । ଏହି ସବୁ ଗଳ୍ପର କେତେ ଅଂଶ ସତ୍ୟ, ତା କହି ପାରିବନି । ତେବେ ଲୋକେ ସାଧାରଣତଃ ତାହା ବିଶ୍ୱାସ କରନ୍ତି ।

ଦିନେ ଏହି ବୃଦ୍ଧ ଡାକ୍ତର ଷ୍ଟାଡିକୁ ଆସିବା ପାଇଁ ତାଙ୍କର ଚାରି ଜଣ ବନ୍ଧୁଙ୍କୁ ନିମନ୍ତ୍ରଣ କଲେ । ଚାରି ଜଣ ବନ୍ଧୁଙ୍କ ମଧ୍ୟରୁ ତିନି ଜଣ ପୁରୁଷ ଆଉ ଜଣେ ବିଧବା ମହିଳା । ତାଙ୍କର ନାମ ହେଉଛି ୱଇସାର୍ଲି ଏବଂ ବନ୍ଧୁମାନଙ୍କ ନାମ ହେଉଛି ମିଃ ମେଡ଼ବୋର୍ଣ୍ଣ, କର୍ଣ୍ଣେଲ କିଲିଗ୍ରୁ ଏବଂ ମିଃ ଗ୍ୟାସକୟନ । ଜୀବନରେ ସେମାନେ ସନ୍ତୁଷ୍ଟ ହୋଇ ପାରି ନାହାନ୍ତି, ତେଣୁ ଦୁଃଖ ଭାରାକ୍ରାନ୍ତ ଜୀବନ ବହନ କରି କୌଣସି ମତେ ବଞ୍ଚିଛନ୍ତି । ମୃତ୍ୟୁକୁ ଆହ୍ୱାନ କରି ବି ସେମାନେ ତାର ଶୀତଳ ହସ୍ତର ସ୍ପର୍ଶ ପାଇ ନାହାନ୍ତି, ତେଣୁ ଦୁର୍ଭାଗ୍ୟର ବୋଝ ବଢ଼ି ଚାଲିଛି ସେମାନଙ୍କର ।

ଯୌବନରେ ବ୍ୟବସାୟ କରି ପ୍ରଚୁର ଅର୍ଥ ଉପାର୍ଜ୍ଜନ କରି-ଥିଲେ ମିଃ ମେଡ଼ବୋର୍ଣ୍ଣ । କିନ୍ତୁ ବିଳାସଗିରି କରିବାକୁ ଯାଇ ସବୁ

ହୋଇ ଆଜ ସେ ଭିଖାରି । କର୍ଣ୍ଣେଲ କିଲିଗ୍ରୁ ଥିଲେ ଉଚ୍ଛୃଙ୍ଖଳ ପ୍ରକୃତିର । ବଦ୍‌ଖିଆଲରେ ତାଙ୍କର ସ୍ୱାସ୍ଥ୍ୟ, ଶକ୍ତି ଓ ଅର୍ଥ ନଷ୍ଟ ହୋଇଛି । ବର୍ତ୍ତମାନ ବାତ ବ୍ୟାଧି ତାଙ୍କର ଚିର ସଙ୍ଗୀ । ବ୍ୟଥା ବେଦନାକୁ ନେଇ ତାଙ୍କୁ ଦିନ କାଟିବାକୁ ହୁଏ । ମିଃ ଗ୍ୟାସକଏନ୍ ରାଜନୀତି କରିବାକୁ ଯାଇ ପ୍ରଚୁର ଦୁର୍ନାମ କିଣିଛନ୍ତି । କିନ୍ତୁ କାଳ କ୍ରମେ ତାଙ୍କ କଥା ସମସ୍ତେ ଭୁଲି ଯାଇଛନ୍ତି, ତେଣୁ ଗାଳି ଗୁଲଜ ହାତରୁ ସେ ରକ୍ଷା ପାଇଛନ୍ତି ।

ମିସେସ୍ ଉଇସାର୍ଲି ଯୌବନରେ ଯେ ଅନୁପମ ସୌନ୍ଦର୍ଯ୍ୟର ଅଧିକାରିଣୀ ଥିଲେ, ତାହା ତାଙ୍କୁ ଦେଖିଲେ ବେଶ୍ ବୁଝାଯାଏ । କିନ୍ତୁ ଏହି ସୌନ୍ଦର୍ଯ୍ୟ ହିଁ ଥିଲା ତାଙ୍କର ଶତ୍ରୁ । ତାଙ୍କ ନାମରେ ସହରରେ ବଦନାମ ରଟିବାରୁ ତାଙ୍କୁ ବହୁ ଦିନ ଆତ୍ମଗୋପନ କରି ରହିବାକୁ ହୋଇଥିଲା । ଉପରୋକ୍ତ ତିନି ଭଦ୍ରଲୋକ ହିଁ ଦିନେ ଉଇସାର୍ଲିଙ୍କର ପ୍ରେମ-ଭିଖାରି ଥିଲେ । ଏଥିପାଇଁ ସେମାନଙ୍କ ନିଜ ନିଜ ଭିତରେ କଳି କନ୍ଦଳ ବି କମ୍ ହୋଇ ନାହିଁ ।

ବନ୍ଧୁମାନେ ଷ୍ଟାଡିରେ ଉପସ୍ଥିତ ହେବାରୁ ସେମାନଙ୍କୁ ବସିବାକୁ ଅନୁରୋଧ କରି ଡାକ୍ତର ହାଇଡେଜାର କହି ାକୁ ଲାଗିଲେ, "ପ୍ରିୟ ବନ୍ଧୁଗଣ, ମୁଁ ଗୋଟିଏ ଔଷଧ ବାହାର କରିଛି । ତାର ପରୀକ୍ଷା କାର୍ଯ୍ୟ ଚଳାଇବା ପାଇଁ ମୁଁ ତୁମ୍ଭମାନଙ୍କର ସାହାଯ୍ୟ ଚାହୁଁଛି ।"

ବନ୍ଧୁମାନେ ଚୌକିରେ ବସି ଥରେ ମେଳି ଘରର ଚାରିଆଡ଼କୁ ଅନାଇଲେ । ଯେପରି କି ଏକ ରହସ୍ୟରେ ଆଚ୍ଛାଦିତ ହୋଇଛି ଘରଟି । ପ୍ରାୟ ଅନ୍ଧକାରାଚ୍ଛନ୍ନ ତାର ଭିତରଟା, ଏଠି ସେଠି ଅଜସ୍ର ମାକଡ଼ସାର ଜାଲ । ଧୂଳି ବି ଅନେକ ଜମି ଯାଇଛି । କାନ୍ଥରେ କେତେଗୁଡ଼ିଏ ବୁକ୍ କେସ୍ । ନାନା ଆକୃତିର ବହି ଆଉ ବଡ଼

ବଡ଼ ଫାଇଲରେ ଭର୍ତ୍ତି । ମଝି ବୁକ୍ କେସ୍‌ରେ ହିପୋକ୍ରେଟିସଙ୍କର
ଏକ ବ୍ରୋଞ୍ଜ ମୂର୍ତ୍ତି ଥିଲା । ଶୁଣା ଯାଏ, ବିପଦ ସମୟରେ ଡାଃ
ହାଇଡ୍ରେଜାର କୁଆଡ଼େ ତା ସଙ୍ଗେ ପରାମର୍ଶ କରନ୍ତି । ଘରର
ଗୋଟିଏ କଣରେ ଗୋଟିଏ ଲମ୍ବା ଅଲମାରୀ ଥିଲା । ଅଲମାରୀର
ଖୋଲା ଦୁଆର ଦେଇ ଗୋଟିଏ ନର କଙ୍କାଳର ଛାୟା ଦେଖା
ଯାଉଥିଲା । ଦୁଇଟା ବୁକ୍ କେସ୍‌ର ମଝିରେ ଧୂଳି ବୋଳା ଗୋଟିଏ
ଆଇନା ଝୁଲୁଥିଲା । ଶୁଣା ଯାଏ, ଡାକ୍ତରଙ୍କର ସମସ୍ତ ମୃତ ରୋଗୀଙ୍କ
ମୁଖ କୁଆଡ଼େ ଏହି ଆଇନାରେ ଅଙ୍କା ଅଛି । ମଝିରେ ମଝିରେ
କୁଆଡ଼େ ସେମାନେ ଡାକ୍ତରଙ୍କ ଆଡ଼କୁ ଅନାଇଥାନ୍ତି । ଘରର
ଆର ପାଖରେ ଜଣେ ତରୁଣୀର ଛବି ଟଙ୍ଗା ଯାଇଛି । ଧୂଳିରେ
ଛବିଟା ଅତ୍ୟନ୍ତ ମ୍ଳାନ ଦେଖା ଯାଉଥିଲା । ଶୁଣା ଯାଏ, ଏହି ତରୁଣୀ
ସଙ୍ଗରେ ଡାକ୍ତରଙ୍କର ବିବାହ ହେବାର ଥିଲା, କିନ୍ତୁ କୌଣସି
କାରଣରୁ ଛିଣ୍ଡିଟି ବିବାହ ଦିନ ସନ୍ଧ୍ୟାରେ ବିଷ ଖାଇ ଆତ୍ମହତ୍ୟା
କଲା ।

ଘରର ସବୁ ଠାରୁ ଯାହା ଅଦ୍ଭୁତ, ତା କଥା ଏପର୍ଯ୍ୟନ୍ତ କୁହା
ଯାଇ ନାହିଁ । ସେ ହେଉଛି ଗୋଟିଏ ବିରାଟ ବହି । ଖୁବ୍ ଭଲ
ଚମଡ଼ାରେ ବନ୍ଧା ହୋଇଛି । କିନ୍ତୁ ବହିଟାର ନାମ ଯେ କଣ କେହି
ଜାଣନ୍ତି ନାହିଁ । ତେବେ ଏଟା ଯେ ଗୋଟିଏ ମ୍ୟାଜିକ୍ ବହି ତାହା
ଅନେକେ ଜାଣନ୍ତି । ଦିନେ ହୋଇଛି କଣ ନା, ଘରର ଗୃହକର୍ମିଣୀ
ବହିଟା ପରିଷ୍କାର କରିବା ପାଇଁ ଛୁଇଁଛି କି ନାହିଁ ତତ୍‌କ୍ଷଣାତ୍
ନର କଙ୍କାଳଟା ମଡ଼ମଡ଼ କରି ଉଠିଲା, ଛବିର ତରୁଣୀ ପାଦେ
ଆଗେଇ ଆସିଲା ଏବଂ ଆଇନା ଭିତରୁ ଅନେକଗୁଡ଼ିଏ କୁତ୍ସିତ ମୁଖ
ଉଙ୍କି ମାରିବାକୁ ଆରମ୍ଭ କଲା, ଆଉ ସେପଟେ ହିପୋକ୍ରେଟିସ୍
ଭ୍ରୂ-କୁଞ୍ଚନ କରି କହି ଉଠିଲା 'ରହ' ।

ଏହି ହେଉଛି ଡା: ହାଇଡେଗାରଙ୍କର ଷ୍ଟାଡ଼ି ।

ସେ ଦିନ ଏହି ଷ୍ଟାଡିରେ ଗୋଟିଏ କଳା ଗୋଲ ଟେବୁଲ ଘେରି ପାଖରେ ବସିଥିଲେ ଡାକ୍ତର ଆଉ ତାଙ୍କର ଚାରି ବନ୍ଧୁ ।

ଅପରାହ୍ନ ବେଳା । ଝରକା ଫାଙ୍କ ବାଟେ ସୂର୍ଯ୍ୟ କିରଣର ରେଖାଟିଏ ଆସି ଘରେ ପଡ଼ିଥିଲା ।

"ତୁମ୍ଭେମାନେ ଯଦି ସାହାଯ୍ୟ କରନ୍ତ," ଡାକ୍ତର କହିବାକୁ ଲାଗିଲେ, "ତେବେ ମୋର ଗୋଟାଏ ଅଦ୍ଭୁତ ଏକ୍‌ସପେରିମେଣ୍ଟ ମୁଁ କରି ପାରନ୍ତି ।" କିନ୍ତୁ ଜବାବ ପାଇଁ ଅପେକ୍ଷା ନ କରି ସେହି ମୋଟା କଳା ବହିଟା ନେଇ ଆସିଲେ । ତା ପରେ ବହିଟା ଖୋଲି ତା ଭିତରୁ ବାହାର କଲେ ଗୋଟିଏ ଅତି ଜୀର୍ଣ୍ଣ ଗୋଲାପ ଫୁଲ । ଫୁଲ ଆଉ ତାକୁ କହିଲେ ଚଳିବନି । ତାର ପାଖୁଡ଼ା ଆଉ କେଶର ଏପରି ଭାବରେ ଶୁଖି ଯାଇଛି ଯେ ତାହା ଏକ୍ଷଣି ଗୁଣ୍ଡ ହୋଇ ପଡ଼ିଯିବ ।

"ଏହି ଗୋଲାପଟି", ଦୀର୍ଘ ନିଃଶ୍ୱାସ ଛାଡ଼ି ଡାକ୍ତର କହିବାକୁ ଲାଗିଲେ, "ଶୁଖି ଯାଇଥିବା ଏହି ଫୁଲଟି ଫୁଟିଥିଲା ୫୫ ବର୍ଷ ଆଗେ । ଏହି ଯେ ଦେଖୁଛ ଝିଅଟିର ଛବି, ସେ ଦେଇଥିଲା ମୋତେ ଏ ଫୁଲଟି । କଥା ଥିଲା ବିବାହ ଦିନ ଏଟା ମୁଁ ବ୍ୟବହାର କରିବି ମୋର କୋଟରେ । ସେ ଦିନ ଠାରୁ ଆଜି ଯାଏ ତାହା ରହିଛି ଏହି ବହିର ପୃଷ୍ଠାରେ ଆବଦ୍ଧ ହୋଇ । କିନ୍ତୁ ଏହି ଫୁଲଟିକୁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ପରେ ଆଉ ଥରେ ନୂଆ କରି ଫୁଟା ଯାଇପାରେ, ତାହା କଣ ତୁମ୍ଭେମାନେ ବିଶ୍ୱାସ କରିବ ?"

"ନନ୍‌ସେନ୍‌ସ" ମହିଳାଟି କହିଲା, "ବୃଦ୍ଧାର କୁଞ୍ଚି ହୋଇ ଯାଇଥିବା ଚମଡ଼ା କଣ ତରୁଣୀ ପରି ସତେଜ ହୋଇ ଉଠିପାରେ ?"

"ପାରେ କି ନା ନିଜେ ଦେଖ ।" ଡାକ୍ତର ଜବାବ ଦେଲେ ।

ସେମାନେ ଯେଉଁଠାରେ ବସିଥିଲେ, ତାର ଅଦୂରରେ ଗୋଟିଏ ଜଳପୂର୍ଣ୍ଣ ପାତ୍ର ଥିଲା । ଡାକ୍ତର ଏହି ଫୁଲଟିକୁ ଜଳ ଭିତରେ ପକାଇ ଦେଲେ । କିଛି ସମୟ କଟିଗଲା । ଧୀରେ ଧୀରେ ଗୋଲାପ ମଧ୍ୟରେ ଯେପରି ପ୍ରାଣର ସଞ୍ଚାର ହେବାକୁ ଲାଗିଲା । ତାର ସେହି ଗୋଲାପୀ ରଙ୍ଗ ଫେରି ଆସିଲା । ବୃନ୍ତ ଡାଳ ଓ ପତ୍ର ସବୁଜ ହୋଇ ଉଠିଲା । ସଦ୍ୟସ୍ଫୁଟ ଗୋଲାପ ପରି ସତେଜ ଓ ସୁନ୍ଦର ହୋଇ ଉଠିଲା ଗୋଲାପଟି ।

"ମ୍ୟାଜିକଟା କିନ୍ତୁ ମନ୍ଦ ନୁହେଁ", ଡାକ୍ତରଙ୍କ ବନ୍ଧୁମାନେ ମନ୍ତବ୍ୟ କଲେ । "କିପରି କଲ କୁହତ ।"

"ଯୌବନ ଝରଣାର କଥା ଶୁଣିଛ ତୁମ୍ଭେମାନେ ? ଯାହାର ଅନୁସନ୍ଧାନରେ ଦୁଇ ତିନି ଶତାବ୍ଦୀ ପୂର୍ବେ ଜଣେ ସ୍ପ୍ୟାନିସ୍ ବାହାରିଥିଲେ ।" ଡାକ୍ତର କହିଲେ ।

"ସେ କଣ ତାକୁ ଖୋଜି ପାଇଥିଲା ?" ବ୍ୟଗ୍ର ଭାବରେ ପ୍ରଶ୍ନ କଲା ମହିଳାଟି ।

"ନା, ପାଇ ନାହିଁ । କାରଣ ସେ ଉପଯୁକ୍ତ ସ୍ଥାନରେ ଖୋଜି ନାହିଁ । ମୋର ବିଶ୍ୱାସ, ମୁଁ ତାହା ଖୋଜି ବାହାର କରିବାରେ ସମର୍ଥ ହୋଇଛି । ସେହି ଝରଣାର କିଛି ଜଳ ରହିଛି ଏହି ପାତ୍ରରେ ।"

"ତା ନୁହେଁ ଆଉ କଣ !" ଅବିଶ୍ୱାସର ଭଙ୍ଗୀରେ କର୍ଣ୍ଣେଲ କିଲଗ୍ରୁ କହିଲେ । "ମଣିଷ ଉପରେ ପ୍ରୟୋଗ କଲେ, ଫଳ କଣ ହେବ କହି ପାରିବ ?"

"ନିଜେ ପରୀକ୍ଷା କରି ଦେଖ ।" ଡାକ୍ତର ଜବାବ ଦେଲେ । "ନିଜର ଯୌବନ ଫେରି ପାଇବାକୁ ଯେତେ ଜଳ ଦରକାର, ତୁମ୍ଭେମାନେ ତାହା ସ୍ୱଚ୍ଛନ୍ଦରେ ବ୍ୟବହାର କରିପାର । ମୁଁ ଅବଶ୍ୟ

ତାକୁ ଆଜି ବ୍ୟବହାର କରୁ ନାହିଁ । କାରଣ, ଏ ବୃଦ୍ଧ ହେବାକୁ ମୋତେ ବହୁତ କଷ୍ଟ ଭୋଗିବାକୁ ହୋଇଛି । ସୁତରାଂ ମୁଁ ଆଉ ଯୁବକ ହେବାକୁ ଚାହେଁ ନା । ତେବେ ମଣିଷର ଦେହରେ ଏହାର ଫଳାଫଳ ମୁଁ ଏଠାରେ ବସି ଦେଖିବାକୁ ଚାହେଁ ।" କହୁଁ କହୁଁ ଡ଼ାକ୍ତର ଚାରୋଟି ଗ୍ଲାସ ପୂର୍ଣ୍ଣ କରି ପକାଇଲେ । ସୋଡ଼ା ପାଣି ପରି କ୍ଷୁଦ୍ର କ୍ଷୁଦ୍ର ବୁଦ୍‌ବୁଦ ଉଠୁଥିଲା ଗ୍ଲାସ ଉପରେ, ଚମତ୍କାର ଗୋଟିଏ ଗନ୍ଧ ବାହାରୁ ଥିଲା । ବନ୍ଧୁମାନେ ତାହା ପାନ କରିବା ପାଇଁ ଉତ୍‌କଳା ହୋଇ ଉଠିଲେ, କିନ୍ତୁ ଡାକ୍ତର ସେମାନଙ୍କୁ ସାବଧାନ କରାଇ କହିଲେ, "ବନ୍ଧୁଗଣ, ଏହି ପାନୀୟ ଗ୍ରହଣ କରିବା ପୂର୍ବରୁ ଗୋଟିଏ କଥା ମୁଁ ତୁମ୍ଭମାନଙ୍କୁ ସ୍ମରଣ କରାଇ ଦେବାକୁ ଚାହେଁ । ସେ ହେଉଛି, ଯୌବନର ଦୁର୍ଗମ ପଥ ଦ୍ୱିତୀୟ ବାର ଅତିକ୍ରମ କରିବା ପାଇଁ ତୁମ୍ଭମାନଙ୍କର କେତୋଟି ସାଧାରଣ ନିୟମ କାନୁନ ରଚନା କରିବା ଉଚିତ । କାରଣ, ତୁମ୍ଭମାନଙ୍କର ଅତୀତର ଅଭିଜ୍ଞତାରୁ ତୁମ୍ଭେମାନେ ଯଦି ନୂଆ ଜୀବନରେ ସମସ୍ତଙ୍କର ଆଦର୍ଶ ସ୍ଥାନୀୟ ହୋଇ ନ ପାର, ତେବେ ତାହା ଯେପରି ଦୁଃଖର କଥା ସେପରି ଅନ୍ୟାୟ ବି ହେବ ।"

ବନ୍ଧୁମାନେ ଟିକିଏ ସ୍ମିତ ହାସ୍ୟ କଲେ, କିନ୍ତୁ କେହି କିଛି କହିଲେ ନାହିଁ ।

"ନିଅ, ଏଥର ତୁମ୍ଭେମାନେ ଯୌବନର ସୁରା ପାନ କର ।"

କମ୍ପିତ ହସ୍ତରେ ସେମାନେ ଗ୍ଲାସ ନେଇ ପାନୀୟ ନିଃଶେଷ କରି ଦେଲେ । କ୍ଷଣକ ପରେ ସେମାନଙ୍କ ଦେହରେ ଗୋଟିଏ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖା ଦେଲା । ମଦ ନିଶା ପରି ଗୋଟିଏ ନିଶାରେ ସେମାନଙ୍କ ମନରେ ଶିହରଣ ଜାଗିଲା । ଶବ ପରି ବିଶୀର୍ଣ୍ଣ ଗାଲରେ ରକ୍ତିମାଭା ଫୁଟି ଉଠିଲା । ସେମାନେ ପର-

ଷ୍ଟରକୁ ଚାହିଁଲେ । ସେମାନଙ୍କର ମନେ ହେଉଥିଲା, ଯେପରି କୌଣସି ଏକ ଅଦୃଶ୍ୟ ଶକ୍ତି ସେମାନଙ୍କ ଶରୀରରୁ କଳା ରେଖା ପୋଛି ଦେଇଛି । ମନ୍ତ୍ରୀଳାଣି ତାର ଟୋପିଟା ଠିକ୍ କରି ପିନ୍ଧିଲା ।

"ଆଉ ଦିଅ, ଆଉ ଦିଅ ଆମ୍ଭମାନଙ୍କୁ ଏହି ଯୌବନ ସୁଧା" ବୋଲି ସମସ୍ତେ ଚିତ୍କାର କରି ଉଠିଲେ ।

"ଅପେକ୍ଷା କର ଭାଇ!" ଡାକ୍ତର କହିଲେ । "ବୁଢ଼ା ହେବାକୁ ତୁମ୍ଭମାନଙ୍କୁ ଅନେକ ଦିନ ଲାଗିଛି, କିନ୍ତୁ ଅଧ ଘଣ୍ଟାକ ଭିତରେ ତୁମ୍ଭେମାନେ ଯୌବନ ଫେରି ପାଇବ । ସୁତରାଂ ଅସ୍ଥିର ହୁଅନା ।" କହି ସେ ସେମାନଙ୍କର ଗ୍ଲାସ ଗୁଡ଼ିକ ଭରି ଦେଲେ । ମୁହୂର୍ତ୍ତକ ଭିତରେ ଖାଲି କରି ପକାଇଲେ ସେମାନେ ଗ୍ଲାସଗୁଡ଼ାକ । ଦୃଷ୍ଟି ସେମାନଙ୍କର ହେଲା ସ୍ୱଚ୍ଛ ଆଉ ଉଜ୍ଜ୍ୱଳ ।

"ଆଃ, କି ଚମତ୍କାର ଦେଖା ଯାଉଛ ଉଇସାର୍ଲି," କର୍ଣ୍ଣେଲ କିଲିଗ୍ରୁ କହିଲେ । କର୍ଣ୍ଣେଲ କିଲିଗ୍ରୁଙ୍କର ଯେ ଅତିଶୟୋକ୍ତି କରିବାର ଅଭ୍ୟାସ ଅଛି, ଉଇସାର୍ଲି ତାହା ଜାଣନ୍ତି । ତେଣୁ ତାଙ୍କ କଥାରେ କର୍ଣ୍ଣପାତ ନ କରି ସତ୍ୟରେ ତାଙ୍କର କୌଣସି ପରିବର୍ତ୍ତନ ହୋଇଛି କି ନାହିଁ ଦେଖିବା ପାଇଁ ସେ ଆଇନା ପାଖକୁ ଦୌଡ଼ିଗଲେ । ସେ ପଟେ ଅନ୍ୟ ତିନି ଜଣଙ୍କ ପ୍ରାଣରେ ବହିଲା ସ୍ଫୂର୍ତ୍ତିର ବନ୍ୟା । ମଦ ନିଶାରେ ଅନେକେ ଯେପରି ହୁଅନ୍ତି ସେପରି । ମିଃ ଗ୍ୟାସକଏନଙ୍କ ମସ୍ତିଷ୍କରେ ରାଜନୀତିର ଜଟିଳ ସମସ୍ୟାଗୁଡ଼ିକ ଘଣ୍ଟାଚକଟା କରିବାକୁ ଲାଗିଲେ । ସେ ଅନବରତ ବକିବାକୁ ଲାଗିଲେ ସ୍ୱଦେଶ ପ୍ରେମ, ଜାତୀୟ କୀର୍ତ୍ତି ଆଉ ମଣିଷର ଅଧିକାର ସଂପର୍କୀୟ ପ୍ରବଚନସବୁ; ଆଉ କେତେବେଳେ ରହିଯାଇ ଫୁସ୍ ଫୁସ୍ କରି କଣ ସବୁ କହିବାକୁ ଲାଗିଲେ । ମଝିରେ ମଝିରେ ପୁଣି ବକ୍ତୃତା ଭଙ୍ଗୀରେ କହି ଯାଉଥିଲେ ଅନେକ କଥା । କର୍ଣ୍ଣେଲ କିଲିଗ୍ରୁ

ଏହା ଭିତରେ ଙ୍କାହାନ୍ତି । ସେ ବୋତଲରେ ଠୁଂ, ଠାଂ ଶବ୍ଦ କରି କରି ଗାଇବାକୁ ଲାଗିଲେ ପ୍ରେମର ଗୀତ, କିନ୍ତୁ ଦୃଷ୍ଟି ତାଙ୍କର ନିବଦ୍ଧ ଥିଲା ଉଇସାର୍ଲିଙ୍କ ଉପରେ । ମିଃ ମେଡ୍ବୋର୍ଣ୍ଣ ବ୍ୟବସାୟର ଦୁରୂହ ସମସ୍ୟା ନେଇ ବ୍ୟସ୍ତ ଥିଲେ । କପରି ଭାବରେ ଆମଦାନୀ ରପ୍ତାନି କରି ଆଉ ଦୁଇ ପଇସା ଅଧିକ କରିପରିବ, ତାର ହିସାବ କରୁଥିଲେ ସେ ।

ମିସେସ୍ ଉଇସାର୍ଲି ଏକାଗ୍ର ଦୃଷ୍ଟିରେ ଅନାଇଥିଲେ ଆଇନା ଆଡ଼କୁ । ଆଖିରେ ତାଙ୍କର ସପ୍ରେମ ଦୃଷ୍ଟି । ନୂଆ ଜୀବନର ରସ ମଦିରା ତାଙ୍କୁ ପାଗଳ କରି ପକାଉଥିଲା । ତେଣୁ ସେ ଥରେ ଦୌଡ଼ି ଆସିଲେ ଟେବୁଲ ପାଖକୁ, ସାନୁନୟନରେ ଡାକ୍ତରଙ୍କ ପାଖରୁ ମାଗିଲେ ଆଉ ଗିଲାସେ ଯୌବନ ସୁରା ।

"ଏଇ ଯେ ନିଅ ।" ମୃଦୁ ହସି ଡାକ୍ତର ଟେକି ଦେଲେ ତାଙ୍କ ହାତକୁ ଆଉ ଗୋଟିଏ ଗ୍ଲାସ ।

ସୂର୍ଯ୍ୟ ସେତେବେଳକୁ ଅସ୍ତାଚଳଗାମୀ । ତେଣୁ ଘରର ଆଲୋକ ଅନେକ ପରିମାଣରେ କମି ଯାଇଥିଲା । କିନ୍ତୁ ତା ମଝିରେ ଝିକ୍ ଝିକ୍ କରୁଥିଲା ପାତ୍ର ଭରା ସେହି ଯୌବନ ସୁରା । ଉଜ୍ଜ୍ୱଳ ଆଉ ଉନ୍ମାଦନାମୟ ।......

ଯୌବନ ତାର ପରିପୂର୍ଣ୍ଣ ଐଶ୍ୱର୍ଯ୍ୟ ଘେନି ଜାଗି ଉଠୁଥିଲା ଡାକ୍ତରଙ୍କ ବନ୍ଧୁମାନଙ୍କ ଦେହରେ । ବନ୍ୟା ଜଳର ସ୍ରୋତ ଜାଗିଥିଲା ସେମାନଙ୍କ ପ୍ରାଣରେ । ମନେ ମନେ ଅପୂର୍ବ ଶିହରଣ । ଏ ପୃଥିବୀରେ ନୂତନ ଜାଗିଥିବା ପ୍ରାଣୀ ଯେପରି ସେମାନେ !

"ଆମେ ତରୁଣ, ଆମେ ଯୁବକ !" ଅସହ୍ୟ ଆନନ୍ଦରେ ସେମାନେ ଚିତ୍କାର କରି ଉଠିଲେ ।

ସଙ୍ଗେ ସଙ୍ଗେ ଆରମ୍ଭ ହେଲା ତରୁଣ ମନର ଅଦ୍ଭୁତ ସବୁ ଖିଆଲର ପ୍ରକାଶ । ପରିହାସ କରିବାକୁ ଲାଗିଲେ ସେମାନେ ପ୍ରୌଢ଼ତ୍ୱର ଅକର୍ମଣ୍ୟତାକୁ, ଉପହାସ କରିବାକୁ ଲାଗିଲେ ଜଡ଼ତ୍ୱକୁ । ନିଜର ସେହି ଅତି ପୁରାତନ କାଳର ପୋଷାକ ପରିଚ୍ଛଦ ଦେଖି ଭାରି ହସ ମାଡ଼ିଲା ସେମାନଙ୍କୁ । ବାତୁଆ ବୁଢ଼ା ପରି ଭଙ୍ଗୀ କରି ଜଣେ ଚାଲିବାକୁ ଲାଗିଲେ । ଆଉ ଜଣେ ନାକ ଉପରେ ଚଷମାଟା ଟାଣି ଦେଇ ସେହି ମୋଟା ବହି ନେଇ ପଢ଼ିବାକୁ ବସିଲେ, ଅପର ବନ୍ଧୁଟି ବଡ଼ ଗର୍ବରେ ଆରାମ ଚୌକିରେ ବସି ରହିଲେ । ତାପରେ ସମସ୍ତେ ମିଶି ହଲ୍ଲା କରି ଘର ଭିତରେ ଦୌଡ଼ାଦୌଡ଼ି କରିବାକୁ ଲାଗିଲେ । ଉଇଡୋ ୱାର୍ଲି ନବୋଦ୍‌ଭିନ୍ନ-ଯୌବନା-ତରୁଣୀ ପରି କୌଣସି ଗୋଟାଏ ଦୁଷ୍ଟ ବୁଦ୍ଧି ନେଇ ଡାକ୍ତରଙ୍କ ଆଡ଼କୁ ଆଗେଇ ଗଲେ ।

"ଆସ ଡାକ୍ତର, ମୋ ସଙ୍ଗେ ନାଚିବ ଆସ ।" ଆନନ୍ଦରେ ଗଦଗଦ ହୋଇ ସେ କହିଲେ । ବୃଦ୍ଧ ସଙ୍ଗେ ତରୁଣୀର ନୃତ୍ୟ, ଭଦ୍ରଲୋକ ମାନେ ସମସ୍ତେ ହୋ ହୋ କରି ହସି ଉଠିଲେ ।

"ମୋତେ କ୍ଷମା କରିବାକୁ ହେବ"- ଶାନ୍ତ ଭାବରେ ଡାକ୍ତର ଜବାବ ଦେଲେ । "ମୁଁ ଏକେ ତ ବୃଦ୍ଧ, ତାପରେ ବାତ ରୋଗୀ । ନୃତ୍ୟ କରିବା ପରି ଅବସ୍ଥା ଆଉ ମୋର ନାହିଁ । କିନ୍ତୁ ସେମାନଙ୍କ ଭିତରୁ ଯେ କେହି ତୁମ ପରି ସୁନ୍ଦରୀର ଅଂଶୀଦାର ହେବେ ଆନନ୍ଦରେ । ସେମାନଙ୍କ ସଙ୍ଗରେ ଯାଇ ନୃତ୍ୟ କର ।"

"ମୋ ସଙ୍ଗରେ ନାଚିବ ଆସ କ୍ଲାରା"—କର୍ଣ୍ଣେଲ କିଲିଗ୍ରୁ ଚିତ୍କାର କଲେ ।

"ନା, ନା, ମୁଁ ତାଙ୍କର ପାର୍ଟନର ହେବି" ମିଃ ଗ୍ୟାସକଏନ ବାଧା ଦେଇ କହିଲେ ।

"ପଚ୍ଛିଶ ବର୍ଷ ତଳେ ସେ ମୋତେ ବିବାହ କରିବାକୁ କହି-ଥିଲେ," ମିଃ ମେଡ୍‌ବୋର୍ଣ୍ଣ ଜବାବ ଦେଲେ।

ସେମାନେ ସମସ୍ତେ ଢ଼ଇସାର୍‌ଙ୍କୁ ଘେରି ଠିଆ ହେଲେ। ଜଣେ ତାଙ୍କର ହାତ ଦୁଇଟି ଧରିଲେ, ଆଉ ଜଣେ ତାଙ୍କର ଅଣ୍ଟା ଭିଡ଼ି ଧରିଲେ। ଅନ୍ୟ ଜଣକ ତାଙ୍କର କୁଞ୍ଚିତ କେଶ ଦାମରେ ଅଙ୍ଗୁଳି ଚଳାଇଲେ। ସେ ଆନନ୍ଦ ଉଚ୍ଛଳ ଭଙ୍ଗୀରେ ନିଜକୁ ସେମାନଙ୍କ ବନ୍ଧନରୁ ମୁକ୍ତ କରିବାକୁ ଚେଷ୍ଟା କଲେ, କିନ୍ତୁ ସେହି ପର୍ଯ୍ୟନ୍ତ। ଏହି ମୃଦୁ ବନ୍ଧନକୁ ଯେ ସେ ଆକାଙ୍‌କ୍ଷା କରିଥିଲେ ଅନେକ ଦିନରୁ। ତେଣୁ ସମସ୍ତ ସତ୍ତା ଦେଇ ଅନୁଭବ କରିବାକୁ ଲାଗିଲେ ସେମାନଙ୍କର ସ୍ପର୍ଶ। କିନ୍ତୁ ପ୍ରତ୍ୟେକ ପୁରୁଷ ଚୃହୁଁଥିଲେ ଏକା ତାଙ୍କୁ ଉପଭୋଗ କରିବାକୁ—ଗୃହୁଁଥିଲେ ଆସିବାକୁ। ତେଣୁ ସେମାନଙ୍କ ଭିତରେ ବିବାଦ ଲାଗିଲା। ମରାମରି ଆରମ୍ଭ ହୋଇଗଲା। ଟେବୁଲ ଚୌକି ଓଲଟି ଗଲା। ଯୌବନ-ସୁଗ-ଭରା ପାତ୍ରଟି ମାଟିରେ ପଡ଼ି ଟିକି ଟିକି ହୋଇଗଲା। ଆଦିମ ଦିନର ସେହି ଈର୍ଷା ଓ ଦ୍ୱନ୍ଦ୍ୱର ଫଳରେ ଘର ଯୌବନ ସୁରାରେ ଭାସିଗଲା। କେଉଁଠାରୁ ଉଡ଼ି ଆସି ମାଟିରେ ପଡ଼ିଥିଲା ଗୋଟିଏ ବୁଢ଼ା ପ୍ରଜାପତି। ଯୌବନ ସୁରର ସ୍ପର୍ଶରେ ତାର ରୂପ ବଦଳିଗଲା। ନୂଆ ଦିନରେ ଆନନ୍ଦ ହିଲ୍ଲୋଳରେ ସେ ଘର ଯାକ ଉଡ଼ି ବୁଲିଲା, ତାପରେ ବସିଲା ଯାଇ ଡାକ୍ତରଙ୍କ ତୁଷାର ଶୁଭ୍ର ମସ୍ତକ ଉପରେ।

"ଏ କଣ, ଏ କଣ!" ବିରକ୍ତ ଭରା କଣ୍ଠରେ କହିଲେ ଡାକ୍ତର, "ଶୀଘ୍ର ବନ୍ଦ କର ତୁମର ମରାମରି।"

ସେମାନେ ଚମକି ଠିଆ ହୋଇଗଲେ। ମନେ ହେଲା ଦୂରର ବଂଶୀ ଯେପରି ସେମାନେ ଶୁଣିବାକୁ ପାଇଲେ। ଶଙ୍କିତ ଦୃଷ୍ଟିରେ ଅନାଇଲେ ସେମାନେ ଡାକ୍ତରଙ୍କ ଆଡ଼କୁ। ଗୋଲାପ ଫୁଲଟି

ହାତରେ ଧରି ଡାକ୍ତର ବସିଥିଲେ ଆରାମ ଚୌକିରେ । ସେମାନେ ବନ୍ଦ ହେବାରୁ, ସେ କହିବାକୁ ଇଙ୍ଗିତ ଦେଲେ ।

"ମୋର ପ୍ରେମିକା ଦେଇଥିବା ଗୋଲାପଟି ପୁଣି ଶୁଖି ଯାଉଛି"– ଦୁଃଖର ସହିତ ଡାକ୍ତର କହିଲେ ।

ସତରେ ଧୀରେ ଧୀରେ ଗୋଲାପର ସମସ୍ତ ମାଧୁର୍ଯ୍ୟ ଉଭେଇଗଲା । ଶୁଖିଲା ଝରି ଝରି ହୋଇଗଲା ଫୁଲଟି । ସପ୍ରେମରେ ଫୁଲଟା ଚୁମ୍ବନ କରି କହିଲେ ଡାକ୍ତର, "ସେ ଶୁଖିଯାଉ, ତଥାପି ମୁଁ ତା'କୁ ଭଲ ପାଏ ।" ସେ କଥା କହୁ କହୁ ପ୍ରଜାପତିଟା ପଡ଼ିଗଲା ମାଟିରେ ।

ବନ୍ଧୁମାନେ ପୁଣି ଶିହରି ଉଠିଲେ । ଗୋଟାଏ ଶୈତ୍ୟ-ପ୍ରବାହ ଯେପରି କମ୍ପାଇ ଦେଇ ଯାଉଥିଲା ସେମାନଙ୍କର ସମସ୍ତ ଶରୀର । ପରସ୍ପର ଆଡ଼କୁ ଅନାଇଲେ ସେମାନେ । ବୁଝି ପାରିଲେ ଯେ, ପ୍ରତି ମୁହୂର୍ତ୍ତରେ ସେମାନଙ୍କ ଦେହରେ ପରିବର୍ତ୍ତନ ହେଉଛି । ଏ କଣ ତେବେ ଭ୍ରମ ? ଜୀବନରେ ଦିନଗୁଡ଼ିକ କଣ ଏତେ ସଂକ୍ଷିପ୍ତ ?

"ଆଃ ! ଏତେ ଶୀଘ୍ର ଆମେ ବୁଢ଼ା ହୋଇଗଲୁ ?" ଏକାନ୍ତ ଦୁଃଖରେ ସେମାନେ କହିଲେ ।

ସତରେ, ସେମାନଙ୍କର ଯୌବନ ଶେଷ ହୋଇ ଯାଇଛି । ଯେଉଁ ସୁରା ପାନ କରି ସେମାନେ ଉନ୍ମାଦ ହୋଇ ଯାଇଥିଲେ, ସ୍ଥାନ-କାଳ-ପାତ୍ର ଭୁଲି ଯାଇଥିଲେ, ତାହା ଯେ ଖୁବ୍ କ୍ଷଣସ୍ଥାୟୀ, ଭଙ୍ଗୁର । ତେଣୁ ତ ଜରା ଆସି ଆଉ ଥରେ ତାର ପ୍ରଭାବ ବିସ୍ତାର କଲା । କ୍ଷଣକର ଖେଳ ଗଲା ଶେଷ ହୋଇ……

—ନ୍ୟାଥାନିୟେଲ ହଥର୍ଣ୍ଣ

# ଆରୋହଣ

କି ସୁଖରେ ଯେ ଲୋକମାନେ ପାହାଡ଼ ଉପରେ ଚଢ଼ି ସୂର୍ଯ୍ୟୋଦୟ ଦେଖିବାକୁ ଯାଆନ୍ତି, ତାହା ହିଁ ସେମାନଙ୍କୁ ଏକା ଜଣା । ସେହି ଅପୂର୍ବ ଦୃଶ୍ୟ ଦେଖିବାକୁ ଯାଇ ଥରେ ମୁଁ ଯେ କି ହିନସ୍ତା ହୋଇଛି, ସେ କଥା ଆଜି କଣ କହିବି !

ଆଲପ୍‌ସ ପର୍ବତମାଳା ଭିତରେ ରିଗି ବୋଲି ପାହାଡ଼ଟିଏ ଅଛି । ତାର ଉଚ୍ଚତା ଛଅ ହଜାର ଫୁଟ । ନିଜ ଉପରେ ନିର୍ଭର କରି ସେ ଠିଆ ହୋଇ ରହିଛି । ତିନି ଶହ ମାଇଲ ପରିଧି ଭିତରେ ତାର ରାଜତ୍ୱ । ତା ଭିତରେ କଣ ବା ନାହିଁ ? ସୁନୀଳ ହ୍ରଦ, ସବୁଜ ଉପତ୍ୟକା, ତୁଷାରାବୃତ ଗିରି ଶୃଙ୍ଗ — କୌଣସିଟିର ଅଭାବ ସେଠାରେ ନାହିଁ । କିନ୍ତୁ ଲୋକେ ଏସବୁ ଦେଖିବାକୁ ଯାଆନ୍ତି ନାହିଁ । ଯାଉଁ ଯାଉଁ ଯଦି ଦୈବାତ୍ ଏଗୁଡ଼ିକ ଆମ ଦୃଷ୍ଟି ଆଗରେ ଆସି ପଡ଼ି ଯାଆନ୍ତି, ତାହାହେଲେ ଆମେ ଅବଶ୍ୟ ଆଖି ବନ୍ଦ କରିଦେଉ ନାହିଁ, ଅସଙ୍କୋଚରେ ଦେଖୁଁ । ତଥାପି ଏସବୁ ଉପଲକ୍ଷ୍ୟ ମାତ୍ର । ଆମର ଅସଲ ଲକ୍ଷ୍ୟ ହେଉଛି, ପାହାଡ଼ର ଚୂଡ଼ା ଉପରକୁ ଯାଇ ସୂର୍ଯ୍ୟଙ୍କୁ ଅଭିନନ୍ଦନ ଜଣାଇବା । ଅବଶ୍ୟ ଅତିଶୟ ପ୍ରତ୍ୟୁଷରେ, ତାଙ୍କ ଆବିର୍ଭାବର ପୂର୍ବ ମୁହୂର୍ତ୍ତରେ ! ମୋର ମତ ତ ଏହା ! ଯେଉଁମାନେ ରିଗିକୁ ଯାଆନ୍ତି, ସେମାନେ ଏହି ଉଦ୍ଦେଶ୍ୟରେ ଯାଆନ୍ତି

—ଏମିତି ଅପରୂପ ଦୃଶ୍ୟ କୁଆଡ଼େ ଆଉ କେଉଁଠି ଦେଖିବାକୁ ମିଳେ ନାହିଁ ।

ରେଲରେ ବସି, ଘୋଡ଼ାରେ ଚଢ଼ି ଏବଂ ପାଦରେ ଚାଲି ଚାଲି ପାହାଡ଼ ଉପରକୁ ଉଠିବାକୁ ହୁଏ—ଯାହାର ଯେମିତି ଅଭିରୁଚି ! ପ୍ରଥମେ ରେଳ-ଯାତ୍ରାଟା ମନରୁ କାଟି ଦେବାକୁ ପଡ଼ିଲା । ରେଲରେ ଚଢ଼ିକରି ଯିବାଟା କଣ ଫେର୍ ଯିବାରେ ଗଣା ହୁଏ ? ତାକୁ କୌଣସି ମତେ ଅଭିଯାନ ବୋଲି କହି ହୁଏ ନାହିଁ । ଜୟଯାତ୍ରା ବୋଲି କହିବାକୁ ଯେମିତି ଖୁବ୍ ବାଧେ ।

ଅବଶ୍ୟ ଘୋଡ଼ାରେ ଚଢ଼ି ଯିବାକୁ ମୋର ସେମିତି କିଛି ଆପତ୍ତି ନ ଥିଲା । ମାତ୍ର ଘୋଡ଼ାଙ୍କର ଥିଲା କି ନା, ତାହା ଅବଶ୍ୟ ମୁଁ ଜାଣେ ନାହିଁ । କିନ୍ତୁ ମୋର ବନ୍ଧୁ ସେଥିରେ ପ୍ରତିବାଦ କଲେ । ଅବଶେଷରେ ସର୍ବ ସମ୍ମତି କ୍ରମେ ପଦବ୍ରଜରେ ଯିବାଟା ହିଁ ସାବ୍ୟସ୍ତ ହେଲା । ଘୋଡ଼ାର ନିରପେକ୍ଷତା, ବନ୍ଧୁର ସ୍ୱପକ୍ଷରେ ଭୋଟ ଏବଂ ମୋର ବିନା ଆପତ୍ତିରେ ପ୍ରସ୍ତାବଟା ପାଶ ହୋଇଗଲା ।

ଓସ୍ପିଗିସ୍ ଗ୍ରାମଟା ରିଗିର ଏକବାରେ ପାଦ ତଳେ ଅବସ୍ଥିତ । ଦିନେ ସକାଳେ ମୁଁ ଓ ମୋର ବନ୍ଧୁ ସେହି ଗ୍ରାମ ଅଭିମୁଖରେ ଯାତ୍ରା କଲୁ । ଲୁସାର୍ନ ଠାରୁ ଓସ୍ପିଗିସ୍ ଖୁବ୍ ବେଶୀ ଦୂର ନୁହେଁ ।

ସେଠାରେ ପ୍ରାତଃଭୋଜନ ସାରି, ଗ୍ରାମର ମାୟା ତୁଟାଇ ଆମେ ବାହାରି ପଡ଼ିଲୁ । ତାପରେ ଆମର ଚଢ଼ିବା ଆରମ୍ଭ ହେଲା । ବେଶ୍ ଫୁର୍ତ୍ତିରେ ଆମେ ଚଢ଼ିବାକୁ ଲାଗିଲୁ ଏବଂ ଯେତେ ଉପରକୁ ଉଠିଲୁ ଆମକୁ ସେତେ ଫୁର୍ତ୍ତି ଲାଗିଲା । ନିର୍ମେଘ ଆକାଶ, ନିର୍ମଳ ବାତାବରଣ, ଆଉ ମୃଦୁ ମନ୍ଦ ପବନ । ପାହାଡ଼ ଉପରକୁ ଚଢ଼ିବା ତ ବେଶ୍ ମଜାର କଥା !

କ୍ରମେ ବାରଟା ବାଜିଲା । ଆମେ ମୃଦୁ ମନ୍ଦ ପଦକ୍ଷେପରେ ଚାଲୁଥିଲୁ । ଆମର ସେମିତି କିଛି ତାଡ଼ନା ନ ଥିଲା । କାରଣ, ଗାଇଡ଼-ବୁକ୍‌ରେ ଲେଖା ଅଛି, ପାଦ ପ୍ରଦେଶ ଠାରୁ ଓସ୍ପ୍ରାଗିସ୍‌ରୁ ଚୂଡ଼ାରେ ପହଞ୍ଚିବାକୁ ପ୍ରାୟ ତିନି ଘଣ୍ଟା ପନ୍ଦର ମିନିଟ ସମୟ ଲାଗିବ । ପ୍ରାୟ ଏଇଥି ପାଇଁ ମୁଁ କହେ ଯେ ଏହି ଗାଇଡ଼ ବୁକ୍ ବିଷୟରେ ମୋର ସେମିତି କିଛି ଆସ୍ଥା ନାହିଁ । ଗାଇଡ଼-ବୁକ୍‌ର କବଳରେ ପଡ଼ି ଏହା ଆଗରୁ ଆଉ ଥରେ ମୋତେ ଭାରି ଠକିବାକୁ ପଡ଼ିଥିଲା । ତେବେ ବାରମ୍ବାର ଯେ ଆମେ ସେଥିରେ ପ୍ରତାରିତ ହେବା, ଆଉ ଆମକୁ ସେହି କଥାଟା ବିଶ୍ୱାସ କରିବାକୁ ହେବ, ଆମର ବି ସେହି ପ୍ରବୃତ୍ତି ଜାତ ହେଲା ନାହିଁ ।

ତଥାପି ଆମେ ଧୀରେ ସୁସ୍ଥେ ଚାଲିଲୁ । ତିନି ଘଣ୍ଟା ପନ୍ଦର ମିନିଟ ଜାଗାରେ କେଉଁଠି ସାଢ଼େ ଛଅ ଘଣ୍ଟା ଲାଗିପାରେ, ତା ଠାରୁ ତ ଆଉ ବେଶୀ ନୁହେଁ ? ତାହାହେଲେ ବି ଆମେ ସନ୍ଧ୍ୟା ବେଳକୁ ସେଠାରେ ପହଞ୍ଚି ଯାଇଥିବୁ ।

ଗୋଟିଏ ପିଲାକୁ ଡାକି ଆଣି ଆମ ଜିନିଷପତ୍ର ସବୁ ତାର ଜିମା ଦେଇଦେଲୁ । ଆମର ହାତବ୍ୟାଗ, ଓଭରକୋଟ, ଜଳଖିଆ-ବାକ୍‌ସ ଇତ୍ୟାଦି ସେ ବୋହି ନେଇଯିବ । ଏଥର ଆମ ଉପରୁ ବୋଝଟା ଅନେକ ପରିମାଣରେ କମିଗଲା । ଦେହର ବୋଝ ଛଡ଼ା ପ୍ରକୃତ ପକ୍ଷରେ ଆମକୁ ଆଉ କିଛି ବୋହିବାକୁ ପଡ଼ିଲା ନାହିଁ । ହାଲୁକା ଶରୀର ଓ ତା ଠାରୁ ହାଲୁକା ମନ ନେଇ ଏକ୍ଷଣି ଆମେ ପାହାଡ଼ ଚଢ଼ିବା କାମରେ ଲାଗିଗଲୁ ।

ଚାଲୁ ଚାଲୁ ଆମେ ମଝିରେ ମଝିରେ ଟିକିଏ ଥକା ମାରି ନେଉଥିଲୁ । ଗଛର ଛାଇ କମ୍ବା ନରମ ଘାସର ବିଛଣା ପାଇଲେ, କିଏ ବା ତାର ମାୟା ଛାଡ଼ି ପାରିବ ? ବିଶ୍ରାମ କରିବାକୁ କାହାର

ବା ଇଚ୍ଛା ନ ହୁଏ ? ବିଶେଷତଃ ପାହାଡ଼ ଚଢ଼ିବା ଭଳି ଗୋଟାଏ ଫୁର୍ତ୍ତିର ମଝିରେ ମଝିରେ । କିନ୍ତୁ ଆମ ବାଳକ କୁଲିଟି ପାହାଡ଼ ଉପରେ ଯାତ୍ରୀମାନଙ୍କର ଏପରି ବ୍ୟବହାରରେ ଅଭ୍ୟସ୍ତ ନ ଥିଲା । ତା ମୁହଁରୁ ଏ କଥା ପରିଷ୍କାର ବାରି ହେଉଥିଲା । କାରଣ ଆଉ କେତେ ଥର ଆମେ ଏପରି ବିଶ୍ରାମର ସୁଯୋଗ ନେବାକୁ ବସିଲା ବେଳେ ସେ ଯେମିତି ଟିକିଏ ଚେଡ଼ା ମିଜାଜ ଦେଖାଇଲା । ହଠାତ୍ ସେ ଆମକୁ ପଚାରିଲା—"ଆପଣମାନେ ଯେ ମୋତେ ଭଡ଼ା କରିଛନ୍ତି ସେଟା କଣ ବେଳାକ ପାଇଁ, ନା ପୁରା ବର୍ଷକ ଲାଗି, ଠିକ୍ କରି କୁହନ୍ତୁ ତ ମହାଶୟମାନେ ?"

ଓଲଟି ତା କଥା ଶୁଣି ଆମେ ତାକୁ କହିଲୁ—"ତୋର ଯଦି ସେମିତି କିଛି ଜରୁରୀ କାମ ଥାଏ, ତୁ ଆଗେଇ ଯାଇପାରୁ । ଆମର କୌଣସି ଆପତ୍ତି ନାହିଁ ।"

ସେ ଉତ୍ତର ଦେଲା—"ନା, ମୋର ସେମିତି କିଛି କାମ ନାହିଁ । ମାତ୍ର ପିଲା ବୟସ ଥାଉଁ ଥାଉଁ ମୁଁ ଚୂଡ଼ାରେ ପହଞ୍ଚି ଯିବାକୁ ଇଚ୍ଛା ଥିଲି ।"

ଆମେ ସଫା ଜବାବ ଦେଇଦେଲୁ—"ତାହାହେଲେ ତୁ ପହଞ୍ଚିବୁ ଯା । ତୁ ସିଧା ସଳଖ ଲମ୍ବା କଦମ ପକାଇ ଚାଲିଯା । ଚୂଡ଼ାରେ ପହଞ୍ଚି ସବା ଉପରେ ଯେଉଁ ହୋଟେଲଟା ଅଛି, ସେଇଠି ଆମ ଜିନିଷପତ୍ର ସବୁ ରଖିଦେବୁ । ଆଉ ହୋଟେଲବାଲାକୁ ବି କହିଦେବୁ ଯେ ଆମେ ଏହି ସାଙ୍ଗେ ସାଙ୍ଗେ ଯାଇ ପହଞ୍ଚୁଛୁ ।"

ସେ କହିଲା, "ହେଉ, ଯଦି ପାରେ ତ ତାହାହେଲେ ହୋଟେଲର ବ୍ୟବସ୍ଥା କରିଦେବି । କିନ୍ତୁ ଯଦି ହୋଟେଲ ଭର୍ତ୍ତି ହୋଇ ଯାଇଥାଏ ଓ ଜାଗା ନ ମିଳେ, ତାହା ହେଲେ ଆଉ ଗୋଟାଏ ନୂଆ ହୋଟେଲ ତିଆରି କରିବା ଲାଗି ସେମାନଙ୍କୁ

କହିଦେବି ଏବଂ ସେମାନଙ୍କ ଚକ୍ଷେ ପକ୍ଷେ ବି ଲଗିଯିବ, ଯେପରିକି ଆପଣମାନେ ଯାଇ ପହଞ୍ଚିବା ଆଗରୁ ଚୂନ ଓ ବାଲି କାମ ସବୁ ସରି ଯାଇଥିବ ।"

ଏହା କହି ବୃଦ୍ଧ,ଫାମ୍ବିଳ ଦୃଷ୍ଟିରେ ଆମ ଆଡ଼କୁ ଥରେ ଚାହିଁ ଦେଇ ସେହି ଦୁର୍ଦ୍ଦିମିତ ବାଳକଟି ତତ୍‌କ୍ଷଣାତ୍ ଅନ୍ତର୍ଦ୍ଧାନ ହୋଇଗଲା ।

ତାପରେ ଆମେ ଉଠି ପଡ଼ିଲୁ । କିଛି ଦୂର ଯାଇ ଗୋଟାଏ ସରାଇ ପାଇଲୁ ଏବଂ ପୁଣି ବିଶ୍ରାମର ପ୍ରୟୋଜନ ଅନୁଭବ କଲୁ । ସେଠାରେ ବେଟି ତରକାରି ଓ କିଛି କଞ୍ଚା ଦୁଧ ଖାଇଦେଇ ପୁଣି ଆମେ ଚଢ଼ିବା ଆରମ୍ଭ କରିଦେଲୁ ।

ଅସ୍ତଗାମୀ ସୂର୍ଯ୍ୟଙ୍କର ରକ୍ତିମ ଛଟାରେ ଦେଖୁଁ ଦେଖୁଁ ଛଅଟା ବାଜିଗଲା ।

ଜଣେ ଲୋକ ତରବର ହୋଇ ଓହ୍ଲାଇ ଆସୁଥିଲା । ଅତି କଷ୍ଟରେ ତାକୁ ଅଟକାଇ ପଚାରିଲୁ—"ତୁମେ ବୋଧହୁଏ ଚୂଡ଼ା ପାଖରୁ ଆସୁଛ ନା ?"

"ହଁ । ଆଉ ତୁମେମାନେ ?"

"ଆମେ ? ଆମେ ଓସ୍ୱାଗିସ୍ ଠାରୁ ।"

"ଓସ୍ୱାଗିସ୍ ଠାରୁ ! କେତେବେଳେ ସେଠାରୁ ବାହାରିଲ ?"

କେତେବେଳେ ହେଲା ? ଆମେ ଭାବିବାକୁ ଲାଗିଲୁ । ସକାଳୁ ଏତେ ବେଳ ଯାଏ ଆମେ ପୂରା ଦଶ ଘଣ୍ଟା ଚାଲିଲୁଣି । କିନ୍ତୁ ଗାଇଡ-ବୁକ୍‌ର ନିର୍ଦ୍ଦେଶ ଅନୁସାରେ ଧରିବାକୁ ଗଲେ, ପ୍ରାୟ ତିନି ଘଣ୍ଟା ହେବା ଉଚିତ । କୌଣସି ମତେ ତା ଠାରୁ ବେଶୀ ହେବ ନାହିଁ । ଜାଣିଛ ନା, ଚୂଡ଼ାରେ ପହଞ୍ଚିବାକୁ ଖୁବ୍ ବେଶୀ ହେଲେ ତିନି ଘଣ୍ଟା ପନ୍ଦର ମିନିଟରୁ ଅଧିକ ଲାଗିବ ନାହିଁ । ସେଠାରେ

ପହଞ୍ଚିବାକୁ ହେଲେ ସେହି ସୀମା ଲଙ୍ଘନ କରିବା ହିଁ ଅପରାଧ । ତେଣୁ ଭାବି ଚିନ୍ତି ଆମେ ନ୍ୟାୟ ସଙ୍ଗତ ଭାବରେ କହିଲୁ—"କେତେ ବେଳ ଆଉ । ଏହି ତିନି ଘଣ୍ଟା ଯାଏ ହେବ ।"

"ଏଁ, ତିନି ଘଣ୍ଟା ।" ସେ ଅବାକ୍ ହୋଇଗଲା । "ଓସ୍ୱାଗିସ୍ ତ ଏହି କତିରେ । ଗୋଟାଏ କୁଦାର ବାଟ ମାତ୍ର । ଏ ପାହାଡ଼ ଚଢ଼ିଗଲେ ପହଞ୍ଚି ଯିବ ।"

ତାହା ସତ । ତଥାପି ତିନି ଘଣ୍ଟା ବା ଏମିତି କଣ ବେଶୀ ହୋଇଗଲା ? ଦେଖୁଁ ଦେଖୁଁ ତ ସମୟ କଟିଯାଏ । ସମୟର ସପକ୍ଷରେ ଆମେ ଓକିଲାତି କଲୁ ।

"ତୁମେ ଦୁହେଁ ତିନି ଘଣ୍ଟାରେ ଜମା ଏତିକି ବାଟ ଆସିଛ ?" ତାର ବିସ୍ମୟ କ୍ରମେ କ୍ରମେ ଯେମିତି ଆହୁରି ବଢ଼ିବାକୁ ଲାଗିଲା ।

ଆପଣା କୃତିରେ ଆପେ ଗର୍ବ ବୋଧ କରି ଆମେ କହିଲୁ— "ଏଇ ଏବେ ଆସିଲୁ ତ । ଟିକିଏ ଶୀଘ୍ର ଶୀଘ୍ର ଯାହା ଚାଲି ଆସିଛୁ । ତାହା ହେଉ । କିନ୍ତୁ ଚୂଡ଼ା ଆଉ କେତେ ଦୂର ? ବୋଧହୁଏ ପ୍ରାୟ ତା କତିରେ ଆସି ଆମେ ପହଞ୍ଚି ଗଲୁଣି ?"

"ଚୂଡ଼ା କତିରେ ? ହାୟ, ହାୟ । ଏକ୍ଷଣି ତ ତୁମେ ପାହାଡ଼ ଚଢ଼ିବା ଆରମ୍ଭ କରି ନାହଁ । ଏହି ଟିକିଏ ବାଟ ତ ଆସିଛ !"

ଏହା ପରେ ସେ ଆଉ ମୁହୂର୍ତ୍ତେ ବି ଠିଆ ହୋଇ ରହିଲା ନାହିଁ । ସେ ପୁଣି ଓହ୍ଲାଇବାକୁ ଲାଗିଲା । ଏଣେ ସନ୍ଧ୍ୟା ହୋଇଗଲା । କିନ୍ତୁ ଏକ୍ଷଣି ଚୂଡ଼ା ଯେ ବହୁତ ଦୂର ! ଅଗତ୍ୟା ମୁଁ ବନ୍ଧୁଙ୍କୁ କହିଲି—"ମୁଁ କହୁଥିଲି ପରା, ଆଜ ରାତିଟା ସେହି ସରାଇଟାରେ କଟାଇ ଦେଇଥିଲେ ବରଂ ଭଲ ହୋଇଥାନ୍ତା ।"

"ଅଗତ୍ୟା ! ଏତେ ବାଟ ଚାଲି ଚାଲି ବି ସେହି ଓସ୍ୱାଗିସ୍ ପାଖରେ ଅଛୁଁ । ଲୋକଟା କଣ କହୁଛି ମ !" ହାରିସ୍ କହିଲା—

"ଆଶ୍ଚର୍ଯ୍ୟ ! ଏହିସବୁ ପାହାଡ଼ର କାଣ୍ଡ କାରଖାନା ଏକବାରେ ଅଜବ ।"

ଆମେ ପୁଣି ସରାଇକୁ ଫେରିଲୁ । ସେଠାରେ ଆହାରାଦି ସାରି ବିଛଣାରେ ଶୋଇ ରହିଲୁ । ଆମର ପ୍ରଥମ ସଙ୍କଳ୍ପ ହେଲା— କାଲି ଖୁବ୍ ଭୋରରୁ ଉଠିବାକୁ ହେବ ଏବଂ ଉଠି ଲକ୍ଷ୍ୟ କରିବାକୁ ହେବ ପୃଥିବୀର ସେହି **ଅଷ୍ଟମ** ଆଶ୍ଚର୍ଯ୍ୟ, ଅର୍ଥାତ୍ ପାର୍ବତ୍ୟ–ସୂର୍ଯ୍ୟୋଦୟ !

କିନ୍ତୁ ଦିନ ସାରା ବୁଲିବା ଫଳରେ ଆମେ ଏମିତି କ୍ଳାନ୍ତ ହୋଇ ପଡ଼ିଥିଲୁ ଯେ ରାତିଟା କେମିତି କେତେବେଳେ ପାହିଲା, ଆମେ ଆଦୌ ତାର ପତ୍ତା ପାଇଲୁ ନାହିଁ । ନିଦ ଭାଙ୍ଗିଯିବା କ୍ଷଣି ଆମେ ଦୁହେଁ ତୁରନ୍ତ ଝରକା ଆଡ଼କୁ ଦୌଡ଼ିଗଲୁ । ମାତ୍ର ସେତେ–ବେଳକୁ ଟିକିଏ ଡେରି ହୋଇ ଯାଇଥିଲା । ସୂର୍ଯ୍ୟ ପ୍ରାୟ ମୁଣ୍ଡ ଉପରକୁ ଉଠି ଆସିଲେଣି । ଘଡ଼ିରେ ସାଢ଼େ ଏଗାରଟା ବାଜିଥିଲା । ଇସ୍ ! ରାତ୍ରିର ପହରବାଳା ପରି ଶୋଇ ପଡ଼ିଲୁ ! ଯଥା ସମୟରେ ସୂର୍ଯ୍ୟଙ୍କ ସହିତ ସାକ୍ଷାତ ନ ହେବାରୁ ଆମ ମନରେ ଖୁବ୍ କ୍ଷୋଭ ଜାତ ହେଲା ।

ବାରଟା ବାଜୁ ନ ବାଜୁଣୁ ଆମେ ବାହାରି ପଡ଼ିଲୁ । ନା, ଯେ କୌଣସି ମତେ, ଆମକୁ ଆଜି ଯାଇ ଚୂଡ଼ାରେ ପହଞ୍ଚିବାକୁ ହେବ । ହଁ, ଆଜି ଏଥର ଚୂଡ଼ାନ୍ତ କଲେ ଯାଇ ଆଜି ଯେଉଁ କଥା । ସେଥିପାଇଁ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଆମେ ଅଗ୍ରସର ହେଲୁ ।

କିନ୍ତୁ ଦୁଇ ଶହ ଗଜ ଯାଇ ପୁଣି ଆମକୁ ବିଶ୍ରାମ କରିବାକୁ ପଡ଼ିଲା । ସିଗାରେଟଟା ଲଗାଇ ବାମ ଆଡ଼କୁ ଦୃଷ୍ଟିପାତ କରନ୍ତେ ଆମ ଆଖିରେ ପଡ଼ିଲା, ଗୋଟାଏ କୁଣ୍ଡଳାକାର ଧୂଆଁ ଅଳସ ମନ୍ଥର

ଗତିରେ ପାହାଡ ଉପରକୁ ଉଠି ଆସୁଛୁ । ଆମର ବୁଝିବାକୁ ବିଳମ୍ବ ହେଲା ନାହିଁ ଯେ ସେଇଟା ଗୋଟାଏ ପାର୍ବତ୍ୟ ରେଳଗାଡ଼ି । କହୁଣୀରେ ଭର ଦେଇ ଉନ୍ମୁଖ ବିସ୍ଫାରିତ ନେତ୍ରରେ ଆମେ ସେ ଆଡ଼କୁ ଚାହିଁ ରହିଲୁ । ଏହା ଆଗରୁ ଆମେ କେବେ ପାର୍ବତ୍ୟ ରେଳଗାଡ଼ି ଦେଖି ନ ଥିଲୁ । ଆମ ଆଖିରୁ ପଟି ଖୋଲିଗଲା । ଡାକବଙ୍ଗଳା ସ୍ଥିତ ଉଚ୍ଚ ଟାଲୁ ପାହାଡ ଉପରେ ଏତେ ବଡ଼ ରେଳ-ଗାଡ଼ିଟା କିପରି ଉଠି ଯାଉଛି ଘରଘର ହୋଇ ! ଆଶ୍ଚର୍ଯ୍ୟ !

ଦୁଇ ଘଣ୍ଟା ଭିତରେ ଆମେ କିଛି ବାଟ ଉପରକୁ ଉଠି ଆସିଲୁ । ହଠାତ୍ ଏତିକି ବେଳେ ପ୍ରାୟ ଡଜନେ ମେଣ୍ଢା ଆସି ସେଠାରେ ପହଞ୍ଚିଗଲେ—ପାହାଡ଼ିଆ ମେଣ୍ଢା—ପ୍ରାୟ ଆମ ମଥା ଉପରେ । ମେଣ୍ଢା ଛୁଆଗୁଡ଼ାକର ଧକ୍‌କା ସମ୍ଭାଳୁଁ ସମ୍ଭାଳୁଁ ଆମେ ଅତିଷ୍ଠ ହୋଇ ପଡ଼ିଲୁ । କେଉଁଠୁ ଆକସ୍ମିକ ସ୍ୱରର ଲହରୀ ଭାସି ଆସିଲା- "ଲଲ୍‌—ଆଇ—**ଆଇ**—ଲଲ୍‌—ଲଲ୍‌—ଲହ୍ମ—ଉ—ଉ !"

ଗୋପାଳ-ବାଳକର କଣ୍ଠ ସ୍ୱର ! ଅଦୃଶ୍ୟ ରହସ୍ୟମୟ ଉତ୍ସରୁ ଉତ୍ସାରିତ ଉଲ୍ଲସିତ ଝଙ୍କାର ! ଏହା ସେହି ବିଖ୍ୟାତ ଗୋ-ପାଳକ ଗୀତ—ସହରରେ ଓ ସଭ୍ୟ ଜଗତରେ ଅଧୁନା ଦୁଷ୍ପ୍ରାପ୍ୟ—ସାଧାରଣତଃ ବଣ ଜଙ୍ଗଲରେ ଆଜକାଲି ତାର ସନ୍ଧାନ ମିଳେ । ତାର କଥା ଆମେ ଗୋସେଇଁ ମାଆ ଠାରୁ ଶୁଣିଛୁ ଏବଂ କାବ୍ୟ-କାହାଣୀରେ ବି ପଢ଼ିଛୁ ।

ଦେହ ଓ ମନ ରୋମାଞ୍ଚିତ ହୋଇଗଲା । ଗୋଟିଏ ସ୍ଥାନରେ ହାତ-ଗୋଡ଼ ଲମ୍ବାଇ ବସିଗଲୁ ଏବଂ ଗୋପାଳ ବାଳକର ଆଗ-ମନକୁ ଅପେକ୍ଷା କରି ରହିଲୁ । ଟିକିଏ ପରେ ସେ ଆସିଲା । ପ୍ରାୟ ଷୋଳ ବର୍ଷର ବାଳକଟିଏ, ତାର ମେଷ ଶାବକ ପରି ସେ କୁଦ

କୁଦି ଧାଉଁଥିଲା । ଆନନ୍ଦ ଓ କୃତଜ୍ଞତାରେ ବିଗଳିତ ହୋଇ ତାକୁ ଗୋଟିଏ ଟଙ୍କା ଦେଲି ଏବଂ କହିଲି—"ଆଉ ଗୋଟାଏ ଦୁଇଟା ମିଠା ଗୀତ ଶୁଣା ତ ।" ସେ ବି ଗଳା ସଫା କରି ଗୀତ ଗାଇଲା । ଆମେ ତନ୍ମୟ ଚିତ୍ତରେ ଶୁଣିଲୁ ।

କିନ୍ତୁ ସଙ୍ଗେ ସଙ୍ଗେ ଆମକୁ ଉଠି ପଡ଼ିବାକୁ ହେଲା । ଆମେ ଚଞ୍ଚଳ ଚଞ୍ଚଳ ପାଦ ପକାଇବାକୁ ଲାଗିଲୁ । ଆଉ ସେ ମଧ୍ୟ—ହୁଏତ ଦୟା ପରବଶ ହୋଇ ଆମକୁ ଛାଡ଼ି ଚାଲିଗଲା ।

ପନ୍ଦର ମିନିଟ ପରେ ଆଉ ଜଣେ ଗୋପାଳ ବାଳକର ଦେଖା ହେଲା । ତାର ସ୍ୱର ଲହରୀରେ ମୁଗ୍ଧ ହୋଇ ଆମେ ତାକୁ ଆଠ ଅଣା ପଇସା ଦେଲୁ । ତାର ସ୍ୱର-ଲହରୀ ଓ ପାଦ ଉଭୟ ଏକ ସଙ୍ଗରେ ଚାଲୁଥିଲା । ସେ ବି ସୌଜନ୍ୟ ରକ୍ଷା କରି ଶୀଘ୍ର ସେଠାରୁ ପଳାଇଗଲା ।

ତାପରେ ପ୍ରତି ଦଶ ମିନିଟ ଅନ୍ତରରେ ଆମେ ଜଣେ ଗୋପାଳ ବାଳକର ଦେଖା ପାଇଲୁ । ଏକାଧାରରେ ବାଳକ ଓ ବାଳିକା, କ୍ରମାନ୍ୱୟରେ ଜଣକ ପରେ ଜଣକର ଅଭ୍ୟୁଦୟ ହେଉଥାଏ । ପ୍ରଥମେ ଯେ ଆସିଲା ତାକୁ ସୁଉକଟେ ଦେଲୁ, ଦ୍ୱିତୀୟକୁ ଦୋଅଣି, ତୃତୀୟକୁ ଅଣାଏ ଏବଂ ଚତୁର୍ଥକୁ ଖାଲି ପଇସାଟିଏ । ପାଞ୍ଚ, ଛଅ ଓ ସାତ ନମ୍ବରକୁ ଆଦୌ କିଛି ନୁହେଁ—ନୀରବରେ ସେମାନଙ୍କର ସଙ୍ଗୀତ ସହ୍ୟ କରିଗଲୁ । କିନ୍ତୁ ତାପରେ ଆଉ ସହ୍ୟ ହେଲା ନାହିଁ । ତା-ପରେ ସନ୍ଧ୍ୟା ପୁଦ୍ଧା ଆଉ ଯେଉଁମାନେ ଆମ ହାବୁଡ଼ରେ ପଡ଼ିଲେ, ସେମାନଙ୍କୁ ସମସ୍ତଙ୍କୁ ଗୋଟିଏ ଲେଖାଏଁ ଅଣି ଦେଲୁ—କେବଳ ସେମାନଙ୍କର ଗୀତ ବନ୍ଦ କରିବା ପାଇଁ ।

କାବ୍ୟ-କାହାଣୀରେ ଏମାନଙ୍କୁ କାହିଁକି ଏଭଳି ସାର୍ଟିଫିକେଟ ଦିଆ ଯାଇଛି ? ଏମାନଙ୍କୁ ଓ ଏମାନଙ୍କର ଗୀତକୁ ଏଭଳି ଲମ୍ବା

ଲମ୍ବା ସାର୍ଟିଫିକେଟ କାହିଁକି ? ଗୋଟସଇଁ ମାଆମାନେ ବା କେମିତି ଧରଣର ଲୋକ ? ଆଶ୍ଚର୍ଯ୍ୟ !

ଛଅଟା ଦଶ ମିନଟ ସମୟରେ ଆମେ କାଲ୍‌ଟବାଦ ଷ୍ଟେସନରେ ପହଞ୍ଚିଲୁ । ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ସେଠାରେ ସୁପ୍ରଶସ୍ତ ହୋଟେଲକୁ ଯାଇ ଆମେ ଆଶ୍ରୟ ନେଲୁ । ରାତ୍ରିର ସାନ୍ଧ୍ୟ-ଭୋଜନ ସାରି ଆମର ଶୋଇ ପଡ଼ିବାକୁ ବି ବିଳମ୍ବ ହେଲା ନାହିଁ । ଏଥର ଆଉ ସୂର୍ଯ୍ୟୋଦୟ ଦେଖାଇବାକୁ ପଡ଼ିବ ନାହିଁ । ବାପଧନକୁ ଏଥର କୌଣସି ମତେ ଆଉ ପଳାଇବାକୁ ଦେଉ ନାହୁଁ । ଆହା, ସାରା ଦିନର ହାଡ଼ଭଙ୍ଗା ଖଟଣି ପରେ ନିଦ୍ରାରେ ଯେଉଁ ଆରାମ ମିଳେ, ତାହା କହି ହେବ ନାହିଁ ।

ସକାଳେ ଦୁହିଁଙ୍କର ଏକା ସାଙ୍ଗରେ ନିଦ ଭାଙ୍ଗିଗଲା । ଦୁଇ ଜଣ ବିଛଣାରୁ କୁଦି ପଡ଼ି ଝରକା ଆଡ଼କୁ ଦୌଡ଼ିଗଲୁ । କିନ୍ତୁ ପୁଣି ସେହି ହତାଶା । ସୂର୍ଯ୍ୟ ଭିତରେ ଦ'ପହର ହୋଇ ସାଢ଼େ ଦଶଟା ବାଜି ଗଲାଣି ।

ମନ ମରା ହୋଇ ଆମେ ସାଜ ପୋଷାକ ହେଲୁ । କେଶୀ ବେଳ ଯାଏ ଶୋଇ ପଡ଼ିଥିବା ହେତୁ ଆମେ ପରସ୍ପର ଉପରେ ଦୋଷ ଲଦି ଦେବାକୁ ବସିଲୁ । ହାରିସ କହିଲା—"ସେହି କୁଳି ବାଳକଟାକୁ ଛାଡ଼ି ଦେଇ ଭଲ କରି ନାହାନ୍ତି । ତାକୁ ଆମ ସାଙ୍ଗରେ ରଖିବା ଉଚିତ ଥିଲା । ସେ ସାଙ୍ଗରେ ଥିଲେ ସୂର୍ଯ୍ୟୋଦୟଗୁଡ଼ାକ ପ୍ରାନ୍ତରରେ ହରାଇବାକୁ ପଡ଼ି ନ ଥାନ୍ତା । ସେ ସକାଳେ ଆମର ନିଦ ଭଙ୍ଗାଇ ଦେଇଥାନ୍ତା ।"

ମୁଁ ଟିକିଏ ରାଗି ଯାଇ କହିଲି—"କିନ୍ତୁ ତାର ନିଦ କିଏ ଭଙ୍ଗାଇ ଦେଇଥାନ୍ତା ?"

ତାକୁ ହଲାଇ ଉଠାଇ ଦେବା ପାଇଁ ଆମ ଭିତରୁ ଜଣେକୁ ନିଶ୍ଚୟ ଜଗି କରି ବସି ରହିବାକୁ ପଡ଼ୁଥାନ୍ତା । ନିଜକୁ ସମ୍ଭାଳିବା ପାଇଁ ତ ଏଣେ ପ୍ରାଣ ଯାଉଛି କି ଆସୁଛି, ତାପରେ ପୁଣି ଗୋଟାଏ ପିଲା ସମ୍ଭାଳ । ନିଜେ ତ ଉଠି ପାରୁ ନାହାନ୍ତି, ତା ଉପରେ ପୁଣି ଗୋଟାଏ ପିଲାକୁ ଠିକ୍ ବେଳେ ଉଠାଇ ବସାଅ ।”

ପ୍ରାତଃଭୋଜନ ସାରୁଁ ସାରୁଁ ଦିପହରଟା ଗଡ଼ିଗଲା । ପେଟରେ କିଛି ପଡ଼ି ଯିବାରୁ ଉତ୍ସାହ ଆସିଗଲା । ଗାଇଡ୍ ବୁକ୍ ପଢ଼ିବାରୁ ଜଣା ଗଲା, ଚୂଡ଼ାନ୍ତ ହୋଟେଲଟିରେ ଏପରି ହେବାର ଆଶଙ୍କା ନାହିଁ । ସେଠାରେ ଯାତ୍ରୀମାନଙ୍କୁ ଭାଗ୍ୟ ଉପରେ ନିର୍ଭର କରି ବସି ରହିବାକୁ ପଡ଼େ ନାହିଁ । ଏକ ପ୍ରକାର ପାହାଡ଼ିଆ ଶିଙ୍ଗା ଅଛି; ତାକୁ ଫୁଙ୍କି ଦେଲେ ସୂର୍ଯ୍ୟୋଦୟ ପୂର୍ବରୁ ସମସ୍ତଙ୍କୁ ସଜାଗ କରିଦେଇ ହୁଏ । ଆଉ ସେହି ଶିଙ୍ଗାର ଏମିତି କଡ଼ା ଆବାଜ ଯେ ମଲା ମଣିଷ ବି ତାର ନିଦ୍ରାର ବିଳାସିତା ତ୍ୟାଗ କରି ଉଠି ବସେ ଏବଂ ଶଯ୍ୟାରୁ ଡେଇଁ ପଡ଼େ ।

ନିଦ ଭଙ୍ଗାଇବା ଲାଗି ଏହି ସୁବ୍ୟବସ୍ଥା ଛଡ଼ା ବି ଆଉ ଗୋଟିଏ ସାନ୍ତ୍ୱନା ଥିଲା । ଗାଇଡ୍ ବୁକ୍‌ରେ ଲିଖିତ ଅଛି ଯେ ସେହି ଉଚ୍ଚ-ତମ ଚୂଡ଼ାରେ ସାଜସଜାର କୌଣସି ଦରକାର ନାହିଁ, ଖାଲି ବିଛଣାର ଲାଲ କମ୍ବଳଟା ଦେହରେ ପକାଇ ଦିଅ ଏବଂ ଲୋହିତ ଭାରତୀୟଙ୍କ ପରି ବାହାରି ଯାଅ । ସିଧା ସଳଖ ସୂର୍ଯ୍ୟୋଦୟର ସାମନା ସାମନି । ଭାବିଲା କ୍ଷଣି ରୋମାଞ୍ଚ ଜାତ ହୁଏ ଏବଂ ସର୍ବାଙ୍ଗ ଶିହରି ଉଠେ । କି ଚମତ୍କାର ଦୃଶ୍ୟଟିଏ । ପ୍ରାୟ ଅଢ଼ାଇ ଶହ ଲୋକ ଖରବେଗରେ ବାହାରି ପଡ଼ୁଛନ୍ତି । ହୁ ହୁ ପବନରେ ସେମାନଙ୍କର କେଶ ଦାମ ଉଡ଼ୁଛି, ଆଉ ଲାଲ୍ କମ୍ବଳଗୁଡ଼ାକ ପବନରେ ପଟ ପଟ ହେଉଛି — ଏତିକି ବେଳେ ତୁଷାର ଶୀର୍ଷ ପର୍ବତ ପୁଞ୍ଜ ଭେଦ କରି

ଅଦୂରରେ ଜ୍ୟୋତିର୍ମୟ ସୂର୍ଯ୍ୟୋଦୟ ! ଭାବିଲା ମାତ୍ରେ କି ଆନନ୍ଦ ଜାତ ନ ହୁଏ ! ଏହାକୁ କହନ୍ତି ଚିର ସ୍ମରଣୀୟ ଘଟଣା ।

ଏହି ସମୟରେ ଦୁଃଖଟା କେତେକ ପରିମାଣରେ କମିଗଲା । ଗୁଡ଼, ଏହା ଆମର ଦୁର୍ଭାଗ୍ୟ ନୁହେଁ, ବରଂ ସୌଭାଗ୍ୟ ଯେ ଆଗ ସୂର୍ଯ୍ୟୋଦୟଗୁଡ଼ିକ ଆମେ ଦେଖିଛୁ । କାରଣ, ଚୂଡ଼ାନ୍ତ ଲାଭର କଥା ତଉଲି ବସିଲେ ଏସବୁ ହେଉଛି ସୂର୍ଯ୍ୟୋଦୟର ଲୋକସାନ— ଲୋକସାନ ଭିତରେ ନୁହେଁ ଅବଶ୍ୟ । ଏସବୁ ସୂର୍ଯ୍ୟୋଦୟ-ଦାନ ଧର୍ତ୍ତବ୍ୟ ଭିତରେ ଗଣା ହୁଏ ନାହିଁ । ଏଗୁଡ଼ିକ ଯେ ଆମେ ଅକ୍ଳେ-ଶରେ ଦେଖି ପାରିଛୁ, ସେଥିପାଇଁ ଆମେ ନିଜ ପ୍ରତି ଯଥେଷ୍ଟ କୃତ-ଜ୍ଞତା ବୋଧ କରୁଁ ।

ଘଣ୍ଟା ନ ବାଜୁଣୁ ଆମେ ବାହାରି ପଡ଼ିଲୁ । ଗାଇଡ ବୁକ୍ ମତରେ, ଏତେ ବେଳକୁ ଆମେ ପ୍ରାୟ ସବୁ ବାଟ ପାରି ହୋଇ ଆସିଲୁଣି । ଏଠାରୁ ଚୂଡ଼ାରେ ପହଞ୍ଚିବାକୁ ଆଉ ପନ୍ଦର ମିନିଟ ସମୟ ଲାଗିବ । ଅତଏବ ଆଶା କରା ଯାଉଛି, ଅତି ଦ୍ରୁତ ଗତିରେ ପାଦ ପକାଇ ଚାଲିଲେ ତିନି ଚୁର ଘଣ୍ଟା ଭିତରେ ନିଶ୍ଚୟ ଚୂଡ଼ାରେ ପହଞ୍ଚି ପାରିବୁ ଏବଂ ଆଜି ନିଶ୍ଚୟ ପହଞ୍ଚି ଯିବୁ । ତାହାହେଲେ କାଲି— କାଲି ସକାଳେ ସୂର୍ଯ୍ୟ ପୂରାପୂରି ଆମ ହାତ ମୁଠାରେ— ଏକବାର ସାମନା ସାମନି ।

ସନ୍ଧ୍ୟା ହେଲା ବେଳକୁ ଆମେ ରିଗିକୋମ ହୋଟେଲରେ ପହଞ୍ଚି ଯାଇଥିଲୁ । ଏହା ହିଁ ରିଗି ପାହାଡ଼ର ସର୍ବୋଚ୍ଚ ହୋଟେଲ । ଆମ କୁଳ ପିଲାଟିର ଦୟାରୁ ଆମ ପାଇଁ ଆଗରୁ ଗୋଟିଏ ବଖରା ଘର ଠିକ୍ କରା ହୋଇଥିଲା । ହୋଟେଲର ମାଲିକ ଆଗେଇ ଆସି ଆମକୁ ଅଭ୍ୟର୍ଥନା ଜଣାଇଲା ।

"ଏହି ଯେ, ଆପଣମାନେ ତ ଆସିଗଲେ, କେତେ ଦିନରୁ

ଆମେ ଆପଣମାନଙ୍କ ପାଇଁ ଅପେକ୍ଷା କରି ରହିଛୁ । ବାଟରେ କିଛି ଅସୁବିଧା ହୋଇ ନାହିଁ ତ ?"

ହାରିସ ଜବାବ ଦେଲା—"ନା, ସେମିତି କିଛି ନୁହେଁ ! କିନ୍ତୁ ଆଜ ଏମିତି କଣ !"

"ହେବାର ଯେ ଉପାୟ ନାହିଁ, ମହାଶୟ ! ଆମ ଗାଇଡ ବୁକ୍‌ରେ ସବୁ ନିର୍ଦ୍ଦେଶ ଯେ ଦିଆ ଯାଇଛି । ସମସ୍ତେ ଆମ ଗାଇଡ ବୁକ୍‌କୁ ପ୍ରଶଂସା କରନ୍ତି । ଏଇଥି ପାଇଁ ।"

ହାରିସ ଏଥର ଚୁପ୍ ହୋଇଗଲା, ଆଉ କିଛି କହିଲା ନାହିଁ ।

ମୁଁ କହିଲି—"ଯେତେବେଳେ ଆପଣ ଗାଇଡ ବୁକ୍ କଥାଟା ପକାଇଲେ, ସେତେବେଳେ ମୁଁ ନ କହି ରହି ପାରୁ ନାହିଁ । ଆପଣଙ୍କ ବହିରେ ଅଛି, ଓଯ଼ାଗିସ୍ ଠାରୁ ରିଗିକାମ୍ ପର୍ଯ୍ୟନ୍ତ ପଦ ବ୍ରଜରେ ଆସିବାକୁ ତିନି ଘଣ୍ଟା ପନ୍ଦର ମିନିଟ ଲାଗେ ।"

"ହଁ, ତିନି ଘଣ୍ଟା ପନ୍ଦର ମିନିଟ । ସେଥିପା ତ । କାହିଁକି, ଏଥିରେ କଣ କିଛି ଭୁଲ ଅଛି ?"

"ନା, ନା, ଠିକ୍ ଅଛି । ସେଥିରେ କିଛି ଭୁଲ ନାହିଁ । କେବଳ ତିନିଟା ଦିନ ମଝିରେ କୁଆଡ଼େ ଉଡ଼ିଗଲା ।"

"ଉଡ଼ିଗଲା ? ସେ କେମିତିକା କଥା ?" ହୋଟେଲବାଲା ଅବାକ୍ ହୋଇ ପଚାରିଲା—"ଆଜ୍ଞା, କଣ କହିଲେ ?"

"ଆଜ୍ଞା, ସେଟା ହେବ ତିନି ଦିନ ତିନି ଘଣ୍ଟା ପନ୍ଦର ମିନିଟ । କିନ୍ତୁ ଛପାର ଭୁଲ ଯୋଗୁଁ ଦିନ ତିନିଟା ବାଦ ପଡ଼ି ଯାଇଛି । ପ୍ରୁଫ୍ ଦେଖିବା ବେଳେ ବୋଧହୁଏ ତାହା ଆପଣଙ୍କ ନଜରରୁ ଖସି ଯାଇଛି"—ମୁଁ କଥାଟା ପ୍ରାଞ୍ଜଳ କରି ଦେଇ କହିଲି ।

ହାରିସ କହିଲା—"ହଁ, ଦ୍ୱିତୀୟ ସଂସ୍କରଣରେ ସେଟା ସଂଶୋଧନ କରି ଦେବାକୁ ଯେମିତି ଭୁଲା ନ ଯାଆନ୍ତି । କାରଣ ଆମେ ତ ଫେର୍ କେବେ ଏଠାକୁ ଆସି ପାରୁ ।"

ହୋଟେଲର ମାଲିକ ସନ୍ଦିଗ୍ଧ ଭାବରେ ମୁଣ୍ଡ ହଲାଇଲା । ଗାଇଡ଼ ବୁକ୍‌ରେ ଛପା ଭୁଲ ଥିବା କିମ୍ବା ଆମର ପୁଣି ଫେରି ଆସିବା, କେଉଁଥିରେ ଯେ ତାର ପ୍ରତ୍ୟୟ ହେଉ ନ ଥିଲା, ମୁଁ ତାହା ବୁଝି ପାରିଲି ନାହିଁ ।

ଆମେ ପୋଷାକ ବଦଳାଇ ରାତ୍ରି-ଭୋଜନ ସମାପନ କଲୁ । ତାପରେ ହୋଟେଲ ଭିତରେ ଇତସ୍ତତଃ ବୁଲିବାକୁ ବାହାରି ପଡ଼ିଲୁ । ଦୁଇ ଦୁଇଟା ପ୍ରକାଣ୍ଡ ବୈଠକଖାନା—ସେଥି ଭିତରୁ ଗୋଟିକର ଏକ କୋଣରେ ଗୋଟିଏ ଷ୍ଟୋଭ ଜଳୁଥିଲା । ସେହି ଷ୍ଟୋଭକୁ ଘେରି ମଣିଷର ଭିଡ଼ ଲାଗିଥାଏ—ସେହି ଜନତାର ଦୁର୍ଭେଦ୍ୟ ପ୍ରାଚୀର ଭିତରେ ଫାଙ୍କ କରି ନିଆଁ ପାଖକୁ ଯିବା ଅସମ୍ଭବ । ଏଣେ ଯେଉଁ ପ୍ରଚଣ୍ଡ ଶୀତ ! ଅଗତ୍ୟା ଆମ୍ଭେମାନେ ଏଣେ ତେଣେ ପଦଚାରଣ କରିବାକୁ ଲାଗିଲୁ—ବୁଲାଚଲାରେ ଦେହ ଯେତିକି ଗରମ ହୋଇ ପାରେ । ଚାରିଆଡ଼େ ଅଗଣିତ ଲୋକ ନୀରବରେ ବସି ଥିବାର ଦେଖାଗଲା—ସେମାନଙ୍କ ମୁହଁରେ ହସ ନାହିଁ-କି ଆଖିରେ ମାତ୍ର ଆନନ୍ଦ ନାହିଁ । ଶୀତରେ ମ୍ରିୟମାଣ ହୋଇ ସମସ୍ତେ କମ୍ପୁଥିଲେ ।

ସେମାନେ ବସି ରହି ଭାବୁଥିଲେ, ଏଠାକୁ ଆସି ବୋଧହୁଏ ସେମାନେ କି ବୋକାମି କରିଛନ୍ତି ।

କିନ୍ତୁ ଆମ୍ଭମାନଙ୍କର ସୂର୍ଯ୍ୟୋଦୟ ଦେଖିବାକୁ ଇଚ୍ଛା ଥିଲା । ସେଥିପାଇଁ ଆମେ ଏତେ ଦୂରକୁ ଆସିଥିଲୁ—ଅତଏବ ଆଉ ବେଶି ବେଳ ଯାଏ ବୁଲାବୁଲି ନ କରି ତୁରନ୍ତ ଯାଇ ବିଛଣାରେ ଶୋଇ ପଡ଼ିଲୁ । ପାହାଡ଼ରେ ଚଢ଼ିବା ଫଳରେ ମୁଁ ଏତେ କ୍ଲାନ୍ତ ହୋଇ ପଡ଼ିଥିଲି ଯେ ନିଦ୍ରାର କବଳରେ ରାତିରେ ଥରେ ହେଲେ ବି କଡ଼ ଲେଉଟାଇ ପାରିଲି ନାହିଁ । ଯେଉଁ କଡ଼ରେ ଶୋଇଥିଲି, ପୁଣି

ସେହି କଣ୍ଠରେ ଉଠିଲି । ଶିଙ୍ଗାର ଆବାଜରେ ଅବଶ୍ୟ ମୋତେ ଉଠିବାକୁ ପଡ଼ିଥିଲା ।

କହିବା ବାହୁଲ୍ୟ, ଆଉ ମୁହୂର୍ତ୍ତେ ସମୟ ବି ଆମେ ନଷ୍ଟ କଲୁ ନାହିଁ । ନଷ୍ଟ କରିବାର ବି ଦରକାର ନ ଥିଲା, କାରଣ ଆମର ସାଜ ପୋଷାକ ହେବାର ହେଙ୍ଗାମା ନ ଥିଲା । ନାମ ମାତ୍ର ପରିଚ୍ଛଦ ସ୍ୱରୂପ ଲାଲ କମ୍ବଳଟା ଦେହରେ ଦେଇ, ଆମେ ପ୍ରାୟ ଅବିକଳ ଲୋହିତ ଭାରତୀୟଙ୍କ ପରି, ସବେଗରେ ଖୋଲା ମଥାରେ ହେମାଳ ପବନରେ ବାହାରି ପଡ଼ିଲୁ ।

ହୋଟେଲ ନିକଟରେ ଗୋଟାଏ ଉଚ୍ଚ ଫାଶୀର ମଞ୍ଚ ଥିଲା । ସେଟା ଆମ ନଜରରେ ପଡ଼ିଲା । ଆମେ ସେହି ଆଡ଼କୁ ଦୌଡ଼ିଗଲୁ । ସିଡ଼ି ବାଟେ ଉପରକୁ ଉଠିଗଲୁ ଏବଂ ଉଠିଯାଇ ଆମେ ସ୍ୱର ଆଡ଼କୁ ଅନାଇଲୁ । ସମ୍ମୁଖରେ ଦିଗନ୍ତ ବିସ୍ତୃତ ପ୍ରାନ୍ତର—ସ୍ୱର ଆଡ଼େ ପବନ ହୁ ହୁ ହୋଇ ବହୁଥିଲା, ଆମ ବାଳ ଭିତରେ ବି ଖେଳି ଯାଉଥିଲା ଏବଂ ଆମ ଲାଲ କମ୍ବଳଟାକୁ ପଟ ପଟ କରି ପିଟୁଥିଲା । ଠିକ୍ ଯେମିତି ଭାବରେ ଗାଇଡ ବୁକ୍‌ରେ ଲେଖା ଥିଲା ।

ହାରିସ ବିରକ୍ତିପୂର୍ଣ୍ଣ କଣ୍ଠରେ କହିଲା—"ଏଥର ଖୁବ୍ ଡେରି ହୋଇଗଲା । ସୂର୍ଯ୍ୟ ବି ଆକାଶରେ ଯଥେଷ୍ଟ ଉପରକୁ ଉଠି ଆସିଲେଣି ।"

ମୁଁ କହିଲି—"ହେଉ, ସେଥିରେ କଣ ହେଲା ! ତଥାପି ଏ ଦୃଶ୍ୟଟା ବି ଖୁବ୍ ଚମତ୍କାର, ଅବିସ୍ମରଣୀୟ । ସୂର୍ଯ୍ୟ କେତେ ଉପରକୁ ଉଠୁଛନ୍ତି ଦେଖା ଯାଉ ନା, ଶେଷ ପର୍ଯ୍ୟନ୍ତ ଦେଖାଯାଉ ।"

ଏହି ଅପୂର୍ବ, ଅଭୂତପୂର୍ବ ଓ ଅପରୂପ ଦୃଶ୍ୟର ସମ୍ମୁଖରେ ଆମ୍ଭେମାନେ ଏକବାରେ ଆତ୍ମହରା ହୋଇଗଲୁ । ମିନିଟ ପରେ

ମିନଟ କଟି ଯାଉଥାଏ । ଅନ୍ଧକାରରେ କଟି ଯାଉଥାଏ, କିନ୍ତୁ ଆମେ ନିଶ୍ଚଳ ଓ ନିର୍ବାକ । ଆମର ନିଶ୍ୱାସ ଚାଲୁଥାଏ କି ନା ସନ୍ଦେହ ।

ଆମେ ଏହି ମହିମାମୟ ସୌନ୍ଦର୍ଯ୍ୟର ସୁଧା ଯେମିତି ନିଃଶବ୍ଦରେ ଓ ନିଃଶେଷରେ ପାନ କରି ଚାଲିଥିଲୁ ।

"ଆରେ, ଆରେ—ଏହି ଯେ ବୁଡ଼ି ଯାଉଛିରେ !"

ସତରେ ତ ! ତାହାହେଲେ, ଆମେ ନିଶ୍ଚୟ ସକାଳର ଶିଙ୍ଗା ବାଦ୍ୟ ଶୁଣିବାକୁ ପାଇ ନାହୁଁ; ଦିନ ସାରା ବଧିରତ୍ୱରେ କଟାଇ ଦେଇଛୁ । ଏ ତ ଭାରି ଆଶ୍ଚର୍ଯ୍ୟ ବ୍ୟାପାର । ଆମେ ବିମୂଢ଼ ହୋଇଗଲୁ ।

ହାଉସ ଶ୍ଲେଷ କଣ୍ଠରେ କହିଲା—"ଆରେ ଦେଖ, ଦେଖ । ସୂର୍ଯ୍ୟ ନୁହେଁ—ଆମେ ଗୋଟାଏ ଦୃଶ୍ୟ ହୋଇ ଯାଇଛୁ । ଏହି ଉଚ୍ଚ ଫାଶୀ ମଞ୍ଚ ଉପରେ ଠିଆ ହୋଇ ବୋକାଙ୍କ ଭଳି ଦେହରେ କମ୍ବଳ ଘୋଡ଼ାଇ ସନ୍ଧ୍ୟା ବେଳେ ସୂର୍ଯ୍ୟୋଦୟ ଦେଖିବାକୁ ଆସିଛୁ ! ଆଉ ଦେଖ, ତଳେ ସେହି ଅଢ଼େଇ ଶହ ଲୋକ ସାନ୍ଧ୍ୟ ପୋଷାକରେ ଭୂଷିତ ହୋଇ ପବନ ଖାଇବାକୁ ବାହାରିଛନ୍ତି । ଆଉ କି ହସ ବା ସେମାନେ ହସୁ ନାହାନ୍ତି ! ଗୋଟିଏ ଗ୍ରେଟ ଝିଅ ତ ହସି ହସି ଗଡ଼ି ପଡ଼ିଲା । ତୁମ ଭଳି ବୋକା ମୁଁ ଆଗରୁ କେବେ ହେଲେ ଦେଖି ନ ଥିଲି । ତୁମକୁ ଗଧ ବୋଲି କହି ଅପମାନ ଦିଆଯାଏ । ତାହା ନିଶ୍ଚୟ ଯଥାର୍ଥ !"

"କାହିଁକି, ମୁଁ କଣ କରିଛି ?" ମୁଁ ବି ଗରମ ହୋଇଯାଇ କହିଲି ।

"ତୁମେ କଣ କରିଛ ? ସନ୍ଧ୍ୟା ସାଢ଼େ ସାତଟା ବେଳେ ନିଦରୁ ଉଠି ସୂର୍ଯ୍ୟୋଦୟ ଦେଖିବାକୁ ଆସିଛ ତୁମେ—ତୁମେ ଏହା କରିଛ !"

"ଆରେ, ତୁମେ ନିଜେ ଏହା ଠାରୁ ବେଶୀ କଣ କରିଛ, ଶୁଣେ ? କୁକୁଡ଼ା ଡାକିଲେ ଉଠି ପଡ଼ିବା ଥିଲା ମୋର ଚିର କାଳର ଅଭ୍ୟାସ । କିନ୍ତୁ ଯେଉଁ ଦିନ ଠାରୁ ମୁଁ ତୁମ ପାଲରେ ପଡ଼ିଛି, ତୁମ ଭଳି ଅଳସୁଆ ପାଲରେ—" କହିବାକୁ ଯାଇ ମୋର ଦମ ଅଟକି ଗଲା ।

ଦମ ନେଇ ମୁଁ ବାକ୍ୟଟାକୁ ଶେଷ କଲି—"ସେହି ଦିନରୁ ମୋର ସବୁ କିଛି ବିଗିଡ଼ି ଯାଇଛି । ସବୁ କିଛି ଓଲଟ ପାଲଟ ହୋଇ ଯାଇଛି ।"

"ଏଁ, କଣ କହୁଛ, ତୁମେ କୁକୁଡ଼ା ଡାକିଲେ ଉଠୁଥିଲ ? ମିଛ କଥା । ତାହାହେଲେ କୁକୁଡ଼ାଗୁଡ଼ାକ ସେ ଦିନ ଆଉ ଉଠୁ ନ ଥିଲେ । କିନ୍ତୁ ନା, ତୁମକୁ ଆଉ କଣ କହିବି ! ସତରେ ତୁମକୁ ଲଜ୍ଜା ନାହିଁ । ନ ହେଲେ, ଖାଲି କମ୍ବଳ ଦେହରେ ଘୋଡ଼ାଇ, ଏହି ଝୁଲନ୍ତ ପୁଟ ଉଚ୍ଚ ଫାଶୀ ମଞ୍ଚ ଉପରେ ଠିଆ ହୋଇ, ରାଜ୍ୟ ସାରା ଲୋକଙ୍କ ସାମନାରେ ତୁମେ ଗରମ ମିଜାଜ ଦେଖାଉ ନ ଥାନ୍ତ !"

"ଆଉ ତୁମେ ଅନ୍ୟ କି ରକମ ମିଜାଜଟା ଦେଖାଉଛ ଶୁଣେ ?"

ଆମର କଳହ ଚାଲିଥାଏ, ଏଣେ ସୂର୍ଯ୍ୟ ଅସ୍ତ ହୋଇ ଯିବାରୁ ଅନ୍ଧକାର ବି ମାଡ଼ି ଆସୁଥାଏ । ସେତେବେଳେ ଆମେ ଗୋଡ଼ ଟିପି ଟିପି ଅତି ସନ୍ତର୍ପଣରେ ସେହି ଉଚ୍ଚ ପଥର ସିଡ଼ି ବାଟେ ତଳକୁ ଓହ୍ଲାଇ ଆସିଲୁ । ପ୍ରାଣକୁ ହାତରେ ଧରି ଆମକୁ ଓହ୍ଲାଇବାକୁ ପଡ଼ୁଥିଲା । କାରଣ ଯଦି ଫାଶୀ ମଞ୍ଚରୁ ଗୋଟାଏ ପାଦ ଖସିଯାଏ, ତାହାହେଲେ ତଳେ ପଡ଼ି ଯିବାକୁ ଆଉ କେତେ ସମୟ ଲାଗିବ ?

ହୋଟେଲକୁ ଫେରିଆସି ଆମେ ଶିଙ୍ଗା-ବାଦକକୁ ଖୋଜି ବାହାର କଲୁ । ସେ ଜଣାଇଲା ଯେ ସକାଳେ ସେ ଯଥାରୀତି ଶିଙ୍ଗା ବଜାଇଥିଲା । ହଁ, ତାର ବେଶ୍ ମନେ ଅଛି, ସେ ବିଷୟରେ ତାର କୌଣସି ଭୁଲ ହୋଇ ନ ପାରେ । ଏକଷଣି ଠିକଏ ଆଗରୁ ସେ ସନ୍ଧ୍ୟାର ଶିଙ୍ଗା ବଜାଇଥିଲା । ସେଥିରେ ଯେ ଦୈବାତ୍ ଆମର ନିଦ ସେ ଭଙ୍ଗାଇ ଦେଇ ପାରିଥିଲା ଏବଂ ଅନ୍ତତଃ ସୂର୍ଯ୍ୟାସ୍ତଟା ଆମେ ଦେଖି ପାରିଲୁ ଓ ସେଇ ଦୃଶ୍ୟଟା ଆମେ ହରାଇ ନାହୁଁ, ସେଥିପାଇଁ ସେ ଓଲଟି ଆମ ଠାରୁ ବକସିସ୍ ଦାବୀ କରି ବସିଲା ।

ତାକୁ ବକସିସ୍ ଦିଆଗଲା । ତାପରେ ସେ କ୍ଷତିପୂରଣର ଅର୍ଜି ପେଶ କଲା । ତାର ଶିଙ୍ଗା ଶବ୍ଦରେ ସକାଳେ ଉଠିଥିଲେ ତ ସୂର୍ଯ୍ୟୋଦୟ ଦେଖାଇବାର ବକସିସ୍ଟା ତାକୁ ମିଳିଥାନ୍ତା । କିନ୍ତୁ ଆମେ ମେଣ୍ଢା ପରି ଶୋଇ ରହି ସେଥିରୁ ତାକୁ ବଞ୍ଚିତ କରିଛୁ ଏବଂ ଶିଙ୍ଗା ଫୁଙ୍କି ଫୁଙ୍କି ବିଚରାକୁ ଅଯଥା ହଇରାଣ କରିଛୁ । ଏଥିପାଇଁ ବି ଆମେ ଦାୟୀ । ସେ ଅବଶୋଷ କରି ଏହା ଜଣାଇଲା ।

ଆମକୁ ମାନିବାକୁ ହେଲା, ତାର ଯୁକ୍ତିଟା ଠାଣୁଆ । ସକାଳର କ୍ଷତିପୂରଣଟା ବି ଆମକୁ ଦେବାକୁ ପଡ଼ିଲା । ଯେଉଁଠି ଯାହା କରିବା ବିଧି, ତାହା ନିଶ୍ଚୟ କରିବାକୁ ହେବ ।

ତାପରେ ଆମେ ହାଲୁକା ପକେଟ ଓ ଭାରି ମନ ନେଇ ବିଷଣ୍ଣ ବଦନରେ ବିଛଣାରେ ଯାଇ ଗଡ଼ି ପଡ଼ିଲୁ ।

ଶିଙ୍ଗା-ବାଦକ ଜଣାଇ ଦେଇ ଯାଇଥିଲା ଯେ ପର ଦିନ ଭୋର ବେଳେ, ଅନ୍ଧକାର ଥାଉଁ ଥାଉଁ ଯେ କୌଣସି ପ୍ରକାରେ ହେଉ ପଛକେ, ଆମ କାନ ପାଖରେ ଆସି ସେ ଶିଙ୍ଗା ବଜାଇବ । ଏଥି ପାଇଁ ଅବଶ୍ୟ ତାକୁ ଦୁଇ ଗୁଣ ବକସିସ୍ ଦେବାକୁ ହେବ । କିନ୍ତୁ ଯଦି ତାର କସରତ ଫଳରେ ଆମ କାନର ପର୍ଦା ଫାଟିଯାଏ

ଓ ଆମେ ସେଥିରେ କାଲ ହୋଇଯାଉ, ସେଥିପାଇଁ ଅବଶ୍ୟ ତାକୁ ଦାୟୀ କରାଯାଇ ପାରିବ ନାହିଁ ।

ଆମେ ସେଥିରେ ରାଜି ହୋଇଗଲୁ । ଯେତେ ମୂଲ୍ୟ ଦେବାକୁ ପଡ଼ୁ ପଛକେ, ପାଶ୍ଚାତ୍ୟ ସୂର୍ଯ୍ୟୋଦୟ ଦେଖି ଆମକୁ ଜୀବନ ସାର୍ଥକ କରିବାକୁ ହେବ । ସେଥିରେ କାନ ଯାଉ ଅବା ରହୁ । କାନ କଣ, ଆଉ ପ୍ରାଣ ବା କଣ ! ଆଗେ ସୂର୍ଯ୍ୟ ନା ଆଗେ କାନ ? ସୂର୍ଯ୍ୟୋଦୟ ନିକଟରେ ଆଉ କିଛିର ମୂଲ୍ୟ ନାହିଁ । ସବୁ କିଛି ତୁଚ୍ଛ ।

ଲୋକଟି ତା କଥା ରଖିଥିଲା ଏବଂ ଏହା ବି କହିବା ଦରକାର, ପ୍ରାଣ ପଣେ ଚେଷ୍ଟା କରି ସୁଦ୍ଧା ସେ ଆମ କାନ ଫଟାଇ ପାରିଲା ନାହିଁ ।

ଶିଙ୍ଗାର ଆବାଜ ଶୁଣିବା ମାତ୍ରେ ଆମେ ଧଡ଼ପଡ଼ ହୋଇ ଉଠି ପଡ଼ିଲୁ । ତତ୍କ୍ଷଣାତ୍ ତାକୁ ବକସିସ୍ ନ ଦେଇ ତାର କାନଫଟା ବାଦ୍ୟ ବନ୍ଦ କରିଦେଲୁ । କାନ ଠାରୁ ଯେତେ ଦୂରକୁ ଯିବା ସମ୍ଭବ, ତାକୁ ସେତିକ ଦୂରକୁ ଘଉଡ଼ାଇ ଦେଲୁ ।

ସେତେବେଳେ ସକାଳ ହୋଇ ନ ଥିଲା । ବାହାରେ କଟି-କଟା ଅନ୍ଧାର । ଘର ଭିତରେ ମଧ୍ୟ । ଶିଙ୍ଗା-ବାଦକ ସାଙ୍ଗରେ ଯେଉଁ ଲଣ୍ଠନଟା ଆଣିଥିଲା, ତାକୁ ନେଇ ଯାଇଥିଲା । ଗୃହଆଡ଼େ ଅଣ୍ଡାଳ ଅଣ୍ଡାଳ ଦିଆସିଲଟା ଖୋଜ ବାହାର କଲି ଏବଂ ତାପରେ ମହମବତିଟା ଜଳାଇଲି ।

ଏକେ ତ ଅନ୍ଧକାର, ତା ଉପରେ ଏମିତି ଥଣ୍ଡା । ଶୀତରେ କମ୍ପୁଥିଲେ ସୁଦ୍ଧା କୌଣସି ମତେ କୋଟର ବୋତାମଗୁଡ଼ାକ ମାରିଦେଲି । ହାତ ଥରୁଥିଲା, ଦାନ୍ତ ଠକ୍ ଠକ୍ ବାଜୁଥିଲା, ଆଉ ପାଦ ଯେମିତି ପ୍ରତି ମୁହୂର୍ତ୍ତରେ ଭାଙ୍ଗି ପଡ଼ୁଥିଲା । ଆମକୁ କାଯୁ କ୍ଳେଶରେ ପଦସ୍ଖଳନ ସମ୍ଭାଳିବାକୁ ପଡ଼ିଲା ।

ଏହି ସମୟରେ ୟୁରୋପ, ଏସିଆ ଓ ଆମେରିକାରେ ସବୁଦେ ଲୋକେ ଆରାମରେ କମ୍ବଳ ଘୋଡ଼ାଇ ହୋଇ ଶୋଇଛନ୍ତି ଏବଂ ପାର୍ବତ୍ୟ ସୂର୍ଯ୍ୟୋଦୟ ଦେଖିବା ପାଇଁ କାହାର ଗରଜ ନାହିଁ, ଆଉ ଆମ ଭାଗ୍ୟରେ ଏ କି ଦୁର୍ଯୋଗ, ଦେଖ ତ ! ସୂର୍ଯ୍ୟଙ୍କର ବ୍ୟବହାର ବି ଅତିଶୟ ବିରକ୍ତିକର । ଏତେ ଭୋରରୁ, ଏମିତି ଥଣ୍ଡା ଭିତରେ, ନ ଉଠିଲେ କଣ ତାଙ୍କର ଚଳନ୍ତା ନାହିଁ ? କାହିଁକି, ଦିପହର ବେଳେ ଉଠିବାରେ ବା ତାଙ୍କର ଏମିତି କି ବାଧା ଅଛି ?

ସେତେବେଳକୁ ହାରିସ୍ ଝରକା ପାଖକୁ ଯାଇ, ପର୍ଦା ଟେକି ଦେଇ ବାହାରକୁ ଅନାଇ କହିଲା—"ବାଃ, ଯିଏ କୁହନ୍ତି କହନ୍ତୁ କପାଳ । ଆମକୁ ଆଉ ବାହାରକୁ ଯିବାକୁ ପଡ଼ିବ ନାହିଁ । ସେହି ଯେ ପାହାଡ଼ର ଚୂଡ଼ା ଦେଖା ଯାଉଛି, ଏଠାରୁ ସୂର୍ଯ୍ୟୋଦୟ ଦେଖାଯିବ ବେଶ୍ ସ୍ପଷ୍ଟ ଭାବରେ ।"

ସୁସମ୍ବାଦ, ସନ୍ଦେହ ନାହିଁ । ଏହି ହାଡ଼ଭଙ୍ଗା ଶୀତରେ ବାହାରକୁ ବାହାରିବାକୁ ପଡ଼ିଥିଲେ କଥା ସରି ଯାଇଥାନ୍ତା । ତା ଉପରେ ଯଦି କେହି କହନ୍ତି ହୋଟେଲ ଉପରେ ସେହି ଫାଶୀ ମଞ୍ଚରେ ଠିଆ ହୋଇ ସୂର୍ଯ୍ୟୋଦୟ ଦେଖିବାକୁ ହୋଇଥାନ୍ତା, ତାହା ହେଲେ ତ କିଛି କଥା ନ ଥିଲା । କେତେ ଖଣ୍ଡି ହାଡ଼ ପାହାଡ଼ ଉପରେ ରଖି ଯିବାକୁ ପଡ଼ିଥାନ୍ତା । କିଏ କହିପାରେ, ଶେଷକୁ ଆମେ କୁଲ୍‌ପି ବରଫ ହୋଇ ନ ଯାଇଥାନ୍ତୁ !

ଗୁଡ଼ାଏ ପୋଷାକ ପିନ୍ଧି ଓ ତା ଉପରେ କମ୍ବଳ ଘୋଡ଼ାଇ ହୋଇ, ଆମେ ଝରକା ପାଖକୁ ଯାଇ ବସିଲୁ । ସିଗାରେଟ ଲଗାଇଲୁ । ରିଗି ପାହାଡ଼ରେ ସୂର୍ଯ୍ୟୋଦୟ ଗୋଟାଏ ଉପଭୋଗ୍ୟ ଜିନିଷ । ଆରାମ କରି ତାକୁ ଦେଖିବାକୁ ହେବ ।

ଢକ୍ ଚହାନ୍ତ ପରିଷ୍କାର ହୋଇ ଧୀରେ ଧୀରେ ପ୍ରତ୍ୟୁଷର ଛଟା ଖେଳାଇ ହୋଇ ଯିବାକୁ ଲାଗିଲା । ଆସ୍ତେ ଆସ୍ତେ ଆକାଶ ଉଦ୍ଭାସିତ ହୋଇଗଲା । ଦୂରସ୍ଥ ବରଫାଚ୍ଛନ୍ନ ପର୍ବତ-ଶିଖରଗୁଡ଼ିକ ବି ପ୍ରଭାତର ଆଲୋକରେ ସମୁଜ୍ଜ୍ୱଳ ହୋଇଗଲେ । କିନ୍ତୁ ସେ ଅବଧି —ସୂର୍ଯ୍ୟଙ୍କର ଦେଖା ଦେବାକୁ ପ୍ରାୟ ମନ ନ ଥିଲା !

"ଏହି ସୂର୍ଯ୍ୟୋଦୟ ଋଷପୂଟିରେ କେଉଁଠି ନିଶ୍ଚୟ କିଛି ଗଳତି ଅଛି । ମୁଁ ସନ୍ଦେହ କରୁଛି, କେଉଁଠି କୌଣସି ଗୋଳମାଳ ଘଟିଛି ବୋଧହୁଏ । ଏହା ଯେ ଆଦୌ କିଛି ହେବାର ନୁହେଁ । କଣ ହୋଇଛି କୁହ ତ ଦେଖି ?"

"ମୁଁ ତ ଭାଇ କିଛି ବୁଝି ପାରୁ ନାହିଁ । ଆକାଶ ବି ଫରଚ୍ଛ ହୋଇ ଆସିଲାଣି, ଦୂରରେ କେଉଁଠି ନିଆଁ ଲାଗିଲେ ଯେମିତି ହୁଏ ସେମିତି । ଆଲୁଅ ବି ଦେଖା ଯାଉଛି—ଅଥଚ ସୂର୍ଯ୍ୟଙ୍କର ପତ୍ତା ନାହିଁ । ଆଶ୍ଚର୍ଯ୍ୟ ।"

"ସୂର୍ଯ୍ୟଙ୍କର ଏମିତି ବ୍ୟବହାର ଏହା ଆଗରୁ ମୁଁ ଦେଖି ନାହିଁ । ତୁମର କଣ ମନେ ହେଉଛି ଯେ ହୋଟେଲର ମାଲିକ-ମାନେ ଆମକୁ ଫାଙ୍କି ଦେଇଛନ୍ତି ? ଆମ ସାଙ୍ଗରେ ଚାଲାକି ଖେଳୁ-ଛନ୍ତି ? ସୂର୍ଯ୍ୟଙ୍କୁ ଉଠିବାକୁ ଦେଉ ନାହାନ୍ତି ?"

"ପାଗଳ ! ସେ କଥା ସେମାନେ କେବେ କରି ପାରନ୍ତି ? ଏହି ସୂର୍ଯ୍ୟ ହିଁ ହେଲା ସେମାନଙ୍କର ପୁଞ୍ଜି, ସେମାନଙ୍କର ମୂଳଧନ —ଏହାକୁ ଖଟାଇଲେ ସେମାନଙ୍କର ବ୍ୟବସାୟ । ତେବେ ସେଟା ଅସ୍ଥାବର ସମ୍ପତ୍ତି, ଏତିକି ଯାହା ।"

"ତାହା ସତ । ଆଉ ତାହା ଛଡ଼ା, ସୂର୍ଯ୍ୟଙ୍କର ଉପସ୍ଥିତି ହିଁ ସେମାନେ ଭୋଗ କରନ୍ତି । ଜମିଦାରୀର ଆଧାରରେ ହିଁ ସେମାନଙ୍କର ଅଧିକାର, ମାତ୍ର ତାର ପରିଚାଳନାରେ ତ ସେମାନଙ୍କର କୌଣସି

ହାତ ନାହିଁ । ତୁମେ କଣ କହୁଛ ? କିନ୍ତୁ ତାହା ଯଦି ହୁଏ ?"

ହାରସ୍ କହିଲା—"ଜମିଦାରଙ୍କର ଗୁଳି ଚାଳଣା ଯଦି ଉପର୍ଯ୍ୟୁପରି କେତେ ଦିନ ଏହି ପ୍ରକାର ହୁଏ, ତାହାହେଲେ ଆଉ ଦେଖିବାକୁ ହେବ ନାହିଁ । ସେମାନଙ୍କୁ କାରବାର ଉଠାଇ ନେବାକୁ ପଡ଼ିବ । ଏତେ ବଡ଼ ହୋଟେଲର ଦଫା ରଫା ଶେଷ । ଏହି ବ୍ୟବସାୟ ଚଳାଇ ସେମାନଙ୍କୁ ଆଉ ରୋଜଗାର କରିବାକୁ ହେବ ନାହିଁ ।"

ମୁଁ କହିଲି—"ତାହା ତ ହେଲା । କିନ୍ତୁ ଏତେ ବେଳ ହୋଇ ଗଲାଣି, ସୂର୍ଯ୍ୟ ମହାଶୟ ଆଜି ଉଠୁ ନାହାନ୍ତି କାହିଁକି ?"

ହାରସ୍ ହଠାତ୍ କହି ପକାଇଲା—"ହୋଇଛି, ହୋଇଛି ! ଧରି ପାରିଛି ମୁଁ—କାଲି ଯେଉଁ ଆଡ଼େ ସୂର୍ଯ୍ୟ ଅସ୍ତ ଯାଉଥିଲେ, ଆମେ ଯେ ଆଜି ସେହି ଆଡ଼କୁ ଚାହିଁ ରହିଛୁ ।"

"ହଁ, ସତରେ ତ ! ଏହା ଅଗରୁ ତୁମ ମଥାରେ ଏଟା ଖିଆଲ ହେଲା ନାହିଁ ? ହାୟ, ହାୟ, ଏତେ କଷ୍ଟ କରି ସୁଦ୍ଧା ଏହି ସୂର୍ଯ୍ୟୋଦୟଟା ବି ଆମେ ହରାଇଲେ । ଏତେ ଭୋରରୁ ଉଠି ସୁଦ୍ଧା ! ଛି, ଛି !"

ହାରସ୍ ଖୁବ୍ ରଗି ଯାଇ କହିଲା—"ଦୋଷ ତ ତୁମର ! ଝରକାରେ ବସି ଦିବ୍ୟ ଆରାମରେ ବାବୁଙ୍କର ସିଗାରେଟ ଟଣା ଯାଉଛି ! ଯେମିତି ତାଙ୍କ ଖାତିରରେ ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହେବେ !"

ଆଉ ଥରେ ଝଗଡ଼ାର ଉପକ୍ରମ ଦେଖା ଗଲା । ମୁଁ ବ୍ୟସ୍ତ ହୋଇ ପଡ଼ି କହିଲି—"ଚାଲ, ଚାଲ । ଏକ୍ଷଣି ବୋଧହୁଏ ବେଶି ଡେରି ହୋଇ ନାହିଁ । ଗଲେ ସୂର୍ଯ୍ୟୋଦୟର କିଛିଟା ଏକ୍ଷଣି ବି ଦେଖିବାକୁ ମିଳି ଯାଇ ପାରେ ।"

ଆମେ ଦୁହେଁ ବାହାରି ପଡ଼ିଲୁ । ଏକା ଦମରେ ସିଧା ଦଉଡ଼ି

ଗଲୁ ପଡ଼ିଆକୁ ସୂର୍ଯ୍ୟୋଦୟ ଦେଖିବା ପାଇଁ । ଆଉ ମୁହୂର୍ତ୍ତେ ମୁଁ ଛିଡ଼ା ହୋଇ ପାରିଲି ନାହିଁ ।

କିନ୍ତୁ ଏହା ଭିତରେ ଟିକିଏ ବେଶ୍ ଡେରି ହୋଇ ଯାଇଥିଲା । ସେତେବେଳକୁ ସବୁ ଲୋକ ପ୍ରଦର୍ଶନୀର କ୍ଷେତ୍ରରୁ ଫେରି ଆସୁଥିଲେ । ସେତେବେଳକୁ ସୂର୍ଯ୍ୟଙ୍କ ପ୍ରଦର୍ଶନୀ ସରି ଗଲାଣି ।

ଆମକୁ ଅପେକ୍ଷା ନ କରି ଭଦ୍ରଲୋକମାନେ ଉଠି ପଡ଼ୁଥିଲେ ।

ସମସ୍ତେ କମ୍ପି କମ୍ପି ଫେରି ଆସୁଥିଲେ । ଜଣକର ମୁଖରେ ବି ଟିକିଏ ହେଲେ ହସ ନ ଥିଲା । ଟିକିଏ ଆଗରୁ ଏମିତି ଗୋଟାଏ ଅପୂର୍ବ ଦୃଶ୍ୟ ଯେ ପ୍ରତ୍ୟକ୍ଷ କରିବାର ସୌଭାଗ୍ୟ ସେମାନଙ୍କ ଜୀବନରେ ଘଟିଥିଲା, ସେଥିପାଇଁ ଆତ୍ମପ୍ରସାଦର ତିଳେ ମାତ୍ର ଚିହ୍ନ କାହାରି ମୁଖ ମଣ୍ଡଳରେ ନ ଥିଲା ।

ସେତେବେଳେ ବି କେତେ ଜଣ ଲୋକ ପ୍ରଦର୍ଶନୀ କ୍ଷେତ୍ରରେ ଅଟକି ଯାଇଥିଲେ । ଶୀତର ପ୍ରାବଲ୍ୟ ହେତୁ ସେମାନେ ବୋଧହୁଏ ଚଳତ୍‌ଶକ୍ତି ରହିତ ହୋଇ ଯାଇଥିଲେ । କେହି କୁଜା ହୋଇ ଯାଇଥିଲା, ଆଉ କେହି ବା କୁକୁର କାକୁର ହେଉଥିଲା । ତାଙ୍କ ଭିତରୁ କେହି କେହି କମ୍ପିତ କଳେବରରେ, ନିକଟସ୍ଥ ଖଣ୍ଡିଏ ପ୍ରସ୍ତର ଫଳକ ଉପରେ, ଦୈର୍ଘ୍ୟ-ହ୍ରସ୍ୱରେ ଯେଉଁଟା ନିହାତି କମ ହେବ ନାହିଁ, ଗୋଟିଏ ଗ୍ଲେଟ ହାତ-ବଟାଳିରେ, ନିଜ ନିଜର ନାମ ଖୋଳିବାରେ ଲାଗିଥିଲେ । ସେମାନଙ୍କର ଅମରତ୍ୱର ଆକାଙ୍‌କ୍ଷା ! ରିଗି ପାହାଡ଼ର ଦେହରେ ନିଜ ନିଜର ସ୍ମୃତି ଚିହ୍ନ ସେମାନେ ଖୋଦିତ କରି ରଖି ଯିବାକୁ ଚାହୁଁ ଥିଲେ—ରିଗିକୁ ଦାଗି କରି ରଖି ଯିବାକୁ ଚାହୁଁ ଥିଲେ—ରାଗ ଓ କ୍ରୋଧରେ କି ନା କିଏ ଜାଣେ !

ଏତାଦୃଶ ମର୍ମଭେଦୀ ଦୃଶ୍ୟ ମୁଁ ମୋ ଜୀବନରେ ଆଉ କେବେ ଦେଖି ନାହିଁ ।

—ମାର୍କ ଟ୍ୱେନ

# ମରଣର ଛଦ୍ମ ବେଶ

ଲୋହିତ ମୃତ୍ୟୁର ଆକ୍ରମଣରେ ସମଗ୍ର ଅଞ୍ଚଳଟି ଉଚ୍ଛନ୍ନ ହେବାକୁ ବସିଥାଏ । ମୃତ୍ୟୁର ଏହି ଅଭିଯାନ ଅବ୍ୟର୍ଥ । ଏହି ମହାମାରୀ କଳ୍ପନାତୀତ ଭୟାବହ । ଲୋହିତ ମୃତ୍ୟୁ ହିଁ ରକ୍ତ ପିପାସୁ ଅବତାର । ମଣିଷ ରକ୍ତରେ ତାର ଭୟଙ୍କର ପୂଜାର ଉପଚାର । ଏହି କରାଳ ଦେବତାର ଭ୍ରୂକୁଟି ଯାହା ଉପରେ ପଡ଼େ, ତାର ସର୍ବାଙ୍ଗ ହଠାତ୍ ବ୍ୟଥାରେ ଭରିଯାଏ ହୋଇଯାଏ । ମୁହୂର୍ତ୍ତକ ଭିତରେ ଯନ୍ତ୍ରଣାରେ ତାର ଜ୍ଞାନ ଲୋପ ହୋଇଯାଏ । ତା ପରେ ମୁଖ ଓ ଦେହର ପ୍ରତ୍ୟେକ ଅଙ୍ଗର ରୋମ କୂପ ବାଟେ ହୃତ୍‌ପିଣ୍ଡର ଶେଷ ରକ୍ତ ବିନ୍ଦୁ ନିର୍ଗତ ହୋଇଯାଏ । ବ୍ୟାଧିର ଆକ୍ରମଣ ଅଧ ଘଣ୍ଟାକରୁ ବେଶୀ ନୁହେଁ । ତା ପରେ ରକ୍ତାକ୍ତ ମୃତ ଦେହ ପଡ଼ି ରହେ । ଚାଲିଛି ମୃତ୍ୟୁର ଅମୋଘ ଅଭିଯାନ, କିଏ କାହାକୁ ଦେଖୁଛି ବା କିଏ କାହାକୁ ବଞ୍ଚାଉଛି ?

କିନ୍ତୁ ରାଜକୁମାର ପ୍ରସ୍‌ପେରୋଙ୍କ ମନରେ ଭୟ ଜନ୍ମିଲା ନାହିଁ । ସେ ଗୋଟାଏ ଅପୂର୍ବ ଫନ୍ଦି ବାହାର କଲେ । ଯେତେ-ବେଳେ ଏହି ଅଭୂତପୂର୍ବ ମହାମାରୀରେ ରାଜ୍ୟର ଅଧେ ପ୍ରଜା ନାଶ ହୋଇଗଲେ, ସେ ନିଜ ରାଜସଭାର ସବୁ ଅଭିଜାତ ତରୁଣ ତରୁଣୀ-

ମାନଙ୍କୁ ଆହ୍ୱାନ କଲେ । ତାଙ୍କର ଏହି ସହଚର ଓ ସହଚରୀଙ୍କ ସଂଖ୍ୟା ପ୍ରାୟ ହଜାରେ ହେବ ।

ଏହି ଦଳଟିକୁ ସାଙ୍ଗରେ ଧରି ସେ ସୁଦୂରବର୍ତ୍ତୀ ଏକ ଅଭେଦ୍ୟ ଦୁର୍ଗରେ ପ୍ରବେଶ କଲେ । ଏହି ଦୁର୍ଗ ପ୍ରାସାଦଟି ଅତି ବିରାଟ — ରାଜାଙ୍କର ବିଚିତ୍ର ରୁଚି ଅନୁସାରେ ପ୍ରଚୁର ଅର୍ଥ ବ୍ୟୟରେ ଏହା ନିର୍ମିତ । ତାର ଚାରି ଆଡ଼ରେ ଖୁବ୍ ଉଚ୍ଚ ପ୍ରାଚୀର ଏବଂ ତାର ମଝିରେ ମଝିରେ ଲୌହଦ୍ୱାର । ଆମନ୍ତ୍ରିତ ସଙ୍ଗୀମାନଙ୍କ ସହ କୁମାର ଆଡ଼ମ୍ବରରେ ଦୁର୍ଗ ଭିତରେ ପ୍ରବେଶ କଲା ମାତ୍ରେ ଦୁର୍ଗ ଦ୍ୱାରଟି ସ୍ଥାୟୀ ଭାବରେ ବନ୍ଦ କରି ଦିଆଗଲା । ଏମିତି ବ୍ୟବସ୍ଥା ହେଲା ଯେ ବାହାରର କୌଣସି ହାହାକାର ଯେମିତି ତା ଭିତରେ ପ୍ରବେଶ କରି ନ ପାରେ, ଏବଂ ଭିତରର କୌଣସି ଉଚ୍ଛ୍ୱାସ ଓ ଉନ୍ମାଦନା ମଧ୍ୟ ଯେମିତି ତା ବାହାରକୁ ଯିବାକୁ ବାଟ ନ ପାଏ । ବହୁ କାଳ ବସବାସ କରିବା ପାଇଁ ଦୁର୍ଗ ଭିତରେ ପ୍ରଚୁର ସାମଗ୍ରୀ ସଞ୍ଚିତ ହେଲା । କୌଣସି ଅସୁବିଧା ହେଲା ନାହିଁ କି ବାହାର ସହିତ ଟିକେ ମାତ୍ର ସଂଯୋଗର ପ୍ରୟୋଜନ ମଧ୍ୟ ପଡ଼ିଲା ନାହିଁ । ଏଠାରେ ଯେଉଁ-ମାନେ ଆଶ୍ରୟ ଗ୍ରହଣ କଲେ, ମହାମାରୀର ଲୋଲୁପ ହସ୍ତ ସେମାନଙ୍କୁ ସ୍ପର୍ଶ କରି ପାରିବ ନାହିଁ । ବାହାରେ ରାଜାଙ୍କର ରାଜ୍ୟ । ଅରକ୍ଷିତ ନିରୂପାୟ ପ୍ରଜାମାନଙ୍କର ଯାହା ହେବାର ହେଉ ପଛକେ, ସେଥିପାଇଁ ଦୁଃଖ କରିବା ବା ମଥା ଖେଳାଇବା ନିରର୍ଥକ । ଏଠାରେ ସୁଖ ସାମଗ୍ରୀର ଅଭାବ ନାହିଁ, ଏବଂ ନିଶ୍ଚିନ୍ତ ଆରାମରେ ସମୟ ବିନୋଦନ ଲାଗି କୌଣସି ବ୍ୟବସ୍ଥାର ବି ତ୍ରୁଟି ନାହିଁ । ନୃତ୍ୟଗୀତ ଅଛି, ରଙ୍ଗରସ ଅଛି, ସୁନ୍ଦରୀ ନାରୀ ଅଛନ୍ତି, ଆଉ ଫେନୋଜ୍ଜ୍ୱଳ ସୁରା ବି ଅଛି । ଭିତରେ ଅଛି ପୂର୍ଣ୍ଣ ନିରାପତ୍ତା, ମାତ୍ର ବାହାରେ ଲୋହିତ-ମୃତ୍ୟୁର ନିର୍ମମ ଅଭିଯାନ ।

ସ୍ୱଚ୍ଛନ୍ଦ ନବାବପଦରେ ପାଞ୍ଚ ଛଅ ମାସ କାଳ କଟିଗଲା । ବାହାରେ ରାଜ୍ୟ ଭିତରେ ସେତେବେଳେ ମହାମାରୀ ଚରମ ଆକାର ଧାରଣ କରିଥାଏ — କୁମାର ପ୍ରସ୍‌ପେରୋ ଦୁର୍ଗ ଭିତରେ ଏକ ବିରାଟ ନୃତ୍ୟାନୁଷ୍ଠାନର ଆୟୋଜନ କଲେ । ଅନାବୃତ ମୁଖରେ କେହି ଏହି ନୃତ୍ୟକୁ ଆସିବେ ନାହିଁ । ଆତ୍ମଗୋପନ କରିବା ପାଇଁ ସମସ୍ତଙ୍କୁ ନିଜ ନିଜ ମୁହଁ ଉପରେ ମୁଖା ପିନ୍ଧି ଆସିବାକୁ ହେବ ।

ଅନବଚ୍ଛିନ୍ନ ସୁଖର ସାଗର ଏହି ନୃତ୍ୟ ଉତ୍ସବ — ଲାସ୍ୟ-ବିଳାସର ଚୂଡ଼ାନ୍ତ ଆୟୋଜନ । ଏହି ଅନୁଷ୍ଠାନଟି ଯେଉଁସବୁ କକ୍ଷରେ ସଂଗଠିତ ହେଲା, ପ୍ରଥମେ ତାର ବିବରଣୀ ଦେବା ପ୍ରୟୋଜନ । ସାତୋଟି ବିଭିନ୍ନ କକ୍ଷକୁ ନେଇ ଏହି ରାଜକୀୟ ଉତ୍ସବ-କ୍ଷେତ୍ର । ସାଧାରଣତଃ ରାଜପ୍ରାସାଦରେ ଏହି କକ୍ଷଗୁଡ଼ିକ ଲଗାଲଗି ହୋଇଥାଏ । ମଝି ଦୁଆରଗୁଡ଼ିକ ଫିଟାଇ ଦେଲେ ବିଭିନ୍ନ କକ୍ଷ ବ୍ୟାପୀ ଗୋଟିଏ ସୁଦୀର୍ଘ ଦୃଶ୍ୟପଟ ଯେମିତି ଉନ୍ମୋଚିତ ହୋଇ ଯାଏ । କିନ୍ତୁ ଏଠାରେ ବ୍ୟବସ୍ଥା ଅନ୍ୟ ପ୍ରକାର । ତାହା ହିଁ ରାଜ-କୁମାରଙ୍କ ବିଚିତ୍ର ରୁଚିର ପରିଚ୍ଛାୟକ । ପ୍ରତ୍ୟେକ କକ୍ଷରୁ କେଉଁଟି ହେଲେ ଅନ୍ୟ ଗୋଟିକର ପାଖାପାଖି ନୁହେ । ତେଣୁ ଗୋଟିଏ କକ୍ଷର ଦୃଶ୍ୟ ଅନ୍ୟ ଗୋଟିଏ କକ୍ଷ ଠାରୁ କୌଣସି ମତେ ଆଖିରେ ପଡ଼ିବ ନାହିଁ । କୋଡ଼ିଏ ତିରିଶ ଫୁଟ ପରେ ପରେ ଗୋଟିଏ ଲେଖାଏଁ ତୀକ୍ଷ୍ଣ ବାଙ୍କ । ବାଙ୍କ ବୁଲିଲା କ୍ଷଣି ଗୃହ ସଜ୍ଜାର ଅଭୁତ ପରିବର୍ତ୍ତନ । ଡାହାଣ ଓ ବାମ ପଟରେ ପ୍ରତି କାନ୍ଥର ଠିକ୍ ମଝି ଜାଗାରେ ଗୋଟିଏ ଗୋଟିଏ ସରୁ ଉଚ୍ଚ ଗଥିକ୍ ଝରକା, ଏବଂ ବାହାରେ ଘରର କଡ଼େ କଡ଼େ ସରୁ ବାରନ୍ଦା । ଘରର ବାହାରେ କାନ୍ଥ ଯେମିତି ବାଙ୍କି ବାଙ୍କି ଯାଇଛି, ଝରକା ବି ସେମିତି ବାଙ୍କି ବାଙ୍କି ବୁଲିଛି । ଝରକାଗୁଡ଼ିକରେ କାଚ ଘଷା ହୋଇ ବସିଛି ।

ପ୍ରତି ଘରର ସାଜସଜାର ଯେଉଁଟା ପ୍ରଧାନ ରଙ୍ଗ, ଝରକା କାଚର ରଙ୍ଗଟା ବି ସେଇଆ । ପୂର୍ବ ଦିଗର ଶେଷ ଘରଟାର କାନ୍ଥ ଓ ପରଦାର ରଙ୍ଗ ନୀଳ, ଝରକା କାଚର ରଙ୍ଗ ବି ନୀଳ । ଦ୍ୱିତୀୟ ଘରର ପ୍ରଧାନ ରଙ୍ଗ ଘନ ଲାଲ, ଝରକା କାଚର ରଙ୍ଗ ବି ସେହି ଲାଲ ଟହ ଟହ । ତୃତୀୟ ଘରଟିର ରଙ୍ଗ ସବୁଜ, ଚତୁର୍ଥ ଘରଟିର ରଙ୍ଗ ନାରଙ୍ଗୀ, ପଞ୍ଚମଟିର ସଫା ଧଳା ଓ ଷଷ୍ଠଟିର ବାଇଗଣୀ । ସପ୍ତମ ଘରଟିର ସବୁ କାନ୍ଥ ଦେହରେ ଘନ କଳା ମଖମଲ ପରଦା, ଏବଂ ଚଟାଣରେ କାର୍ପେଟ ବି କଳା । ଏହି ଘରର କାଚଗୁଡ଼ିକର ରଙ୍ଗ ସାଙ୍ଗରେ କେବଳ ଘରର ରଙ୍ଗର ଅମେଳ । କଳା କାନ୍ଥ କଡ଼ରେ କାଚଗୁଡ଼ିକ ରକ୍ତ ପରି ଲାଲ । ପ୍ରତି ଘରେ ନାନା ପ୍ରକାର ସ୍ୱର୍ଣ୍ଣ-ଖଚିତ ଆସବାବ, କିନ୍ତୁ ଗୋଟିଏ ଘରେ ବି ଆଲୋକ ନାହିଁ । ବାହାରେ ବାରନ୍ଦାରେ ଝରକା କଡ଼େ କଡ଼େ ଗୋଟିଏ ଲେଖାଏଁ ଉଚ୍ଚ ପିଲସଜ ଉପରେ ଜଳନ୍ତା ମଶାଲ ଥୁଆ ହୋଇଥାଏ । ସେହି ମଶାଲର ଆଲୁଅ ରଙ୍ଗିନ ଘଷା କାଚ ଦେଇ ଘର ଭିତରେ ପ୍ରବେଶ କରି ଆସବାବ ପତ୍ରଗୁଡ଼ିକ ଉପରେ ବିଚିତ୍ର ଅଦ୍ଭୁତ ଛାୟା ପକାଏ । ପଶ୍ଚିମ ଦିଗର ଶେଷ ଘରଟି ଭିତରେ ରକ୍ତ ବର୍ଣ୍ଣ ଝରକା କାଚ ଭେଦ କରି ରକ୍ତାକ୍ତ ଆଲୋକ-ରଶ୍ମି ପ୍ରବେଶ କରି କାନ୍ଥ ଓ ଚଟାଣର ଘନ କଳା ରଙ୍ଗ ଉପରେ ପ୍ରତିଫଳିତ ହୋଇ ଏପରି ଏକ ବିଭତ୍ସ ଭୟଙ୍କର ରୂପ ସୃଷ୍ଟି କରେ, ଯାହା ଦେଖିଲେ ଅତିଶୟ ସାହସୀ ଲୋକ ବି ଆତଙ୍କିତ ହୋଇଯାଏ । ତେଣୁ କେହି ସହଜରେ ସେହି ଘରେ ପାଦ ପକାଇବାକୁ ଚାହାନ୍ତି ନାହିଁ ।

ଏହି ଘର ଭିତରେ ପ୍ରଧାନ ଜିନିଷଟି ହେଲା କଳା କାଠର ଗୋଟାଏ ବିରାଟ ଘଡ଼ି । ଘଡ଼ିର ପେଣ୍ଡୁଲମଟା ଦୋହଲୁଥାଏ,—ଏହି ଦୋହଲିବା ସାଙ୍ଗରେ ନିରବଚ୍ଛିନ୍ନ ପୌନଃପୁନିକ ଭାବରେ

ଗୋଟାଏ ଧ୍ୱନି ଧାତବ ଶବ୍ଦ ଶୁଭେ । ମିନିଟ କଣ୍ଟା ପୂର୍ଣ୍ଣ ପରିକ୍ରମା ଶେଷ କରିବା ସଙ୍ଗେ ସଙ୍ଗେ ଘଣ୍ଟା ବାଜେ, ଘଡ଼ିର ଧାତବ ଅନ୍ତରରୁ ସଶବ୍ଦ ଘଣ୍ଟା ଧ୍ୱନି ବାହାରି ଆସେ, ଏବଂ ସେହି ଧ୍ୱନି ଅଦ୍ଭୁତ ସ୍ୱରରେ କାନରେ ଆସି ପ୍ରବେଶ କରେ । ଉତ୍ସବ ଦିନରେ ଯେତେ ଥର ଘଡ଼ିର ଘଣ୍ଟା ବାଜିଲା, ସଙ୍ଗୀତକାରମାନେ ହଠାତ୍ ଚମକି ପଡ଼ି ବାଜଣା ବନ୍ଦ କରି ଦେଲେ । ସାମୟିକ ଭାବରେ ନାଚ ବନ୍ଦ ହୋଇଗଲା, ଏବଂ ଆନନ୍ଦୋଜ୍ଜ୍ୱଳ ଅତିଥିମାନଙ୍କର ବକ୍ଷ ଯେମିତି କୌଣସି ଅଜଣା ଅସ୍ୱସ୍ତିରେ ଶିହରିତ ହୋଇ ପଡ଼ିଲା । ଯାହାର ପ୍ରାଣ ସ୍ଫୁର୍ତ୍ତିରେ ସବୁ ଠାରୁ ବେଶୀ ଫାଟି ପଡ଼ୁଥାଏ, ସେ ବି ହଠାତ୍ ସ୍ତବ୍ଧ ହୋଇ ଠିଆ ହେଲା । ଏକ ଅବୋଧ ଦୁଶ୍ଚିନ୍ତାରେ ସେ ଯେମିତି ତା କପାଳରେ ହାତ ବୁଲାଇଲା । ଯେତେବେଳ ଯାଏ ଘଡ଼ି ବାଜେ, ସେତିକି ସମୟ ପାଇଁ ପ୍ରତି ଥର ନୃତ୍ୟ ଉତ୍ସବରେ କେମିତି ଗୋଟାଏ ସନ୍ତ୍ରସ୍ତ ସ୍ତବ୍ଧତା ଖେଳିଯାଏ,— ଘଡ଼ିର ବାଜଣାର ଶେଷ ପ୍ରତିଧ୍ୱନି ମିଳାଇ ଯିବା ପରେ ପୁଣି ହାଲୁକା ହସର ଶବ୍ଦ ପ୍ରତି କକ୍ଷରେ ଫୁଟି ଉଠେ । ପ୍ରତି ଥର ଘଡ଼ିର ଢଂ ଢଂ ଶବ୍ଦ ବନ୍ଦ ହେବା ପରେ ଯନ୍ତ୍ରଶିଳ୍ପୀମାନେ ପରସ୍ପରର ମୁହଁକୁ ଚାହାଁନ୍ତି, ନିଜର ମାନସିକ ଦୁର୍ବଳତା ପାଇଁ ମୁରୁକି ମୁରୁକି ହସନ୍ତି ଏବଂ ମନେ ମନେ ପ୍ରତିଜ୍ଞା କରନ୍ତି ଯେ ଭବିଷ୍ୟତରେ ପୁଣି ଘଡ଼ିର ସଙ୍କେତ ଶୁଣିଲେ ସୁଦ୍ଧା କୌଣସି ମତେ ବାଜଣା ବନ୍ଦ କରିବେ ନାହିଁ । ଷାଠିଏ ମିନିଟ ପରେ ଯେତେବେଳେ ଘଡ଼ି ପୁଣି ତାର ନିଜସ୍ୱ ବିଚିତ୍ର ଧ୍ୱନିରେ ଘୋଷଣା କରିଛି ଯେ କାଳର ଅତଳ ଗର୍ଭରେ ତିନି ହଜାର ଛ'ଷଠି ସେକେଣ୍ଡ ଚାଲିଗଲା, ପୁଣି ହଠାତ୍ ସ୍ୱର ବନ୍ଦ ହୋଇ ଯାଇଛି ଏବଂ ନାଚରେ ବିରତି ଆସିଛି ।

ଏମିତି ବାଧା ସତ୍ତ୍ୱେ ବି ଉତ୍ସବ ଯେ ନୃତ୍ୟରେ, ସଙ୍ଗୀତରେ,

ଆନନ୍ଦରେ ଓ ଉଚ୍ଛ୍ୱାସରେ ଭରପୂର ହୋଇ ଉଠିଥିଲା, ତାହା କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଜକୁମାରଙ୍କ ରୁଚି ଅଦ୍ଭୁତ ପ୍ରକାରର । ନିସ୍ ଫେସନକୁ ଅବହେଳା କରୁଥିଲେ, କାରଣ ତାଙ୍କ୍ୱାରା ରୁଚିର ସୃଜନ ନୈପୁଣ୍ୟକୁ ହେଳାରେ ଅତିକ୍ରମ କରାଯାଏ । ଉତ୍ସବ ସଜ୍ଜା ପଛରେ ତାଙ୍କର ଯେଉଁ ମନ କାମ କରୁଥିଲା ତାହା ଅସ୍ୱାଭାବିକ ଥିଲା । ଅପ୍ରକୃତିସ୍ଥ ବୋଲି ବି କୁହାଯାଇ ପାରେ ।

ଏହି ଉତ୍ସବରେ ଖାଲି ନୃତ୍ୟ-ଗୃହର ସାଜସଜ୍ଜା ନୁହେଁ, ପ୍ରତ୍ୟେକ ଆମନ୍ତ୍ରିତ ନରନାରୀଙ୍କ ପୋଷାକର ନିର୍ଦ୍ଦେଶ ସୁଦ୍ଧା ସେ ଦେଉଥିଲେ । ସେହି ସବୁ ବିଚିତ୍ର ଛଦ୍ମ ବେଶ ପରିହିତ ମୁଖାଧାରୀ କିମ୍ଭୂତ କିମାକାର ମୂର୍ତ୍ତିସବୁ ! ପୋଷାକର ରଙ୍ଗ ଓ ମୁଖାର ରଙ୍ଗ ମିଳି ଯେଉଁ ବିଚିତ୍ର ବର୍ଣ୍ଣାଢ଼୍ୟ ସୃଷ୍ଟି କରିଥିଲା, ତାହା ସେହି କୁମାର-ଙ୍କର କଳ୍ପନାରେ ହିଁ ସମ୍ଭବ । ପୃଥିବୀର କୌଣସି ଉତ୍ସବରେ ଏତେ ଅଦ୍ଭୁତର ସମନ୍ୱୟ କେବେ କେଉଁଠି ଦେଖା ଯାଇ ନାହିଁ । ଦେଖିଲେ ଖାଲି ଯେ ବିସ୍ମୟ ଜାତ ହୁଏ ତାହା ନୁହେଁ, କେବେ କେବେ ବିତୃଷ୍ଣା ଆସେ, କେବେ ବି କେମିତି ଗୋଟାଏ ଭୟ ମନରେ ପଶିଯାଏ । ସେହି ସବୁ ବିଭିନ୍ନ ଛଦ୍ମ ବେଶୀ ମୂର୍ତ୍ତିର ଦଳ—ସେମାନେ ମଣିଷ ନୁହନ୍ତି, ସେମାନେ ଯେମିତି ଜୀବନ୍ତ ଚଳନ୍ତା ସ୍ୱପ୍ନ, ଗୋଟିଏ ଘରୁ ଅନ୍ୟ ଘରକୁ ଗୋଟିଏ ରଙ୍ଗରୁ ଅନ୍ୟ ରଙ୍ଗର ଲୀଳାରେ ବିଚିତ୍ର ଅଙ୍ଗଭଙ୍ଗୀରେ ହଲି ଦୋହଲି ନାଚି ନାଚି ବୁଲୁଛନ୍ତି । ନୃତ୍ୟ ପଛରେ ଯେଉଁ ସମବେତ ଯନ୍ତ୍ର ସଙ୍ଗୀତ ବାଜୁଛି, ତାର ସ୍ୱରରେ ଯେମିତି ଆଦିମ ବନ୍ୟତା । ପ୍ରତ୍ୟେକ ଘଣ୍ଟାର ଅବସାନ ପରେ କଳା ମଖମଲ କନାରେ ଆବୃତ ଘଡ଼ିଟା ଢଂ ଢଂ ବାଜି ଉଠୁଛି । ମୁହୂର୍ତ୍ତକ ଲାଗି ଗୀତ ବନ୍ଦ ହୋଇ ଯାଉଛି, ନାଚ ବନ୍ଦ ହୋଇ ଯାଉଛି । ଖାଲି ଘଡ଼ିଟାର ଢଂ ଢଂ ଆବାଜ ଛଡ଼ା ଆଉ କିଛି ଶବ୍ଦ ଶୁଭୁ ନାହିଁ ।

ଘଡ଼ିର ଶେଷ ଘଣ୍ଟାଟାର ପ୍ରତିଧ୍ୱନି ମିଳାଇଯିବା ସଙ୍ଗେ ସଙ୍ଗେ ପୁଣି ଆରମ୍ଭ ହେଉଛି ହସ, ପୁଣି ନାଚ ଓ ପୁଣି ଗୀତ । ମୁହୂର୍ତ୍ତକ ପାଇଁ ସ୍ୱପ୍ନର ପ୍ରେତ ମୂର୍ତ୍ତିଗୁଡ଼ିକ ସ୍ତମ୍ଭିତ ହୋଇ ଛିଡ଼ା ହୋଇଥିଲେ । ପୁଣି ସେମାନଙ୍କର ରଙ୍ଗ ବେରଙ୍ଗ ସଞ୍ଚରଣ ଗୋଟିଏ ଘରୁ ଅନ୍ୟ ଘରକୁ ନୃତ୍ୟର ଛନ୍ଦରେ ଆରମ୍ଭ ହୋଇଗଲା । କିନ୍ତୁ ପୂର୍ବ ଦିଗରେ ସେହି ଶେଷ ଘରଟିରେ—ଯେଉଁ ଘରଟିର ରଙ୍ଗ କଳା ଓ ଲାଲ କାଚ ବାଟେ ଯେଉଁ ଘରେ ରକ୍ତ ଆଲୋକର ଅଭିସାର ହୋଇଛି, ଯେଉଁ ଘରେ ଠିଆ ହେଲେ ସେହି କଳା ଘଡ଼ିର ଟିକ୍ ଟିକ୍ ଶବ୍ଦ ଛାତି ଭିତରେ ଯେମିତି ବାଜିବ । ସେଥିପାଇଁ କେହି ସାହସ କରି ସେହି ଘର ଭିତରକୁ ଗୋଡ଼ ବଢ଼ାନ୍ତି ନାହିଁ । ରାତି ଯେତେ ଗଭୀର ହେଉଛି, ସମସ୍ତେ ଯେତେ ଦୂର ସମ୍ଭବ କୌଣସି ଅଜଣା ଆତଙ୍କରେ ଏହି ଶେଷ ସୀମାନାର କଳା ପ୍ରକୋଷ୍ଠ ଠାରୁ ସେତେ ଦୂରରେ ରହୁଛନ୍ତି ।

ଅନ୍ୟ ଘର ଭିତରେ ସେତେବେଳେ ନୃତ୍ୟ ଛନ୍ଦ ଉଦ୍ଦାମ ହୋଇ ଉଠିଛି । ପ୍ରତ୍ୟେକଙ୍କ ହୃତ୍‌ପିଣ୍ଡ ଆଗ୍ରହରେ ପରିଶ୍ରମରେ କମ୍ପି ଉଠୁଛି । ସଙ୍ଗୀତରେ ଲାଗିଛି ଉନ୍ମତ୍ତ ଉନ୍ମାଦନା । ସନ୍ଧ୍ୟା ପରଠୁଁ ଅନେକ ପ୍ରହର ବିତିଛି । ରାତି ଗଭୀର ହେଲା । ଏହି ସମୟରେ କଳା ପ୍ରକୋଷ୍ଠର ଘଡ଼ିରେ ମଧ୍ୟ ରାତ୍ରିର ସଙ୍କେତ ବାଜିବାକୁ ଲାଗିଲା—ରାତି ବାରଟାର ବାଜଣା । ଅନ୍ୟ ବାଜଣା ସଙ୍ଗେ ସଙ୍ଗେ ସ୍ତବ୍‌ଧ ହୋଇଗଲା—ନୃତ୍ୟ ରତ ନରନାରୀଗଣ ସ୍ତମ୍ଭିତ ହୋଇ ଠିଆ ହେଲେ । ଗୋଟାକ ପରେ ଗୋଟାଏ ଘଣ୍ଟାର ଶବ୍ଦ ଆସି ଏକବାରେ କାନର ମର୍ମରେ ପ୍ରବେଶ କରିବାକୁ ଲାଗିଲା, କଣ ଗୋଟାଏ ଅଜଣା ଆଶଙ୍କାରେ ଛାତି ଧଡ଼ପଡ଼ ହେବାକୁ ଲାଗିଲା । ଏତେ ବେଳ ଯାଏ କେହି ଲକ୍ଷ୍ୟ କରି ନାହାନ୍ତି—ଘଣ୍ଟା ଧ୍ୱନି ଶେଷ

ହେବା ପୂର୍ବରୁ ଅନେକେ ଉପଲବ୍ଧି କଲେ ଜଣେ ନୂଆ ମୁଖା-ଧାରୀର ଉପସ୍ଥିତି, ଯାହାକୁ କେହି କେବେ ଆଗରୁ ଦେଖି ନାହାନ୍ତି । ଜଣେ ଅନ୍ୟର ଦୃଷ୍ଟି ଆକର୍ଷଣ କଲା, ଜଣେ ଅନ୍ୟର କାନରେ ଫୁସ୍‌ଫୁସ୍ କରି କହିବାକୁ ଲାଗିଲା — କ୍ରମେ ଏହି ନବାଗତ ଆଗନ୍ତୁକର ଉପସ୍ଥିତିରେ ପ୍ରତ୍ୟେକ ଅତିଥି ସଜାଗ ହୋଇ ଉଠିଲେ —ଦୁର୍ଭାବନାରେ, ବିତୃଷ୍ଣାରେ, ମର୍ମାନ୍ତିକ ଆତଙ୍କରେ ସେମାନେ ସଜାଗ ହେଲେ ।

ସମଗ୍ର ଉତ୍ସବରେ ସମସ୍ତଙ୍କର ଛଦ୍ମ ବେଶ, ସମସ୍ତଙ୍କ ମୁଖରେ ମୁଖା । ଏତେ ଛଦ୍ମ ବେଶର ମଝିରେ ଏମିତି କେଉଁ ବିଚିତ୍ର ଛଦ୍ମ ବେଶ, ଯାହା ଆଜି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ପାରିବ ? ଅନ୍ୟସବୁ ମୁଖାଧାରୀଙ୍କ ମନରେ ଯେ ଆତଙ୍କ ଅନୁଭୂତି ଜଗାଇ ପାରେ, ସେହି ମୁଖାଟା କେମିତିକା ? ଯାହା ପ୍ରକୃତରେ ତାକୁ ଛଦ୍ମ ପୋଷାକ ପଛରେ ଲୁଚାଇ ରଖାଯାଏ ଏବଂ କଳ୍ପିତ ରୂପକୁ ପ୍ରକାଶ କରାଯାଏ । କିନ୍ତୁ କଳ୍ପନାର ଗୋଟାଏ ସୀମା ଅଛି, ଶାଳୀନତାର ସୀମା —ଯାହାକୁ ଅତିକ୍ରମ କରିବା ଅନ୍ୟାୟ । ଅଭିନୟ ଭିତରେ ବିଦ୍ରୂପର ପ୍ରକାଶ ତ ସ୍ୱାଭାବିକ; କିନ୍ତୁ ଏମିତି ବିଷୟ ଅଛି ଯେଉଁଥି ପାଇଁ ଚରମ ହୃଦୟହୀନ ଲୋକ ବି ବିଦ୍ରୂପ କରିବାକୁ ଡରିଯାଏ । ଉତ୍ସବର ପ୍ରତ୍ୟେକ ନରନାରୀଙ୍କର ମନେ ହେଲା, ଆଗନ୍ତୁକର ପୋଷାକରେ ଓ ମୁଖାରେ ବି କଳ୍ପନାର ଶାଳୀନତାର ଶେଷ ସୀମା ଲଙ୍ଘନ କରି ଯାଇଛି, ମଣିଷର ମୌଳିକ ଅସ୍ତିତ୍ୱ ବୋଧକୁ ବିଦ୍ରୂପ କରି ଯାଇଛି—ଅକଳ୍ପନୀୟ ଭୟଙ୍କରତମ ବିଭତ୍ସତା ମୂର୍ତ୍ତ ହୋଇଛି । ଆଗନ୍ତୁକର ଦୀର୍ଘ ବିରାଟ ଚେହେରା— ମଥାରୁ ପାଦ ଯାଏ ସମସ୍ତ ଶରୀର କବରସ୍ଥ ମୃତ ଦେହର ଶ୍ୱେତ ଆସ୍ତରଣରେ ଆବୃତ । ରକ୍ତ-ହୀନ ସ୍ଥିର ନେତ୍ର ଶୁଷ୍କ ମୃତ ଦେହର ଗୋଟାଏ ମୁଖ ଦୁଇ କାନ୍ଧର

ମଝିରେ ଶକ୍ତ ହୋଇ ବସିଛି—ମୁଖା ବୋଲି ମନେ ହୁଏ ନାହିଁ । କପାଳରେ ରକ୍ତ ରେଖା, ମୃତ ଓଷ୍ଠ ପୁଟରେ ରକ୍ତ ରେଖା—ଶ୍ୱେତ ପୋଷାକରେ ଏଠାରେ ସେଠାରେ ଛଟକା ରକ୍ତର ଦାଗ । ମୃତର ଛଦ୍ମ ବେଶ ନୁହେଁ—ଏ ଛଦ୍ମ ବେଶ ଲୋହିତ ମୃତ୍ୟୁର ।

ଏହି ବିଭତ୍ସ ଛଦ୍ମବେଶୀ ଧୀରେ ଧୀରେ ସୁଦୀର୍ଘ ପଦ କ୍ଷେପରେ ନୃତ୍ୟରତ ନରନାରୀଙ୍କ ମଝିରେ ବୁଲି ବୁଲି ବୁଲୁଥିଲା । ରାଜକୁମାର ପ୍ରସ୍‌ପେରୋଙ୍କ ଦୃଷ୍ଟି ଯେତେବେଳେ ତା ଉପରେ ପଡ଼ିଲା, ହଠାତ୍ ଆତଙ୍କରେ ତାଙ୍କର ସ୍ଥୁଳ ଶରୀର କମ୍ପି ଉଠିଲା ।

ପର ମୁହୂର୍ତ୍ତରେ ସେ ନିଜକୁ ସଂଯତ କରି ପାର୍ଶ୍ୱବର୍ତ୍ତୀ ପରିଷଦର କାନରେ ରୁଦ୍ଧ କଣ୍ଠରେ କହିଲେ—କିଏ ସେ ? କାହାର ଏମିତି ସାହସ ? ଜୀବନ-ମୃତ୍ୟୁକୁ ନେଇ ଏମିତି ଉତ୍କଟ ବିଦ୍ରୂପ କରିବାକୁ କାହାର ଏତେ ବଡ଼ ସ୍ପର୍ଦ୍ଧା ! ଯାଅ, ଧର ତାକୁ, ଖୋଲି ପକାଅ ତାର ମୁଖା । ତାକୁ ବାନ୍ଧି ପକାଅ । କାଲି ସକାଳେ ତାକୁ ଫାଶୀ ଦେବାକୁ ହେବ ।

ପୂର୍ବ ଦିଗର ନୀଳ କକ୍ଷରେ ଠିଆ ହୋଇ ରାଜକୁମାର ଏହି ଆଦେଶ ଘୋଷଣା କଲେ । ସେତେବେଳକୁ ଘଡ଼ିର ଘଣ୍ଟା ଶେଷ ହୋଇ ଯାଇଛି । ତା ସଙ୍ଗରେ ନୃତ୍ୟ ଗୀତ ମଧ୍ୟ ସ୍ତବ୍ଧ ହୋଇଛି । ସେହି ସମ୍ପୂର୍ଣ୍ଣ ସ୍ତବ୍ଧତା ଭେଦ କରି ରାଜକୁମାରଙ୍କ ବଳିଷ୍ଠ କଣ୍ଠର ନିର୍ଦ୍ଦେଶ ଗୋଟାକ ପରେ ଗୋଟିଏ ସାତୋଟି କକ୍ଷରେ ବ୍ୟାପି ଗଲା । ସଙ୍ଗେ ସଙ୍ଗେ ମୃତ୍ୟୁ ବେଶୀ ଆଗନ୍ତୁକ ଏକ ଲମ୍ଫମାରେ ମୁଖ ଫେରାଇ ନେଇ ବଳିଷ୍ଠ ପାଦ ପକାଇ ରାଜକୁମାରଙ୍କ ଦେହରେ ଘଷି ହୋଇ ଆଗକୁ ଚାଲିଗଲା । ରାଜ-ପାରିଷଦ୍‌ମାନଙ୍କର ପ୍ରତ୍ୟେ-କଙ୍କର ସ୍ଥୁଳ ଶରୀରରେ କମ୍ପି ଉଠିଲା । କାହାରି ହାତ ଉଠିଲା ନାହିଁ । ସମସ୍ତେ ଶିହରି ଉଠି କମ୍ପିତ ପଦରେ ପଛେଇ ଯାଇ

ଘରର କାନ୍ଥକୁ ଲଗି ଠିଆ ହେଲେ । ମୃତ୍ୟୁ-ଛଦ୍ମବେଶୀ ଗମ୍ଭୀର ଭାବରେ ଧୀର ନିର୍ଦ୍ଦିଷ୍ଟ ପଦକ୍ଷେପରେ ଆଗେଇ ଗଲା । ସେ ରାଜକୁମାରଙ୍କ ଦେହରେ ଘଷି ହୋଇ ଅଗ୍ରସର ହେଲା । କିଏ ତା ଆଗରେ ଠିଆ ହେବ ? କିଏ ତାକୁ ବାଧା ଦେବ ? କାହାର ସାହସ ତାର ଗତି ରୋଧ କରିବ ? ସେ ନୀଳ ଘର ପାର ହୋଇ ନାଲି ଘରକୁ ଗଲା, ନାଲି ଘରୁ ସବୁଜ ଘରକୁ, ସବୁଜରୁ ନାରଙ୍ଗୀକୁ, ନାରଙ୍ଗୀରୁ ଧଳାକୁ, ଧଳାରୁ ବାଇଗଣୀକୁ—ଘର ପରେ ଘର ଅତିକ୍ରମ କରି କରି ସେ ଗଲା । ପଳାୟନ ନୁହେଁ,—ସେ ଉଦ୍ଧତ ପ୍ରେତର ଶିର ଟେକି ଗଲା । କାହାର ସାଧ୍ୟ ତାର ସାମନାରେ ଠିଆ ହେବ ? ରାଜକୁମାର ସ୍ଥାଣୁ ଭଳି ଠିଆ ହୋଇଥିଲେ,—ହଠାତ୍ ତାଙ୍କର ଚେତନା ଫେରି ଆସିଲା । ମୁହୂର୍ତ୍ତକର କାପୁରୁଷତାକୁ ପରିହାର କରି ପାରିଷଦବର୍ଗଙ୍କ ଆତଙ୍କିତ ଦୃଷ୍ଟି ଭାବରେ କ୍ରୋଧରେ ଆକୁଳ ହୋଇ ସେ ଆଗନ୍ତୁକକୁ ଧରିବା ପାଇଁ ଦୌଡ଼ିଗଲେ । ସେ ଏକା ଦୌଡ଼ିଲେ । ଉତ୍ସବର ସହସ୍ର ନରନାରୀ ସ୍ତବ୍ଧ ହୋଇ ଯେ ଯେଉଁଠି ଥିଲେ, ସେଠାରେ ସେମିତି ଅବସ୍ଥାରେ ଠିଆ ହୋଇ ରହିଲେ । ରାଜକୁମାର ପ୍ରସ୍ଥପରେ ଦୌଡ଼ି ଯାଉଛନ୍ତି । ତାଙ୍କ ହାତରେ ଗୋଟିଏ ଉନ୍ମୁକ୍ତ ଛୁରିକା,—ସେହି ଦୁଃସହ ଆଗନ୍ତୁକକୁ ସେ ଶାସ୍ତି ଦେବେ । ନିଜ ହାତରେ ତାକୁ ଚରମ ଶାସ୍ତି ଦେବେ ।

ସେତେବେଳକୁ ଆଗନ୍ତୁକ ମଖମଲ କନାରେ ଆବୃତ କଳା ପ୍ରକୋଷ୍ଠର ଦୁଆର ମୁହଁରେ ପହଞ୍ଚି ଗଲାଣି । ହଠାତ୍ ସେ ପଛକୁ ଫେରି ପଡ଼ିଲା, କୁମାରଙ୍କ ମୁହାଁମୁହିଁ ହୋଇ ସ୍ଥିର ଭାବରେ ଠିଆ ହେଲା ଏବଂ କୁମାରଙ୍କ ଉପରେ ଦୃଷ୍ଟି ପକାଇଲା । ହଠାତ୍ ଗୋଟାଏ କରୁଣ ଆର୍ତ୍ତନାଦ ଶୁଭିଲା । ଦକ୍ଷିଣ ହାତରୁ ଉଦ୍ୟତ ଛୁରିକାଟି ଝଣ

ଝଣ ଶବ୍ଦ କରି ଭୂଇଁରେ ଖସି ପଡ଼ିଲା । ଏକ ମୁହୂର୍ତ୍ତ ପରେ କୁମାର ପ୍ରସ୍ପେରୋଙ୍କ ପ୍ରାଣହୀନ ଦେହଟି ବି ଆଗନ୍ତୁକର ପାଦ ନିକଟରେ ଟଳି ପଡ଼ିଲା । ନିରୁପାୟ ହତାଶାର ଶେଷ ସାହସ ଟିକକ ସଞ୍ଚୟ କରି ଠିକ୍ ସେତେବେଳେ ରାଜପାରିଷଦମାନେ ପ୍ରକୋଷ୍ଠରେ ପ୍ରବେଶ କଲେ ଏବଂ ମୃତ୍ୟୁ-ଆଗନ୍ତୁକ ଉପରେ କ୍ରୁଦ୍ଧ ପଡ଼ିଲେ । ସେମାନେ କାହାକୁ ଧରି ପାରିଲେ ନାହିଁ । ସେହି ଦୀର୍ଘ ଭୟଙ୍କର ମୂର୍ତ୍ତି କେଉଁଠି ନାହିଁ । ହାତର ମୁଠାରେ ସେମାନେ ଖାଲି ପାଇଲେ କବରର ଧଳା ଲମ୍ବା ଲୁଗା ଖଣ୍ଡିକ ଓ ଗୋଟାଏ ନିଷ୍ପ୍ରାଣ ମୁଖା । ସେ କେଉଁଠି ନାହିଁ । ଯେ ଏକ ମୁହୂର୍ତ୍ତରେ ରାଜକୁମାରଙ୍କ ନୟନରେ ବିଦ୍ୟୁତ୍-ଦୃଷ୍ଟି ହାଣି ସ୍ପର୍ଶ ମାତ୍ରକେ ତାଙ୍କୁ ହତ୍ୟା କରିଛି, ସେହି ବିଚିତ୍ର ଆତତାୟୀ କେଉଁଠି ନାହିଁ ।

ଅଛି ନିଶ୍ଚୟ । ଲୋହିତ ମୃତ୍ୟୁର ଅଶରୀରୀ ଉପସ୍ଥିତି ଅଛି । ଗଭୀର ରାତିରେ କେଉଁ ଅଦୃଶ୍ୟ ପଥରେ ସେ ଜଣେ ଦୁରନ୍ତ ତସ୍କର ଭଳି ଆସିଛି । ଆଉ ରକ୍ଷା ନାହିଁ । ସହସ୍ର ଉତ୍ସବକାରୀର ଦଳ, ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଜଣ ଜଣ ହୋଇ ଧର୍ମଶାଳାର ପ୍ରକୋଷ୍ଠରେ ଟଳି ପଡ଼ିବାକୁ ଲାଗିଲେ, ବିଭତ୍ସ ଭଙ୍ଗୀରେ ମରିବାକୁ ଲାଗିଲେ, ବିଚିତ୍ର ରଙ୍ଗୀନ ହର୍ମ୍ୟ ତଳ ରକ୍ତରେ ଲାଲ ହୋଇ ଯିବାକୁ ଲାଗିଲା । କଳା ଘଡ଼ିଟାର ଆୟୁ ଖତମ ହୋଇଗଲା ଏବଂ ତାର ନିରବଚ୍ଛିନ୍ନ ଟିକ୍ ଟିକ୍ ଆବାଜ ବନ୍ଦ ହୋଇଗଲା । ଗୋଟି ଗୋଟି ହୋଇ ବାତାୟନ-ପ୍ରାନ୍ତର ଆଲୋକ-ଶିଖାଗୁଡ଼ିକ ନିର୍ବାପିତ ହୋଇଗଲା ।

ଗଭୀର ଅନ୍ଧକାର । ସହସ୍ର ମୃତ ଦେହର ନିସ୍ତବ୍ଧ ଶ୍ମଶାନ । ଲୋହିତ ମୃତ୍ୟୁର ଅଭିଯାନ ସଂପୂର୍ଣ୍ଣ ହେଲା ।

— ଏଡ଼ଗାର୍ ଆଲାନ ପୋ

# ଘୋଡ଼ା ଚୋର

— ଏକ —

ଲର୍ଡ଼ ମୋସଲେଙ୍କ ରଙ୍ଗୀନ ଘୋଡ଼ାଟି ମୁଁ ଚୋରି କରି ନାହିଁ । ମୋତେ ଚୋର ପ୍ରତିପନ୍ନ କରିବା ପାଇଁ ଚାରିଆଡ଼େ ସମସ୍ତେ ମିଳି ମିଶି ଲାଗି ପଡ଼ିଛନ୍ତି । କିନ୍ତୁ ମୋତେ ଯେ ପ୍ରକୃତ ଜାଣେ, ସେ ନିଶ୍ଚୟ କହିବ ଯେ, ଜୀବନରେ ମୁଁ ଆଜି କେବେ ହେଲେ ଏମିତି ବିପଦରେ ପଡ଼ି ନାହିଁ । ମିଷ୍ଟାର ଜନ୍ ଟାର୍ଣ୍ଣାର ମୋ ବିଷୟରେ ସବୁ କଥା ଜାଣନ୍ତି । ତାଙ୍କ ନିକଟରେ ମୁଁ କେତେ ବର୍ଷ ହେଲା କାମ କରୁଛି, ତାହା ବି ମୋର ଠିକ୍ ମନେ ନାହିଁ । ଯେତେବେଳେ ଛୋଟ ପିଲା ଥିଲି, ସେତେବେଳୁ ତ ମୁଁ ତାଙ୍କ କତିରେ ରହିଛି । ମିଷ୍ଟର ଜନ୍ ଜାଣନ୍ତି, ମୁଁ କଦାପି ଘୋଡ଼ା ଚୋରି କରିବି ନାହିଁ । ସେଇଥିପାଇଁ ମୁଁ ଜୋର ଦେଇ କହୁଛି, ଲର୍ଡ଼ ମୋସଲେଙ୍କ ଘୋଡ଼ା ମୁଁ ଚୋରି କରି ନାହିଁ । କିନ୍ତୁ ମୋସଲେ ମୋ କଥାର ପ୍ରତିବାଦ କରି ଦୃଢ଼ ଭାବରେ କହୁଛନ୍ତି, ହଁ, ମୁଁ ତାଙ୍କ ଘୋଡ଼ା ଚୋରି କରିଛି । ତାଙ୍କ କଥା ଅବଶ୍ୟ ସତ ନୁହେଁ । ଘୋଡ଼ା-ଚୋରର ପ୍ରତି-ଫଳ ଦାନ କରିବା ପାଇଁ ବୟସ ମୋତେ ବାଳକରୁ ଆଜି ଯୁବକରେ ପରିଣତ କରି ନାହିଁ ।

ପନ୍ଦର ଦିନ ରାତ୍ରରେ ମିଷ୍ଟର ଜନ୍ ତାଙ୍କ ଘୋଡ଼ା 'ବେଟସି' ଉପରେ ଚଢ଼ିବା ପାଇଁ ମୋତେ କହିଥିଲେ । ମୁଁ ତାଙ୍କୁ ଜଣାଇ ଥିଲି, ଟିକିଏ ବ୍ୟକ୍ତିଗତ କାରଣରୁ ମୋତେ ବାହାରକୁ ଯିବାକୁ ହେବ । ଗତ ଦୁଇ ବର୍ଷ ହେଲା ପ୍ରତି ରବିବାର ରାତ୍ରରେ ମୁଁ ଯେମିତି 'ବେଟସି' ଉପରେ ଚଢ଼ି ଆସୁଛି, ପନ୍ଦର ଦିନ ରାତ୍ରରେ ସେହି ଭଳି ବ୍ୟକ୍ତିଗତ କାରଣ ମୋର ହୋଇଥିଲା । ମିଷ୍ଟର ଜନ୍ ମୋତେ କହିଥିଲେ, ମୁଁ ଯେମିତି ଟେକ୍ସାସ୍ ଜିନ୍ ଲଗାଏ । କିନ୍ତୁ ମୁଁ କହିଥିଲି, ନା, ନା, ବିନା ଜିନ୍‌ରେ ମୁଁ ଭଲ ଭାବରେ ଚଢ଼ି ଯାଇ ପାରିବି । ଅବଶ୍ୟ ବିନୟ ସହକାରେ ମୁଁ ଏ କଥାଟି କହି ନ ଥିଲି । ବିନା ଜିନ୍‌ରେ, ଅର୍ଥାତ୍ ଖାଲି ଲଗାମରେ ଘୋଡ଼ା ଚଢ଼ିବାକୁ ମୋତେ ଭାରି ଭଲ ଲାଗେ । ସତ କଥା କହିବାକୁ ଗଲେ, ବିନା ଜିନ୍‌ରେ ଘୋଡ଼ା ଚଢ଼ିବା ଖୁବ୍ ମଜା । ଏହା ଛଡ଼ା ବି ଆଉ ଗୋଟିଏ କଥା ଅଛି—ମୁଁ ଯେଉଁ କାମରେ ଯାଉଥିଲି ସେଥିରେ ଗୋଟିଏ ଝାଞ୍-ଝାଞ୍ ଶବ୍ଦବାଲା ଜିନ୍‌ର ଆବିର୍ଭାବ ନ ହେବା ହିଁ ଭଲ । ମୁଁ ଅବଶ୍ୟ କୌଣସି ଖରାପ ମତଲବରେ ଯାଇ ନ ଥିଲି । ମୁଁ ଗୋଟିଏ ଅତି ବ୍ୟକ୍ତିଗତ କାମରେ ଯାଇଥିଲି । ସେଥିରେ କାହାର ମଥା ଖେଳାଇବା ନିଷ୍ପ୍ରୟୋଜନ । ପ୍ରତି ରବିବାର ରାତ୍ରରେ ମୁଁ ଜିନ୍ ଲଗାଇ ସେଠାକୁ ଯାଏ । କିନ୍ତୁ ପନ୍ଦର ଦିନ ରାତ୍ର ଥିଲା ମଙ୍ଗଳବାର । ତେଣୁ ମୋର ବିନା ଜିନ୍‌ରେ ଅଶ୍ୱାରୋହଣର ପ୍ରୟୋଜନ ହୋଇଥିଲା ।

ମିଷ୍ଟର ଜନ୍ ଠାଣ୍ଡାରଙ୍କୁ ଯାଇ ପଚାର । ସେ କହିବେ, କୌଣସି ପ୍ରକାର ଗୋଳମାଳ ଭିଆଇବା ମୋର ଅଭ୍ୟାସ ନୁହେଁ । ମୋର ଯାହା କିଛି ଅଛି, ସବୁ ବିଷୟ ତାଙ୍କୁ ଭଲ ଭାବରେ ଜଣା । ସେ ନିଶ୍ଚୟ କହିବେ, ତାଙ୍କୁ କିମ୍ବା ଅନ୍ୟ କାହାରିକୁ ମୁଁ କେବେ ହେଲେ ଜଳାଇ ନାହିଁ ।

ସେହି ଦିନ ରାତିରେ ଖାଇବା-ପିଇବା ସରିଲାରୁ ମୁଁ ଯେତେବେଳେ 'ବେଟସି'କୁ ଘୋଡ଼ାଶାଳରୁ ନେଇ ଆସିଲି, ସେତେବେଳେ ମିଷ୍ଟାର ଜନ୍ ଗୋଟିଏ ଟେକ୍ସାସ୍ ଜିନ୍ ଲଗାଇବା ପାଇଁ ମୋତେ କହିଥିଲେ । ମୁଁ ରାଜି ହୋଇ ନ ଥିଲି । 'ବେଟସି' ଗୋଟିଏ ଶାନ୍ତ ଘୋଡ଼ୀ—ଅବଶ୍ୟ ବୟସ ଅଧିକ ହୋଇ ଥିବାରୁ ତା ପିଠିର ହାଡ଼ଗୁଡ଼ିକ ବାହାରି ପଡ଼ିଛି । ତାହା ହେଉ । ମୁଁ ମିଷ୍ଟାର ଜନ୍‌ଙ୍କୁ କହିଲି, ବିନା ଜିନ୍‌ରେ 'ବେଟସି'ର ପିଠିରେ ଚଢ଼ିବାକୁ ମୋତେ ଭଲ ଲାଗେ । ମୋ କଥାରେ ସେ କହିଲେ, ଭଲ, କିନ୍ତୁ ହାଡ଼ର ଆଘାତରେ ମୁଁ ଯେମିତି ଦ୍ୱିଧା ବିଭକ୍ତ ହୋଇ ନ ଯାଏ । ତଥାପି ମୋତେ ଯଦି ଦ୍ୱିଧା ବିଭକ୍ତ ହୋଇ ପଡ଼ିବା ମନୋରମ ଲାଗେ, ମୁଁ ଅନାୟାସରେ ତାହା ମଧ୍ୟ କରିପାରେ । 'ବେଟସି'ର ବେକର କେଶରେ ହାତ ବୁଲାଉ ବୁଲାଉ ସେ ବାହାର ପ୍ରାଙ୍ଗଣରେ ଠିଆ ହୋଇ ମୋ ସହିତ କଥା କହୁଥିଲେ ଏବଂ ମୁଁ କେଉଁଠାକୁ ଯିବି ଜାଣିବା ପାଇଁ ଚେଷ୍ଟା କରୁଥିଲେ । ଅଥଚ ମୁଁ ଆପଣମାନଙ୍କୁ କହୁଛି ଯେ, ମୁଁ କେଉଁଠାକୁ ଯାଉଛି ସେ ତାହା ଜାଣିଥିଲେ, କାରଣ ମୋର କୌଣସି କଥା ହିଁ ତାଙ୍କର ଅଜ୍ଞାତ ନ ଥିଲା । ମୋର ମନେ ହୁଏ, ଏହି ବିଷୟରେ ସେ ମୋ ସହିତ ଟିକିଏ ଥଟ୍ଟା ତାମସା କରିବାକୁ ଚାହୁଁଥିଲେ । କିନ୍ତୁ ମୋ ମୁହଁରୁ ଗନ୍ତବ୍ୟ ସ୍ଥାନଟିର ନାମ ଉଚ୍ଚାରିତ ନ ହେବାରୁ କାମଟା ସୁବିଧା ହେଉ ନ ଥିଲା । ଯାହାହେଉ ଅବଶେଷରେ ସେ କହିଲେ ଯେ ବିନା ଜିନ୍‌ରେ ଯିବାଟା ଯଦି ମୁଁ ଭଲ ମନେ କରେଁ, ତାହାହେଲେ ଯେମିତି ମୁଁ ସେହି ଭାବରେ ଯାଏ । ଅନୁମତି ପାଇ ମୁଁ ଆଉ ଅପେକ୍ଷା କଲି ନାହିଁ, ଫାଟକ ଖୋଲି ରାସ୍ତା ଉପରକୁ ବାହାରି ଆସିଲି । ତାପରେ ମୁଁ ଛକ ଆଡ଼କୁ ଘୋଡ଼ାର ମୁହଁ ଘୁରାଇ ଦେଲି ।

ଘଟଣାଟି ହେଉଛି ପନ୍ଦର ଦିନ ରାତିର — ଅର୍ଥାତ୍ ମଙ୍ଗଳବାର ରାତିର । ସେତେବେଳେ ସାମାନ୍ୟ ଅନ୍ଧକାର ହୋଇ ଯାଇଛି । ଅଳ୍ପ ଅଗ୍ରସର ହୋଇ ପଛକୁ ଚାହିଁ ଦେଲା କ୍ଷଣି ମୁଁ ଦେଖିଲି ଯେ, ମିଷ୍ଟାର ଜନ୍ ଖଳାବାଡ଼ର ଫାଟକରେ ଭରା ଦେଇ ଠିଆ ହୋଇ ମୋ ଯାତ୍ରା ଦେଖୁଛନ୍ତି । ଦିନ ସାରା ନୂଆ ମାଟିରେ ଲଙ୍ଗଳ ବୁଲାଇଛି, ତେଣୁ ହାଡ଼ଭଙ୍ଗା ପରିଶ୍ରମରେ ମୁଁ ଅତିଶୟ କ୍ଳାନ୍ତ ହୋଇ ପଡ଼ିଥିଲି । ସେଥିପାଇଁ ରବିବାର ରାତି ଭଳି ମୁଁ ଘୋଡ଼ା ଦଉଡ଼ାଇଲି ନାହିଁ । 'ବେଟସି'କୁ ନିଜ ଇଚ୍ଛା ଅନୁସାରେ ଚାଲିବାକୁ ଦେଲି । କାହିଁକି ନା ସେତେବେଳେ ମୋ ହାତରେ ଦୁଇ ଘଣ୍ଟା ସମୟ ଥିଲା, ଅଥଚ ତିନି ମାଇଲ ମାତ୍ର ପଥ ମୋତେ ଅତିକ୍ରମ କରିବାକୁ ହେବ । ସେଥିପାଇଁ କଦମରେ ନ ଚାଲି ଏମିତି ମନ୍ଥର ଗତିରେ ମୁଁ ଯାତ୍ରା ଆରମ୍ଭ କରିଥିଲି ।

— ଦୁଇ —

• ସମସ୍ତେ ଜାଣନ୍ତି, ଲର୍ଡ ମୋସଲେଙ୍କ କନିଷ୍ଠା କନ୍ୟା ନାଓମି ସହିତ ମୋର ଘନିଷ୍ଠ ମିଳାମିଶା ଅଛି । କିନ୍ତୁ ଆଜ ରାତିରେ ସାଢ଼େ ନଅଟା ପୂର୍ବରୁ ମୁଁ ସେଠାରେ ଉପସ୍ଥିତ ହୋଇ ପାରିବି ନାହିଁ । ନାଓମି ସହିତ ସପ୍ତାହରେ ଥରେ ମାତ୍ର ମୋତେ ମିଶିବାକୁ ଦେବା ପାଇଁ ଲର୍ଡ ମୋସଲେ ରାଜି ହୋଇଥିଲେ ଏବଂ ସେହି ମିଳନର ଦିନଟି ରବିବାର ରାତିକୁ ନିର୍ଦ୍ଧାରିତ ହୋଇଥିଲା । ଲର୍ଡ ମୋସଲେଙ୍କ ଅଜ୍ଞାତରେ ଆଉ ଦୁଇ ତିନୋଟି ମଙ୍ଗଳବାର ରାତିରେ ମୁଁ ତାହା ସହିତ ଦେଖା କରି ଆସିଛି । ନାଓମି ଅବଶ୍ୟ ସ୍ଥିର କରିଥିଲା, ମଙ୍ଗଳବାର ରାତିରେ ଏହିପରି ଭାବରେ ଦେଖା ସାକ୍ଷାତ ଚାଲିବ । ହେଇଥି ଯୋଗୁଁ ଯଦିଚ ମୋସଲେଙ୍କର ଅନୁମତି ନ ଥିଲା, ତଥାପି

ଗତ କାଲି ରାତିରେ ମୁଁ ନାଓମି ସହିତ ଦେଖା କରିବାକୁ ଯାଇ-ଥିଲି । ନାଓମି ଅନୁରୋଧ କରିଥିଲା, ମୁଁ ଯେମିତି ନିଶ୍ଚୟ ଯାଏଁ, କାରଣ ସାମନା ପ୍ରାଙ୍ଗଣରେ, ଯେଉଁଠି ଚଛରେ ଦୋଳି ଝୁଲି ହୋଇଛି, ସେଠାକୁ ସେ ବି ଆସିବ ।

ଲର୍ଡ ମୋସଲେଙ୍କ ବିରୁଦ୍ଧରେ ମୋର କୌଣସି ଅଭିଯୋଗ ନାହିଁ । ମିଷ୍ଟାର ଜନ୍ ଟାର୍ଣ୍ଣୀର ମଧ୍ୟ ଏହି କଥା କହିବେ । ମୁଁ ତାଙ୍କୁ ଦେଖି ପାରେ ନାହିଁ । କାହିଁକି ପାରେ ନାହିଁ ତାହା ସେ ଜାଣନ୍ତି ଏବଂ ସେ ସେହି କଥା ବି କହିବେ । ମୋର ଯେମିତି ନାଓମିକୁ ଭଲ ଲାଗେ, ସେମିତି ତୁମର ଯେଉଁ ଝିଅଟିକୁ ଭଲ ଲାଗେ, ତାହା ସହିତ ସପ୍ତାହରେ ମାତ୍ର ଥରଟିଏ ମିଳିତ ହେଲେ କଣ ଆନ୍ତରିକ ଆନନ୍ଦ ମିଳିବ ? ତା ଛଡ଼ା ମୋର ମନେ ହୁଏ, ନାଓମି ମୋତେ ଟିକିଏ ପସନ୍ଦ କରେ । ତାହା ନ ହୋଇଥିଲେ ଲର୍ଡ ମୋସଲେ ଯେତେ-ବେଳେ ସପ୍ତାହରେ ଥରକରୁ ବେଶୀ ମିଶିବାକୁ ବାରଣ କରିଥିଲେ, ସେତେବେଳେ ସେହି ନିଷେଧାଜ୍ଞା ବଳବତ୍ତ ଥିବା ସତ୍ତ୍ୱେ ବି ମଙ୍ଗଳ-ବାର ରାତିରେ ମିଶିବାକୁ ସେ ମୋତେ କହି ନ ଥାନ୍ତା । ଲର୍ଡ ମୋସଲେଙ୍କର ଧାରଣା, ଆମେ ଯଦି ସପ୍ତାହରେ ଥରକରୁ ବେଶୀ ମିଳାମିଶା କରୁଁ, ତାହାହେଲେ ମୁଁ ତାଙ୍କୁ ଉପେକ୍ଷା କରିବି ଏବଂ ହୁଏତ ଆମେ ବିବାହ ହେବା ଲାଗି ସ୍ଥିର କରି ପକାଇବୁ । ସେହି କାରଣରୁ ସେ ଆଦେଶ ଦେଇଥିଲେ, ସପ୍ତାହରେ ଥରେ ରବିବାର ରାତି ଛଡ଼ା ମୁଁ ଆଉ ତାଙ୍କ ଘରକୁ ଯାଇ ପାରିବି ନାହିଁ ।

ତାଙ୍କର ରଙ୍ଗୀନ ଘୋଡ଼ା 'ଲାଇଟଫୁଟ'କୁ ଚୋରି କରିଥିବା ଅପରାଧରେ ସେ ମୋ ପାଇଁ କୋଡ଼ିଏ ବର୍ଷର କାରାଦଣ୍ଡ ବ୍ୟବସ୍ଥା କରାଉଛନ୍ତି । ମୁଁ ଦୃଢ଼ ଭାବରେ କହିପାରେଁ,

ସେ ଜାଣନ୍ତି ଯେ ମୁଁ ତାଙ୍କ ଘୋଡ଼ା ଚୋରି କରି ନାହିଁ । କିନ୍ତୁ ସେ ସେହି କଥା ଭାଙ୍ଗିବେ ନାହିଁ । କାହିଁକି ନା ନାଓମିର ସାନ୍ନିଧ୍ୟ ଠାରୁ ମୋତେ ଅପସାରଣ କରିବାର ଗୋଟିଏ ସୁନ୍ଦର ସୁଯୋଗ ତାଙ୍କର ହସ୍ତଗତ ହୋଇଅଛି ଏବଂ ମୋର ଏହି ଅନୁପସ୍ଥିତିର ଅବକାଶରେ ସେ ଅନ୍ୟ କାହାରି ସହିତ ନାଓମିର ବିବାହ ଦେବେ । ଏହା ମୋର ଅନୁମାନ । ଏହି ଅଞ୍ଚଳରେ ଯେ ଏହି ଘଟଣା ଶୁଣୁଛି, ସେ କହୁଛି, ମୁଁ ଘୋଡ଼ା-ଚୋର ନୁହେଁ । ମିଷ୍ଟର ଜନ୍ ଟାଣ୍ଟିର ପରିଷ୍କାର ଭାଷାରେ ସେହି କଥା କହିବେ । ଏକ ସମୟରେ ସେ ମୋତେ ତାଙ୍କ ପରିବାର ବର୍ଗର ଅନ୍ୟତମ କରିବାକୁ ଚାହିଁଥିଲେ, କିନ୍ତୁ ମୋ ଅନିଚ୍ଛା ହେତୁ ତାହା କାର୍ଯ୍ୟରେ ପରିଣତ ହୋଇ ପାରି ନାହିଁ ।

ସେହି କଥା ଆଜି । ପନ୍ଦର ଦିନ ରାତିରେ, ଅର୍ଥାତ୍ ମଙ୍ଗଳ-ବାର ରାତିରେ 'ବୋଟସି'ର ଖାଲି ପିଠିରେ ଚଢ଼ି ମୁଁ ବୁଲୁ ବାହାରି ଥିଲି । ପ୍ରାୟ ମାଇଲିଏ ଯାଇ ଝରଣା କଡ଼ରେ ମୁଁ ଘୋଡ଼ାରୁ ଓହ୍ଲାଇଥିଲି । ସେଠାରେ କେତେ ସମୟ ରହିଥିଲି, ତାହା ଅବଶ୍ୟ ମୋର ସ୍ମରଣ ନାହିଁ । ତଥାପି ଯେତେବେଳେ ପୁନର୍ବାର ଯାତ୍ରା କରିଥିଲି, ସେତେବେଳେ ଘଡ଼ିରେ ନଅଟା ବାଜିଥିଲା । ତାର ଅର୍ଥ, ସେତେବେଳେ ଲୁଇ ମୋସଲେଙ୍କର ଶୋଇବାକୁ ଯିବାର ସମୟ ହୋଇ ଯାଇଥିଲା । ମୋସଲେଙ୍କ ଘରେ ପହଞ୍ଚି ମୁଁ ସିଧା ଖଳାବାଡ଼ିର ଫାଟକ ଆଡ଼କୁ ଗଲି—ମଙ୍ଗଳବାର ରାତିରେ ମୁଁ ତାହା କରିଥାଏଁ । ଯେଉଁ ଘରେ ନାଓମି ତା ବଡ଼ ଭଉଣୀ ମେରି ସାଙ୍ଗରେ ଶୁଏ, ମୁଁ ଦେଖିଲି ସେହି ଘରେ ଆଲୁଅ ଜଳୁଛି । ମୁଁ ଜାଣିଥିଲି, ଏତିକି ବେଳେ ହୁଏତ ମେରି କାହା ସହିତ ବୁଲି ବାହାରିବ, ନଚେତ୍ ଠିକ୍ ସାଢ଼େ ନଅଟା ବାଜିଲେ ଶୋଇ ପଡ଼ିବ । କିନ୍ତୁ ପନ୍ଦର ଦିନ ରାତିରେ ଖୋଲା ଝରକା ବାଟେ ମୁଁ ପରିଷ୍କାର ଦେଖିଛି, ନାଓମି

ବିଛଣାରେ ଦେହ ମେଲାଇ ପଡ଼ିଛି, ଆଉ ମେରି ତାକୁ କଣ ଯେମିତି କହୁଛି । ମୋତେ ବ୍ୟାପାରଟି ଖୁବ୍ ଖରାପ ଲାଗିଲା । ତାର କାରଣଟି କହୁଛି । ଶୋଇବା ଆଗରୁ ମେରି ଯେତେବେଳେ ନାଓମି ସାଙ୍ଗରେ ଆଳାପ ଜମାଇ ଦେଉଛି, ସେତେବେଳେ ଦୁଇ ଘଣ୍ଟା ପୂର୍ବରୁ ତାର ବାହାରକୁ ଆସିବାର ଉପାୟ ନ ଥିଲା । କାହିଁକି ନା ମେରି ନିଦ୍ରାଭିଭୂତ ହେଲେ ଯାଇ ନାଓମି ବାହାରକୁ ଆସିବା ପାଇଁ ଲୁଗାପଟା ଅନ୍ଧାରରେ ସନ୍ତର୍ପଣରେ ନିଃଶବ୍ଦରେ ପରିଧାନ କରିବ ଏବଂ ତାପରେ ଲଘୁ ପାଦରେ ସାମନା ପ୍ରାଙ୍ଗଣରେ ଯେଉଁ ଗଛରେ ଦୋଳି ଝୁଲୁଛି, ସେଠାକୁ ଆସିବ ।

— ତିନି —

'ବେଟସି'ର ପିଠି ଉପରେ ବସି ବସି ମୁଁ ପ୍ରାୟ ପନ୍ଦର ମିନିଟ ଯାଏ ଦେଖିଲି, ନାଓମି ମେରିକୁ କଣ କହୁଛି । ମୁଁ ଅବଶ୍ୟ ଜାଣିଥିଲି, ଯଦି ମେରିକୁ ଆମର ଏହି ଗୋପନ ଅଭିସାରର କାହାଣୀ ଅବଗତ କରା ହୋଇଥାନ୍ତା, ତାହାହେଲେ ସେ ବିନା ଆପତ୍ତିରେ ନାଓମିକୁ ମଙ୍ଗଳବାର ରାତିରେ ଆସିବାକୁ ଦେଇ ଥାଆନ୍ତା । କିନ୍ତୁ ଜାଣେ ନାହିଁ, କି କାରଣ ହେତୁ ନାଓମି ମେରିକୁ କିଛି କହିବାକୁ ରାଜି ହୋଇ ନାହିଁ । ନାଓମିର ଭୟର କାରଣ ହେଉଛି, ଯଦି ମେରି ବିପରୀତ ବୁଝେ, ଯଦି ସେ ସିଧା ସିଧା ତା ବାବାକୁ ସବୁ କଥା କହି ଦିଏ । ନାଓମିର ଏହି ଆଶଙ୍କାକୁ ମାନି ନେବାକୁ ହୋଇଥିଲା ।

ମୋ ଆଶଙ୍କା ସତ୍ୟ ରୂପ ପରିଗ୍ରହ କଲା । ଅର୍ଥାତ୍, 'ବେଟସି'ର ପିଠି ଉପରେ ବସି ଦେଖିଲି, ନାଓମି ଶୋଇବା-ପୋଷାକ ପିନ୍ଧୁଛି । ସୁତରାଂ ମୁଁ ବୁଝିଲି, ଏକ ଘଣ୍ଟା ଆଗରୁ ନାଓମି ବାହାରକୁ

ଆସୁ ନାହିଁ । ଏତେଣେ ହଠାତ୍ ଦେହରେ ଚନ୍ଦ୍ର ଜଳି ଉଠିଲେଣି । କିଛି ସମୟ ଭିତରେ ଖଳାବାଡ଼ିର ପ୍ରାଙ୍ଗଣ ଚନ୍ଦ୍ରାଲୋକରେ ଦିନ ପରି ପରିଷ୍କାର ପ୍ରତୀୟମାନ ହେବ । ମୋର ଅଭ୍ୟାସ ହେଉଛି, ଫାଟକର କବାଟ ବନ୍ଦ କରି 'ବେଟସି'କୁ ପ୍ରାଙ୍ଗଣ ଭିତରେ ଛାଡ଼ି-ଦେବା । କିନ୍ତୁ ଏହାର ଦିନ ରାତିରେ ମୁଁ ତାହା କରି ନାହିଁ । ଭାବି ଚିନ୍ତି ଦେଖିଥିଲି, ଯଦି ମାଉଜ ମୋସଲେ ପାଣି ପିଇବା ପାଇଁ କିମ୍ବା ଅନ୍ୟ କୌଣସି କାମ ହେତୁ ବିଛଣାରୁ ଉଠି ଆସନ୍ତି, ତାହା-ହେଲେ ଚନ୍ଦ୍ରାଲୋକରେ ସେ ଦେଖିବାକୁ ପାଇବେ ଯେ ଖଳାବାଡ଼ି ଭିତରେ ଗୋଟିଏ ଘୋଡ଼ା ଚରୁଛି । ତତ୍କ୍ଷଣାତ୍ ତାଙ୍କର ନିଶ୍ଚୟ ମନେ ହେବ, କୌଣସି ଘୋଡ଼ା ଦଉଡ଼ି ଛିଡ଼ାଇ ପଳାଇ ଆସିଛି, ତା ନ ହେଲେ ଫାଟକ ଖୋଲା ଦେଖି ଅପର କାହାରି ଘୋଡ଼ା ପଶି ଆସିଛି । ଏହା ଛଡ଼ା ଗୋଲମାଲର ବ୍ୟାପାର ତ ଆହୁରି ଅଛି । 'ବେଟସି'କୁ ଦେଖିଲେ ହିଁ ସେ ଚିହ୍ନି ପକାଇବେ, ଆଉ ହୁଏତ ତତ୍କ୍ଷଣାତ୍ ତାକୁ ଧରି ଘୋଡ଼ାଶାଳରେ ଭର୍ତ୍ତି କରିଦେବେ, ଆଉ ତାହା ନ ହେଲେ ମୋର ଅନୁସନ୍ଧାନ ଆରମ୍ଭ କରିଦେବେ । ସୁତରାଂ ମୁଁ କଣ କଲି ନା, ଘୋଡ଼ାଶାଳର ଦୁଆର ଖୋଲି ଯେଉଁ ଖୁଆଡ଼ଟା ଖାଲି ପାଇଲି, ସେହି ଖୁଆଡ଼ରେ 'ବେଟସି'କୁ ପୁରାଇ ଦେଲି । କାମଟା ଅନ୍ଧକାରରେ ସମାପ୍ତ ହେଲା—ଦିଆସିଲି ଜଳାଇବାକୁ ବି ସାହସ କଲି ନାହିଁ । କିଏ ଜାଣେ, ମୋସଲେ ଯଦି ନ ଶୋଇ ଝରକା କଡ଼ରେ ଠିଆ ହୋଇଥାନ୍ତି, ତାହାହେଲେ ନିଜ ହାତରେ ଯେ ଆପଣାର ସର୍ବନାଶ ମୁଁ ଘଟାଇବି । 'ବେଟସି'କୁ ଖୁଆଡ଼ରେ ପୁରାଇ ଦୁଆର ବନ୍ଦ କରି ବାହାରକୁ ଆସି ନାଓମିର ପ୍ରତୀକ୍ଷାରେ ଦୋଳିରେ ବସି ରହିଲି ।

ସାଢେ ବାରଟା କି ଗୋଟାକ ବେଳେ ମୁଁ ଘର ଅଭିମୁଖରେ

ବାହାରିଲି । ସେତେବେଳେ ବିନ୍ଦୁଏ ଆଲୋକ ନାହିଁ । କଳା ମେଘରେ ଚନ୍ଦ୍ର ସମ୍ପୂର୍ଣ୍ଣ ଅବଲୁପ୍ତ । ଖଳାବାଡ଼ି ଭିତରେ ଅନ୍ଧକାର ଯେମିତି ଅଧିକତର ଘନୀଭୂତ ହୋଇଛି । ନିଜ ହାତର କୌଣସି ଚିହ୍ନ ସୁଦ୍ଧା ମୁଁ ଦେଖି ପାରୁ ନ ଥିଲି । ଯେ କୌଣସି ପ୍ରକାରେ ହେଉ, ପ୍ରାୟ ହାତରେ ଅଣ୍ଡାଳି ଅଣ୍ଡାଳି ମୁଁ ଘୋଡ଼ାଶାଳର ଦୁଆର କଡ଼ରେ ଯାଇ ପହଞ୍ଚିଲି । ଭିତରୁ 'ବେଟସି'କୁ ବାହାରକୁ ଆଣିଲି । କିଛି ଦେଖାଯାଉ ନ ଥାଏ । ତଥାପି 'ବେଟସି'ର ବେକରେ ହାତ ଦେବା ମାତ୍ରେ ମନେ ହେଲା, ଲଗାମ ନାହିଁ । ମୁଁ ଅବଶ୍ୟ ବିଚଳିତ ହେଲି ନାହିଁ । ମୁଁ ଜାଣେ, ତାହା 'ବେଟସି'ର ସ୍ୱଭାବ । ବେଶି ସମୟ ଠିଆ ହେବାକୁ ପଡ଼ିଲେ ସେ ଲଗାମ ଝୁଲାଇବା ଆରମ୍ଭ କରିବ । କିନ୍ତୁ ବିନା ଲଗାମରେ 'ବେଟସି'ର ପିଠିରେ ଚଢ଼ିବାକୁ ମୋର ସାହସ ହେଲା ନାହିଁ । ଖଳାବାଡ଼ି ଭିତରେ ଯଦି ସେ ବିନା ଜିନ୍ ଓ ଲଗାମରେ ସଓ୍ୟାର ପାଇ ଡାକିବାକୁ ଆରମ୍ଭ କରେ, ତାହାହେଲେ ସଙ୍ଗେ ସଙ୍ଗେ ଲାଡ ମୋସଲେଙ୍କର ନିଦ ଭାଙ୍ଗିଯିବ । ତେଣୁ ଲଗାମ ସନ୍ଧାନରେ ନଇଁ ପଡ଼ି ଘୋଡ଼ାଶାଳର ଚଟାଣରେ ଥରେ ଅଣ୍ଡାଳି ଆସିଲି । କିନ୍ତୁ ବୃଥା । ସେଠାରେ ଲଗାମ ପଡ଼ି ନାହିଁ । ସେତେବେଳେ ମୁଁ ଘୋଡ଼ାଶାଳର ଦୁଆରକୁ ଫେରି ଆସିଲି । ମନେ ହେଲା, ହୁଏତ ଉତ୍ତେଜନାର ଆଧିକ୍ୟ ଯୋଗୁ ମୁଁ ଦୁଆର ମୁହଁରେ ଲଗାମ ଖୋଲି ଦେଇଥିଲି । କିନ୍ତୁ ସେଠାରେ ଗୋଛାଏ ଦଉଡ଼ି ଛଡ଼ା ମୁଁ ଆଉ କିଛି ପାଇଲି ନାହିଁ । କ'ଣ ଖିଆଲ ହେଲା, ହାତ ବଢ଼ାଇ ସେହି ଦଉଡ଼ି ଟାଣି ନେଇ 'ବେଟସି'ର ମୁହଁର ବନ୍ଧନୀ ସାଙ୍ଗରେ ତାହା ବାନ୍ଧିଲି । ତା ପରେ ସେହି ଦୁର୍ଭେଦ୍ୟ ଅନ୍ଧକାରରେ କୌଣସି ପ୍ରକାରେ ଖଳାବାଡ଼ିର ପ୍ରାଙ୍ଗଣ ପାରି ହୋଇ ପ୍ରାନ୍ତର ଡେଇଁ ରାସ୍ତା ଉପରକୁ ଆସି 'ବେଟସି'ର ପିଠି

ଉପରେ ବସିଲି । ଘରକୁ ଫେରିବା ବେଳେ ବାଟରେ ଭଲେ ମାତ୍ର ସମସ୍ତ ନଷ୍ଟ ହୋଇ ନାହିଁ । ବାଟରେ ଆସୁଁ ଆସୁଁ ଗୋଟିଏ ଦୁଇଟି ଜାଗାରେ ମୋର ଅବଶ୍ୟ ମନେ ହୋଇଥିଲା, 'ବେଟସି' ମଝିରେ ମଝିରେ କେମିତି ଅଖାଡ଼ୁଆ ଭାବରେ ଚାଲୁଛି । କିନ୍ତୁ ମୋର ଯେତେବେଳେ କୌଣସି ଅସୁବିଧା ଘଟି ନ ଥିଲା, ସେତେବେଳେ ମଥା ଖେଳାଇବା ବି ମୁଁ ନିଷ୍ପ୍ରୟୋଜନ ମନେ କରୁଛି । ଘରକୁ ଫେରି ଆସିବା ବେଳକୁ ରାତି ଖୁବ୍ ଗମ୍ଭୀର ହୋଇ ଯାଇଛି । ହୁଏତ ଦୁଇଟା ବାଜି ଯାଇଥିଲା । କୌଣସି ପ୍ରକାରେ ସମସ୍ତ ନଷ୍ଟ ନ କରି 'ବେଟସି'ର ମୁଖବନ୍ଧନୀର ଦଉଡ଼ି ଗୋଛାକ ଖୋଲି ପକାଇ ମୁଁ ଶୋଇବାକୁ ଚାଲି ଯାଇଥିଲି ।

ସକାଳେ ଯଥା ସମୟରେ ମୋର ନିଦ ଭାଙ୍ଗିଲା । ସକାଳୁଆ ଜଳଖିଆ ଖାଇ ସାରି ବିଲକୁ ଯିବା ପାଇଁ ମୁଁ ବାହାରି ପଡ଼ିଲି । କାହିଁକି ନା ଏଯାଏ ବି ହଳ କରିବା ଶେଷ ହୋଇ ନାହିଁ । ସେହି କାମରେ ସବୁ ପ୍ରଥମେ ନିଯୁକ୍ତ ହେବା ଦରକାର ।

ବାହାରି ପଡ଼ିବା ବେଳେ ଦେଖିଲି ଲାଡ ମୋସଲେ, ଶେରିଫ ଓ ଆଉ ତିନି ଚାରି ଜଣ ଲୋକ ସଦର ରାସ୍ତା ଭାଙ୍ଗି ଆମ ଘର ଆଡ଼କୁ ଆସୁଛନ୍ତି । ସେମାନେ ଆସିଲେ ଏବଂ ତାହା ଜାଣି ପାରି ମିଷ୍ଟାର ଜନ୍ ମଧ୍ୟ ବାହାରି ଆସିଲେ । ଶେରିଫଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ଥିଲା । ତାଙ୍କ ପିଠିରେ ଏକ ଥାପଡ଼ ମାରି ସେ ତାଙ୍କୁ ଅଭ୍ୟର୍ଥନା କଲେ । ତାପରେ ଠିଆ ଠିଆ ଶେରିଫଙ୍କ ଆଗ- ମନ ସମ୍ବନ୍ଧରେ ଗୋଟିଏ ହାସ୍ୟକର ଗଳ୍ପ ସେ ଶୁଣାଇଲେ । ଗଳ୍ପଟି ଶେଷ ହେବାକୁ ପ୍ରାୟ ଅଧ ଘଣ୍ଟାଏ ଲାଗିଲା । ତାପରେ ଶେରିଫ ମୋତେ ଖୋଜିଲେ । ମିଷ୍ଟାର ଜନ୍ କହିଲେ, ହଳକୁ ଯିବା ଲାଗି ମୁଁ ପ୍ରସ୍ତୁତ ହେଉଛି । ଶେରିଫ ତହୁଁ କହିଲେ, ସେହି କାମରେ

ଯିବା ମୋ ପକ୍ଷରେ ସମ୍ଭବପର ନୁହେଁ । ମୋ ନାମରେ ଗୋଟିଏ ଗିରଫଦାଖଲ ପରୱାନା ଅଛି । ମିଷ୍ଟାର ଜନ୍ ହସି ହସି କହିଲେ, ବଡ଼ ମଜାର ତାମସା ତ । ଶେରିଫ ଜଣାଇଲେ, ତାମସା ନୁହେଁ, ସତ କଥା । ଲର୍ଡ ମୋସଲେଙ୍କ ରଙ୍ଗୀନ ଘୋଡ଼ା 'ଵାଇଟଫୁଟ' ଚୋରି କରିଥିବା ହେତୁ ପରୱାନାଟା ଜାରି ହୋଇଛି । ମିଷ୍ଟାର ଜନ୍ ଆହୁରି ଜୋରରେ ହସି ପକାଇଲେ—ଏପରିକି ଶେରିଫଙ୍କ ପ୍ରତି ବକ୍ରୋକ୍ତି ମଧ୍ୟ କଲେ । ଉତ୍ତର ସ୍ୱରୂପ ଶେରିଫ ପରୱାନାଟା ତାଙ୍କ ଆଖି ଆଗରେ ମେଲାଇ ଧରିଲେ । ତଥାପି ମିଷ୍ଟାର ଜନ୍ ଅବିଶ୍ୱାସ କଲେ, ଏବଂ ଏପରିକି, କହିଲେ, ଏହିଭଳି ତାମସା ଅତ୍ୟନ୍ତ ମାରାତ୍ମକ—ମୁଁ କଦାପି ଘୋଡ଼ା ଚୋରି କରି ନ ପାରେ । କାରଣ, ମିଷ୍ଟାର ଜନ୍ ଜାଣନ୍ତି, ଜୀବନରେ ମୁଁ କେବେ ହେଲେ ଏହି ଭଳି କିଛି କରି ନାହିଁ ବା କରିବ ନାହିଁ ।

ମିଷ୍ଟାର ଜନ୍ ଙ୍କର ପ୍ରତିବାଦ ନିଷ୍ଫଳ ହେଲା । ସେମାନେ ଗିରଫ କରି ମୋତେ ସହରକୁ ନେଇ ଆସିଲେ—ଶେରିଫଙ୍କ ଗାରଦର ଗୋଟିଏ କୋଠରୀରେ ମୋତେ ରଖିଲେ । ଗାରଦରେ ଥିବା ହେତୁ ମୋର ଟିକେ ମାତ୍ର ଭୟ ହେଲା ନାହିଁ—କାହିଁକି ବା ହେବ ? ମୁଁ ତ ଆଜି ଲର୍ଡ ମୋସଲେଙ୍କ ଘୋଡ଼ା ଚୋରି କରି ନାହିଁ । କିନ୍ତୁ ସେ କଥା କେହି ଶୁଣୁ ନାହାନ୍ତି । ମୋତେ ଗିରଫ କରିବା ଆଗରୁ ସେମାନେ ମିଷ୍ଟାର ଜନ୍ ଙ୍କ ଘୋଡ଼ାଶାଳକୁ ଯାଇଥିଲେ ଏବଂ ସେଠାରେ 'କେଟସି'ର ଖୁଆଡ଼ରେ ସେମାନେ ଆବିଷ୍କାର କରିଥିଲେ, ଲର୍ଡ ମୋସଲେଙ୍କ ରଙ୍ଗୀନ ଘୋଡ଼ା 'ଲାଇଟ ଫୁଟ' ବନ୍ଧା ହୋଇ ରହିଛି । 'ଲାଇଟ ଫୁଟ'କୁ ଦେଖି ସୁଦ୍ଧା ମିଷ୍ଟାର ଜନ୍ ବିଚଳିତ ହୋଇ ପଡ଼ିଲେ ନାହିଁ, କିନ୍ତୁ କହିଲେ, ମନେ ହେଉଛି ଯେମିତି ଗୋଟାଏ ଗୋଳମାଳ ହୋଇଛି । ମୁଁ କେବେ ହେଲେ

ଘୋଡ଼ା ଚୋରି କରି ନ ପାରେ । ସେହି କଥା କେହି ମାନିଲେ ନାହିଁ । ମାନିବେ ବା କାହିଁକି ? ଆଖି ଆଗରେ ମିଷ୍ଟାର ଜନ୍‌ଙ୍କ ଘୋଡ଼ା-ଶାଳରେ 'ଲାଇଟଫୁଟ' ରହିଛି, ଏବଂ କାନ୍ଥରେ ଝୁଲୁଛି ତା' ମୁହଁରୁ ଦଉଡ଼ି-ଲଗାମ । ଆହୁରି ସାକ୍ଷୀ ପ୍ରମାଣ ଗୋଚରୀଭୂତ ହେଲା । ଲର୍ଡ ମୋସଲେଙ୍କ ଖଳାବାଡ଼ିକୁ ଯାଇ ସେମାନେ ନରମ ମାଟିରେ ଯେଉଁ ପାଦର ଦାଗ ପାଇଥିଲେ, ତାହା ମାପିଲେ । ମୋ ପାଦର ମାପ ସହିତ ସେହି ଦାଗ ସମାନ ହୋଇଗଲା । ଖୋଜିବାରୁ 'ବେଟସି'ର ଚମଡ଼ା ଲଗାମ ମିଳିଲା । ଲର୍ଡ ମୋସଲେ କହିଲେ, ଜଳ ପରି ସବୁ କଥା ସ୍ୱଚ୍ଛ । ପରିଷ୍କାର ବୁଝା ଯାଉଛି, ମୁଁ 'ବେଟସି'ର ପିଠିରେ ଚଢ଼ି ଆସିଛି । ତାପରେ 'ବେଟସି'କୁ ଛାଡ଼ି ଦେଇ ମୁଁ 'ଲାଇଟଫୁଟ' ଉପରେ ଚଢ଼ି ଚାଲି ଯାଇଛି— ପରେ ଆସି ତାର ଲଗାମ ପକାଇ ଦେଇ ମୁଁ 'ବେଟସି'କୁ ନେଇ ଯାଇଛି । ସମସ୍ତେ ମିଳି ସେହି କଥା ମାନି ନେଲେ । କିନ୍ତୁ କେହି ଭାବି ଦେଖିଲେ ନାହିଁ, ଯଦି ମୁଁ 'ବେଟସି'ର ଲଗାମ ପକାଇ ଦେଲି, ତାହାହେଲେ ମିଷ୍ଟାର ଜନ୍‌ଙ୍କ ଘୋଡ଼ାଶାଳରେ ଗୋଟିଏ ଦଉଡ଼ିର ଲଗାମ କାହିଁକି କାନ୍ଥରେ ଟଙ୍ଗା ହୋଇଛି । ମୋସଲେଙ୍କ ଘୋଡ଼ାଶାଳର ଦୁଆରରେ ତାଲା ନ ଥିଲା । ତା ଛଡ଼ା ମୁଁ ବୋଧହୁଏ 'ବେଟସି'କୁ ରଖି ଜୋରରେ ଚାପି ଦୁଆର ବନ୍ଦ କରି ଆସି ନାହିଁ । ସୁତରାଂ ରାତିରେ କେତେବେଳେ 'ବେଟସି' ମୁହଁରେ ଧକ୍କା ମାରିବାରୁ ଦୁଆର ଖୋଲି ଯାଇଛି—ତାପରେ ସେ ସିଧା ଘରକୁ ଚାଲି ଆସିଛି ।

ଲର୍ଡ ମୋସଲେ ପ୍ରକାଶ୍ୟରେ କହି ବୁଲୁଛନ୍ତି, କୋଡ଼ିଏ ବର୍ଷ ଜେଲ୍ ଦେଇ ଦେଲେ ମୁଁ ଥଣ୍ଡା ହୋଇଯିବି—ମୁଁ ଯେମିତି ଜୀବନରେ କେବେ ହେଲେ ତାଙ୍କ ସାନ ଝିଅ ନାଓମି ସମ୍ବନ୍ଧରେ ତାଙ୍କୁ ଆଉ ଉଦ୍‌ବିଗ୍ନ କରି ନ ପାରେ । ବିଶପ—ଛକ ଉପରେ ଯେଉଁ

ରିପବ୍ଲିକ ଷ୍ଟ୍ରୀଟି ଅଛି, ଯାହାର ସେହି ପ୍ରକାଣ୍ଡ ପନ୍ଦରଟି କୋଠରୀ ବିଶିଷ୍ଟ ଧଳା କୋଠାଟିଏ ଏବଂ କୋଡ଼ିଏଟି ହଳ ଅଛି, ତାହାର ସାଙ୍ଗରେ କାଲେ ସେ ନାଓମିର ବିବାହ ଦେବେ । ମିଷ୍ଟାର ଜନ୍ କହିଛନ୍ତି, ସହରର ସବୁ ଠାରୁ ଭଲ ଓକିଲ ନିଯୁକ୍ତ କରି ମୋ ମୋକଦ୍ଦମା ତଦ୍‌ବିର କରିବେ । କିନ୍ତୁ ମୋର ମନେ ହେଉ ନାହିଁ, ସେଥିରେ କୌଣସି ସୁଫଳ ମିଳିବ । ପ୍ରମାଣ ତ ଅକାଟ୍ୟ ହୋଇ ଯାଇଛି । ମୋ ପାଦର ଦାଗ ଲଡ଼ ମୋସଲେଙ୍କ ଘୋଡ଼ାଶାଳରେ ଆଉ 'ଲାଇଟ୍‌ଫୁଟ୍' ମିଷ୍ଟାର ଜନ୍‌ଙ୍କ ଘୋଡ଼ାଶାଳରେ, ବନ୍ଧା ହୋଇଥିଲା ।

ତଥାପି ମୁଁ ମଧ୍ୟ ବିଶ୍ୱାସ କରେ, ଯଦି ମୁଁ ସଚେଷ୍ଟ ହୁଏ, ତାହାହେଲେ ଏହି ଅଭିଯୋଗରୁ ଅନାୟାସରେ ପରିତ୍ରାଣ ଲାଭ କରିପାରେଁ । କିନ୍ତୁ ମୁଁ ତାହା କରିବାକୁ ଚାହେଁ ନାହିଁ । ତାହା ହେଲେ ନାଓମି ଏହି ମୋକଦ୍ଦମାରେ ଜଡ଼ିତ ହୋଇ ପଡ଼ିବ । ମୋତେ କହିବାକୁ ହେବ, ନାଓମି ସହିତ ସାକ୍ଷାତ କରିବା ଲାଗି ମୁଁ 'ବେଟ୍‌ସି'ର ପିଠିରେ ଚଢ଼ି ଯାଇଥିଲି, କିନ୍ତୁ ଫେରିବା ବେଳେ ଅନ୍ଧକାରରେ 'ଲାଇଟ୍‌ଫୁଟ୍' ଉପରେ ଚଢ଼ି ଚାଲି ଆସିଛି । ନା, ନା, ତାହାହେଲେ ଘଟଣାଟା ବଡ଼ କଦର୍ଯ୍ୟ ହେବ । ନାଓମିକୁ ସ୍ୱୀକାର କରିବାକୁ ହେବ, ପ୍ରତି ମଙ୍ଗଳବାର ରାତିରେ ସମସ୍ତେ ଶୋଇ ପଡ଼ିଲେ ସେ ପଳାଇ ଆସି ମୋ ସହିତ ମିଳିତ ହୁଏ । ଚିର ଆଡ଼େ ତାହାର ବଦନାମ ରହିଯିବ । ଯଦି ନାଓମି କେଉଁ ଦିନ ମୋ ଠାରୁ ଯୋଗ୍ୟତର ବ୍ୟକ୍ତିକୁ ବିବାହ କରିବାକୁ ଇଚ୍ଛା କରେ, ତାହାହେଲେ ତାର କୌଣସି ଉପାୟ ନ ଥିବ ।

ନାଓମି ଜାଣେ, ମୁଁ ଘୋଡ଼ା-ଚୋର ନୁହେଁ । ସେ ଆହୁରି ଜାଣେ, କିପରି [illegible] ଭୁଲରେ ସେହି ରାତିରେ ମୁଁ 'ଲାଇଟ-ଫୁଟ୍'ରେ

ଚଢ଼ି ଘରକୁ ଫେରି ଆସିଛୁ, ଆଜ ଲର୍ଡ ମୋସଲେଙ୍କ ଘୋଡ଼ାଶାଳର ଦୁଆର ଖୋଲି ରଖି ଆସିଛୁ—ଯାହା ଫଳରେ 'ବେଟସି' ଘରକୁ ଫେରି ଆସି ପାରିଛି ।

ଲର୍ଡ ମୋସଲେ ଅଦାଲତରେ ସମସ୍ତଙ୍କୁ କହି ବୁଲୁଛନ୍ତି, ଏଥରେ ସେ ମୋତେ କୋଡ଼ିଏ ବର୍ଷ ଜେଲ ଦେଇ ସେହି କୋଡ଼ିଏଟି ଦିନ ଥିବା ବିପତ୍ନୀକ ବୃଦ୍ଧ ସହିତ ନାଓମିର ବିବାହ ଦେବେ । ଲର୍ଡ ମୋସଲେ ଦେଶରେ ଫୁଲ ପାଉଛନ୍ତି । ହଁ, ଫୁଲ ଉଠିବାର ସମୟ ଏଠା ଭାଙ୍ଗିବ । ସେ ମୋତେ ଗୋଟାଏ ଫାନ୍ଦରେ ପକାଇ ଦେଇ-ଛନ୍ତି । ହୁଏତ ନାଓମି କିଛି ପ୍ରକାଶ କରିବା ପୂର୍ବରୁ ମୋର ଜେଲ ବି ହୋଇଯିବ ।

କିନ୍ତୁ ମୁଁ ଗୋଟିଏ କଥା ନିଜକୁ ବାରମ୍ବାର ପଚାରୁଛି । ଯଦି ସୁଯୋଗ ଅନୁକୂଳ ହୁଏ, ତାହାହେଲେ ନାଓମି କଣ ଗୁପ୍ତ କଥା ପ୍ରକାଶ କରିଦେବ ? ସମସ୍ତେ ତ ଜାଣନ୍ତି, ମୁଁ ମିଷ୍ଟାର ଜନ୍‌ଙ୍କର ମୂଲିଆ । ସେହି କାରଣ ହେତୁ ହୁଏତ ନାଓମି ମୋ ବିଷୟରେ ଯାହା ଜାଣେ, ତାହା ବ୍ୟକ୍ତ କରିବା ପାଇଁ ଅଗ୍ରସର ହୋଇ ବି ନ ପାରେ ।

ମୁଁ ଶେରିଫଙ୍କୁ ଅକପଟ ଭାଷାରେ ଉପଲବ୍‌ଧି କରାଇ ପାରି-ଥାନ୍ତି, ଏହି ଗୋଳମାଳର ସୂତ୍ରପାତ କେଉଁଠି ଏବଂ କି ଉପାୟରେ ଏହି ଅଘଟନ ଘଟଣା ରୂପ ପରିଗ୍ରହ କରିଛି । କିନ୍ତୁ ପାଞ୍ଚ ଜଣଙ୍କ ଆଗରେ ନାଓମିର ନାମ ଉଲ୍ଲେଖ କରିବାଟା ମୋ ଅନ୍ତର ଅନୁ-ମୋଦନ କଲା ନାହିଁ । ତଥାପି ପନ୍ଦର ଦିନ ଆଗରୁ ଯଦି ମଙ୍ଗଳବାର ରାତି ହୋଇ ଥାଆନ୍ତା, ତାହାହେଲେ ମୁଁ—ନା, ନା, ସେହି କ୍ଷେତ୍ରରେ ବି ସବୁ କିଛି ଗୋଟାଏ କଦର୍ଯ୍ୟ କୁତ୍ସିତ କାହାଣୀର ରୂପ ପରିଗ୍ରହ କରିଥାନ୍ତା ।

ଯଦି ନାଓମି ଅଦାଲତକୁ ଆସି ଆମ ଗୁପ୍ତ ସମ୍ବନ୍ଧକୁ ସ୍ୱୀକାର କରେ, ତାହାହେଲେ ମୁଁ ଅବଶ୍ୟ ତାକୁ ବାଧା ଦେବ ନାହିଁ । କାରଣ ସେହି ସ୍ଥଳରେ ମୁଁ ବୁଝିବ ଯେ, ସେ ସମ୍ପୂର୍ଣ୍ଣ ନିଜ ଇଚ୍ଛାରେ ମୋତେ ଗ୍ରହଣ କରିବ ବୋଲି ସବୁ କିଛି ପ୍ରକାଶ କରିଛି ।

ଆଜି ତାହା ନ କରି ଯଦି ସେ ତା ଘରେ ବସି ରହେ, ଆଉ ଲର୍ଡ ମୋସଲେଙ୍କୁ ଓ ସେହି ବିପନ୍ନୀକ ବୃଦ୍ଧକୁ ବିନା ବାଧାରେ ମୋତେ କୋଡ଼ିଏ ବର୍ଷ କାରାଦଣ୍ଡରେ ଦଣ୍ଡିତ କରିବାକୁ ସୁଯୋଗ ଦିଏ, ତାହାହେଲେ ଭଲ, ମୁଁ କୋଡ଼ିଏ ବର୍ଷ ପାଇଁ ଜେଲ ଯିବି ।

ସବୁବେଳେ ମୁଁ ନାଓମିକୁ କହିଛି, ନାଓମି ପାଇଁ ମୁଁ ଏହି ପୃଥିବୀରେ ସବୁ କିଛି କରିପାରେ । ମୁଁ ନିଶ୍ଚିତ ଯେ ସେହି ସୁଯୋଗ ବର୍ତ୍ତମାନ ସମାଗତ—ଏହି ଥର ମୁଁ ପ୍ରମାଣ କରିବି, ମୋ କଥାର ମୂଲ୍ୟ ଅଛି କି ନା ।

—ଏରସ୍କିନ୍ କାଲ୍‌ଡଓ୍ୱେଲ୍

# ପ୍ରେମ ଲୀଳା

ସବୁ ଦିନ ପରି, ସାଢ଼େ ନଅଟା ବାଜିବା ଷଣି ହ୍ୱାର୍ଡ ମେକସ୍-ଓ୍ୱେଲ ତାଙ୍କ ଲେଡ଼ି ଷ୍ଟେନୋଗ୍ରାଫରଙ୍କୁ ସାଙ୍ଗରେ ଧରି ଅଫିସରେ ଆସି ପହଞ୍ଚିଲେ । କିଞ୍ଚିତ୍ ଆଗ୍ରହ, ବା କିଞ୍ଚିତ୍ ବିସ୍ମୟରେ ପିଟ୍ଟର୍ ତାଙ୍କ ଆଡ଼କୁ ଅନାଇଲା । ମେକ୍‌ସଓ୍ୱେଲ ଜଣେ ଦଲାଲ । ତାଙ୍କର ବୃତ୍ତି ହେଲା ଦଲାଲି । ପିଟ୍ଟର୍ ତାଙ୍କ କିରାଣି । କୌଣସି ମତେ ପିଟ୍ଟର୍‌କୁ ଥରେ ଅଭିବାଦନ ଜଣାଇ ମେକ୍‌ସଓ୍ୱେଲ ଧଡ଼୍ କରି ଯାଇ ନିଜ ଚୌକିରେ ବସି ପଡିଲେ । ତାପରେ କାଗଜ ପତ୍ର ଭିତରେ ସେ ବୁଡ଼ିଗଲେ ।

ପୂର୍ବ ବର୍ଷ ହେଲା ମହିଳାଟି ମେକ୍‌ସଓ୍ୱେଲଙ୍କ ଅଫିସରେ କାମ କରୁଛି । ମହିଳାଟି ଅତିଶୟ ସୁନ୍ଦରୀ । ଏଡ଼େ ସୁନ୍ଦରୀ ଯେ ଷ୍ଟେନୋଗ୍ରାଫର କାମ ତାକୁ ଶୋଭା ପାଏ ନାହିଁ । ତାର ଚାଲିଚଳଣ ବା ସାଜସଜା ବିଶେଷ କିଛି ନାହିଁ । ସେ କେଉଁ ଦିନ ହେଲେ ହାର ବା ବ୍ରାସଲେଟ୍‌ସ ପିନ୍ଧେ ନାହିଁ, କି ଗଳାରେ ଲକେଟଟିଏ ମଧ୍ୟ ଝୁଲେ ନାହିଁ । ସେ ଖଣ୍ଡିଏ ଧୂସର ରଙ୍ଗର ଜାମା ପିନ୍ଧିଥାଏ— ସାଧାସିଧା, ଆଉ ସେଥିରେ ସେ ଅତି ଚମତ୍କାର ଦେଖାଯାଏ । ସେ କଳା ରଙ୍ଗର ଟୋପି ମଥାରେ ଦିଏ । ସେଥିରେ ଖୁବ୍ ପରିଷ୍କାର

ପରିଛନ୍ନ ସୁନେଲୀ ସବୁଜ ରଙ୍ଗର କାକାତୁଆର ଗୋଟିଏ ପୁଚ୍ଛ ଖୋସା ଯାଇଥାଏ । ପିଚ୍ଚର୍‌ର ମନେ ହେଉଥିଲା, ସେ ଦିନ ଯେମନ୍ତି ତାର ଚେହେରାଟା ଆହୁରି ମଧୁର ଓ ଆହୁରି ଉଜ୍ଜ୍ୱଳ ଦେଖାଯାଉଥିଲା । ସ୍ୱପ୍ନଭରା ଆଖି ଦୁଇଟି ତାର ଯେମିତି ଆହୁରି ଟିକିଏ ପ୍ରଖର, ଏବଂ ମୁହଁ ଓ ଆଖିରେ ସୁଖ ଓ ସ୍ମୃତିର ଆବେଶ ।

ପିଚ୍ଚର୍ ଲକ୍ଷ୍ୟ କଲା, ମହିଳାଟି ଯେମିତି ଟିକିଏ ଅନ୍ୟମନସ୍କ । ଅନ୍ତ ଯେମିତି ସେ ସିଧା ନିଜ କୋଠରୀକୁ ଯାଏ, ତାହା ନ କରି କାହିଁକି କେଜାଣି ସେ ସେଠାରେ ଠିଆ ହୋଇ ରହି ଟିକିଏ ଡେରି କଲା । ସିଧା ସିଧା ମେକ୍ସଓ୍ୱେଲଙ୍କ ଟେବୁଲ କଡକୁ ଯାଇ ସେ ଠିଆ ହେଲା, ଯଦ୍ୱାରା ମେକ୍ସଓ୍ୱେଲ ଅନାୟାସରେ ତାହା ଜାଣି ପାରିବେ ।

କିନ୍ତୁ ସେତେବେଳେ ଟେବୁଲ ପାଖରେ ଯେଉଁ ଲୋକଟି ବସିଥିଲେ, ସେ ଆଉ ଯାହା ହୁଅନ୍ତୁ ପଛକେ, କିନ୍ତୁ ମଣିଷ ନୁହନ୍ତି । ସେତେବେଳକୁ ସେ ଯେମିତି ଗୋଟିଏ ଯନ୍ତ୍ରରେ ପରିବର୍ତ୍ତିତ ହୋଇ ଯାଇଛନ୍ତି ।

'କିଛି କହିବାର ଅଛି ?' ତୀକ୍ଷ୍ଣ କଣ୍ଠରେ ମେକ୍ସଓ୍ୱେଲ ତାକୁ ପଚାରିଲେ । ଧୂସର ଚକ୍ଷୁର ତୀକ୍ଷ୍ଣ ଦୃଷ୍ଟି ଅସ୍ଥିରତାରେ ଚକ୍ ଚକ୍ ହେବାକୁ ଲାଗିଲା ।

'ନା', ମହିଳାଟି ଜବାବ ଦେଲା, ଏବଂ ତାପରେ ମୃଦୁ ମୃଦୁ ହସି ପିଚ୍ଚର୍ ଆଡ଼କୁ ଆଗେଇଗଲା ।

'ଅଚ୍ଛା, ମିଷ୍ଟର ମେକ୍ସଓ୍ୱେଲ କଣ କାଲି ଆପଣଙ୍କୁ ଜଣେ ନୂଆ ଷ୍ଟେନୋଗ୍ରାଫର ନିଯୁକ୍ତ କରିବାକୁ କହିଥିଲେ ?' ମହିଳାଟି ପିଚ୍ଚର୍‌କୁ ପ୍ରଶ୍ନ କଲା ।

'ହଁ, ଆଉ ଜଣେ ଷ୍ଟେନୋଗ୍ରାଫର କଥା ସେ କାଲି କହି-
ଥିଲେ', ପିଟର୍ କହିଲା । 'ମୁଁ ତ ସେମାନଙ୍କ ଏଜେନ୍‌ସିକୁ ଖବର
ପଠାଇଥିଲି । ଆଜି ସକାଳେ ଜଣକୁ ପଠାଇ ଦେବା ପାଇଁ ମୁଁ ତାଙ୍କୁ
କହିଥିଲି । କିନ୍ତୁ କାହିଁ, ଏତେ ବେଳ ଯାଏ ତ କାହାରି ହେଲେ
ଦେଖା ଦର୍ଶନ ବି ନାହିଁ ।'

'ତାହାହେଲେ ଯାଉଛି, ଯେତେବେଳ ଯାଏ ମୋ ସ୍ଥାନରେ
ଆଉ ଜଣେ କେହି ନ ଆସିଛି ମୁଁ ଯାଇ କାମ କରୁଛି ।'

ମହିଳାଟି ତା ଟେବୁଲ ପାଖକୁ ଗଲା ।

ଖାଲିଟେ ତ ଦଲାଲମାନେ ଟିକିଏ ଅତି ବ୍ୟସ୍ତ । ତା ଉପରେ
ସେ ଦିନ ମେକ୍‌ସଓ୍ୱେଲଙ୍କର କାମର ଚାପ ଫେର୍ ବେଶି ପଡ଼ୁଛି ।
ଟେବୁଲ ଉପରେ ଟେଲିଫୋନଟା ବାରମ୍ବାର ବାଜି ଉଠୁଛି । ସୁଅ
ଭଳି ଲୋକମାନେ ଆସିବା ଯିବା କରୁଛନ୍ତି । ପିଅନଗୁଡ଼ାକ ଖବର
ଓ ଟେଲିଗ୍ରାମ ଧରି ଧଇଁ ସଇଁ ହୋଇ ଘର ଭିତରେ ପ୍ରବେଶ କରୁ-
ଛନ୍ତି ଏବଂ ପୁଣି ବାହାରି ଯାଉଛନ୍ତି । କିରାଣୀମାନେ ଝଡ଼-ବତାସରେ
ପଡ଼ିଥିବା ନାବିକଙ୍କ ପରି ଗୋଟିଏ ଦିଗରୁ ଅନ୍ୟ ଦିଗକୁ ଛୁଟିକି
ପଡ଼ୁଛନ୍ତି ।

ଏକ୍‌ସଚେଞ୍ଜ ଅଫିସରେ ତ ଝଡ଼-ଝଞ୍ଜା, ଗ୍ଳେସିୟର ଓ
ଅଗ୍ନ୍ୟୁତ୍‌ପାତ ଏକା ସାଙ୍ଗରେ ଆରମ୍ଭ ହୋଇ ଯାଇଛି । ଆଉ
କହିଁରୁ କିଞ୍ଚିତ୍ ଧକ୍‌କା ଆସି ମେକ୍‌ସଓ୍ୱେଲଙ୍କ ଅଫିସରେ ବାଜୁଛି ।
ଚୌକିଟାକୁ କାନ୍ଥରେ ଠେସ ଦେଇ ମେକ୍‌ସଓ୍ୱେଲ ବସିଛନ୍ତି,
ଏବଂ ଅତି ଦ୍ରୁତ ହସ୍ତରେ ବ୍ୟବସାୟ ସମ୍ବନ୍ଧୀୟ ଆଦାନ-ପ୍ରଦାନ
ସମ୍ପନ୍ନ କରି ଯାଉଛନ୍ତି ।

ଗୋଟିଏ ନିଦାରୁଣ କାର୍ଯ୍ୟର ଚାପ ଭିତରେ ଥାଇ ସୁଦ୍ଧା
ମେକ୍‌ସଓ୍ୱେଲ ହଠାତ୍ ଗୋଛାଏ ସୁନେଲି କେଶ ଦେଖି ପାରି

ସଚେତନ ହୋଇଗଲେ । ଜଣେ ଯୁବକ ତାଙ୍କ ପାଖରେ ଆସି ଠିଆ ହୋଇଛି । ମଥାରେ ଭେଲ୍‌ଭେଟ ଟୋପି, ଦେହରେ ନକଲି ସିଲ୍କ ଜାମା । ବଦନ ମଣ୍ଡଳଟି ଖୁବ୍ ସୁପ୍ରଫୁଲ୍ଲ । ପିଚ୍ଚର୍ ମେକ୍‌ସ୍‌ଓୟେଲଙ୍କ ସହିତ ମହିଳାଟିର ପରିଚୟ କରାଇ ଦେଲା ।

'ଷ୍ଟେନୋଗ୍ରାଫର ଏଜେନ୍‌ସିରୁ ଏହାଙ୍କୁ ପଠାଇଛନ୍ତି ।'

ମେକ୍‌ସ୍‌ଓୟେଲ ବୁଲି ବସିଲେ । ଦୁଇ ହାତରେ କାଗଜ ଓ ଦଲିଲପତ୍ର ଭର୍ତ୍ତି ।

'କାହିଁକି ?' ଭ୍ରୂକୁଞ୍ଚିତ କରି ମେକ୍‌ସ୍‌ଓୟେଲ ପଚାରିଲେ ।

'ଜଣେ ଷ୍ଟେନୋଗ୍ରାଫର ପଠାଇବା ପାଇଁ କାଲି ଆପଣ ତାଙ୍କ ଅଫିସକୁ ଖବର ଦେବା ଲାଗି ମୋତେ କହିଥିଲେ ।'

'ତୁମେ ଭୁଲ୍ କରୁଛ, ପିଚ୍ଚର୍ । ମୁଁ କାହିଁକି ଷ୍ଟେନୋଗ୍ରାଫର କଥା କହିବାକୁ ଯିବି ? ବର୍ଷେ ହେଲା ମିସ୍ ଲେସଲି ତ କାମ କରୁଛନ୍ତି, ଆଉ ସେ ତ କାମ ଖୁବ୍ ଭଲ କରୁଛନ୍ତି । ଯେତେ ଦିନ ତାଙ୍କର ଇଚ୍ଛା, ଭବିଷ୍ୟତରେ ମଧ୍ୟ ସେ କାମ କରିବେ । ନା, ନାଁ, ଏଠାରେ କୌଣସି ଚାକିରି ଖାଲି ନାହିଁ । ଆଉ ପିଚ୍ଚର୍, ତୁମେ ସେମାନଙ୍କୁ ବାରଣ କରିଦିଅ, ସେମାନେ ଯେମିତି ଆଉ ଲୋକ ନ ପଠାନ୍ତି ।'

ମହିଳାଟି ରାଗି ଚାଲିଗଲା । ପିଚ୍ଚର୍ ଖାଜାଞ୍ଚିକୁ କହିଲା, 'ଦେଖୁଛନ୍ତି, ଦିନକୁ ଦିନ ଜପରି ଭଦ୍ରଲୋକଙ୍କର ଭୁଲ୍ ବଢ଼ୁଛି ? ଦିନକୁ ଦିନ ସେ ଯେମିତି ଅଧିକ ଅନ୍ୟମନସ୍କ ହୋଇ ଯାଉଛନ୍ତି ।'

କାର୍ଯ୍ୟର ଗତି କ୍ରମେ ଦ୍ରୁତତର ହେଉଛି । ବିକାକିଣାର ବରାଦ ହୁ ହୁ ହୋଇ ଆସୁଛି ଏବଂ ସେହିପରି ହୁ ହୁ ହୋଇ ବାହାରକୁ ବାହାରି ଯାଉଛି । ମେକ୍‌ସ୍‌ଓୟେଲ ଯନ୍ତ୍ର ପରି କାମ କରି ଯାଉଛନ୍ତି, ଗୋଟିଏ ଶକ୍ତିଶାଳୀ ସୂକ୍ଷ୍ମ ଯନ୍ତ୍ର ପରି । ପ୍ରାଣପଣ ଶକ୍ତିରେ

ଯନ୍ତ୍ରଟା କାମ କରିବାରେ ଲାଗିଛି । ଏତକ ଟିକିଏ ହେଲେ କେଉଁଠି ଭୁଲ୍ ହେଉ ନାହିଁ, ମିନିଟିଏ ବି ସେ ଚହି ଯାଉ ନାହାନ୍ତି, କି ଏକ ମୁହୂର୍ତ୍ତ ସୁଦ୍ଧା ଇତସ୍ତତଃ କରୁ ନାହାନ୍ତି । ପ୍ରତ୍ୟେକଟି ଶବ୍ଦ, ପ୍ରତ୍ୟେକଟି ସିଦ୍ଧାନ୍ତ ଯେମିତି ଆଗରୁ ତିଆରି ହୋଇ ରହିଥିଲା । ଲାଭ, କ୍ଷତି, ବନ୍ଧକ, ଋଣ—ପୂରାପୂରି ଟଙ୍କାର ରାଜ୍ୟ । ବାହାର ଜଗତର ବା ପ୍ରକୃତିର ତାହା ଭିତରେ କୌଣସି ସ୍ଥାନ ନାହିଁ ।

ମଧ୍ୟାହ୍ନ ଭୋଜନ ସମୟ ଠାରୁ କାମର ଚାପ ଟିକିଏ କମି ଆସିଲା ।

ମେକ୍‌ସ୍‌ଓ୍ୱେଲ ଉଠି ଠିଆ ହେଲେ । ଗୋଟିଏ ହାତରେ କେତେଗୁଡ଼ିଏ ଟେଲିଗ୍ରାମ, ଅନ୍ୟ ହାତରେ ଗୋଛାଏ କାଗଜପତ୍ର । ଡାହାଣ କାନରେ ଗୋଟାଏ କଲମ ଖୋସା ଯାଇଛି । ବିଶୃଙ୍ଖଳ କେଶଗୁଡ଼ିକ କପାଳ ଉପରେ ଆସି ପଡ଼ିଛି । ଘରର ଝରକାଟା ଖୋଲା । ବସନ୍ତ ସମୟ, ତେଣୁ ଟିକିଏ ଗରମ ମଧ୍ୟ ପଡ଼ୁଛି ।

ହଠାତ୍ ଝରକା ଭିତରେ ଲାଇଲାକର ମୃଦୁ ମଧୁର ଗନ୍ଧ ଭାସି ଆସିଲା । ମେକ୍‌ସ୍‌ଓ୍ୱେଲ ମୁହୂର୍ତ୍ତକ ପାଇଁ ବିଭୋର ହୋଇଗଲେ । ଗନ୍ଧଟା ମିସ୍ ଲେସ୍‌ଲିଙ୍କ କୋଠରୀ ଆଡ଼ୁ ଆସୁଛି । ମେକ୍‌ସ୍‌ଓ୍ୱେଲଙ୍କର ମନେ ହେଲା, ଗନ୍ଧ ନୁହେଁ, ସ୍ୱୟଂ ଲେସ୍‌ଲି ଆସି ଯେମିତି ତାଙ୍କ ଆଗରେ ଠିଆ ହୋଇଛି । ଅର୍ଥର ଯେଉଁ ଜଟିଳ ଜଗତରେ ଏତେ ବେଳ ଯାଏ ସେ ବୁଡ଼ି ରହିଥିଲେ, ସେହି ଜଗତଟା ଧୀରେ ଧୀରେ ତାଙ୍କ ପାଖରୁ ଘୁଞ୍ଚିଗଲା । ପାଟରେ ଲେସ୍‌ଲିଙ୍କ କୋଠରୀ—ବେଶୀ ଦୂର ନୁହେଁ । ଏଠାରୁ ପ୍ରାୟ କୋଡ଼ିଏ ପାହୁଣ୍ଡ ।

'ଆଗ କାମତକ ଏକ୍ଷଣି ସାରିଦିଏ—ହଁ,' ଧୀର ଗଳାରେ ମେକ୍‌ସ୍‌ଓ୍ୱେଲ କହିଲେ । 'ବର୍ତ୍ତମାନ ଲେସ୍‌ଲିକୁ ଡକିବେ । ଏହା

ଆଗରୁ ମୋର ପଚାରିବା ଉଚିତ ଥିଲା । କାହିଁକି ଯେ କରି ନାହିଁ ।'

ତା ପରେ ସେ ଦ୍ରୁତ ପଦରେ ଲେସ୍‌ଲିର କୋଠରୀରେ ଯାଇ ପ୍ରବେଶ କଲେ, ଏକବାରେ ଲେସ୍‌ଲିର ଟେବୁଲ ଆଗରେ ଯାଇ ଠିଆ ହେଲେ ।

ଲେସ୍‌ଲି ମେକ୍‌ସୱେଲଙ୍କ ଆଡ଼କୁ ଚାହିଁ ମୃଦୁ ହସିଲା । ତାର ମୁଖ ମଣ୍ଡଳରେ ଟିକଏ ଗୋଲାପୀ ଆଭା ଦେଖା ଗଲା । ତାର ଚକ୍ଷୁର ଦୃଷ୍ଟି କରୁଣ ଓ ସହଜ ହୋଇଗଲା । ମେକ୍‌ସୱେଲ ଲେସ୍‌ଲିର ଟେବୁଲ ଉପରେ କହୁଣୀ ରଖି ବସି ପଡ଼ିଲେ । କଲମଟି ସେତେବେଳେ ଯାଏ ବି ତାଙ୍କ କାନରେ ଖୋସା ହୋଇଥାଏ ଏବଂ ବି ହାତ ନାନା ରକମ କାଗଜ ପତ୍ରରେ ଭର୍ତ୍ତି ହୋଇ ଯାଇଥାଏ ।

'ମୋ ହାତରେ ମାତ୍ର ମିନିଟିଏ ସମୟ ଅଛି,' ମେକ୍‌ସୱେଲ୍ ହଠାତ୍ କହିବାକୁ ଆରମ୍ଭ କଲେ । 'ସେହି ମିନିଟିକ ଭିତରେ ମୁଁ ତୁମକୁ ଗୋଟାଏ କଥା କହିବାକୁ ଆସିଛି । ବିଳମ୍ବ କରିବାକୁ ଆଉ ସମୟ ନାହିଁ । ଆଚ୍ଛା ଲେସ୍‌ଲି, ତୁମେ ମୋତେ ବିଭା ହେବ, ମୋର ସ୍ତ୍ରୀ ହେବ ? ଅବଶ୍ୟ ବେଳ ପାଇ ନାହିଁ ବୋଲି ଆଉ ସମସ୍ତଙ୍କ ପରି ମୁଁ ତୁମ ସାଙ୍ଗରେ ପ୍ରେମ କରିପାରି ନାହିଁ, କିନ୍ତୁ ମନେ ମନେ ମୁଁ ତୁମକୁ ପ୍ରକୃତରେ ଭଲ ପାଏ । କୁହ, ମୋ କଥାର ଜବାବ ଦିଅ—ଖୁବ୍ ଶୀଘ୍ର । ଲୋକମାନେ ଫେର୍ ସେଠାରେ ପାଟିଗୋଳ କରୁଛନ୍ତି ।'

'ଆପଣ ଏ କଣ କହୁଛନ୍ତି !' ଲେସ୍‌ଲି ଉଠି ଠିଆ ହେଲା । ତାର ଆଖି ଦୁଇଟି ବିସ୍ମୟରେ ଗୋଲ ହୋଇ ଯାଇଛି ।

'କାହିଁକି, ତୁମେ କଣ ବୁଝି ପାରୁ ନାହଁ ?' ମେକ୍‌ସୱେଲ କହିଲେ, 'ମୋର ଇଚ୍ଛା, ତୁମେ ମୋତେ ବିଭା ହୁଅନ୍ତ । ମିସ୍ ଲେସ୍‌ଲି, ମୁଁ ତୁମକୁ ଭଲ ପାଏ । ତେଣୁ ଯେମିତି କାମର ଚାପ

ଚିକିଏ କମି ଯାଇଛି, ଯେମିତି ଏକ ମୂହୂର୍ତ୍ତ ସମୟ ପାଇ ଯାଉଛି, ତୁମକୁ ସେଇ କଥା ଜଣାଇ ଦେବା ପାଇଁ ମୁଁ ଦୌଡ଼ି ଅସିଛି । ପୁଣି ଯେମିତି କିଏ ଫୋନରେ ଡାକୁଛି । ପିଟ୍ଚର୍, ସେମାନଙ୍କୁ ଏକ ମିନଟ ଅପେକ୍ଷା କରିବାକୁ କୁହ । ଏଇ ମୁଁ ଆସୁଛି । କି, ଜବାବ ଦେଲ ନାହିଁ ଯେ ? ମୋତେ ବନ୍ଧୁ ହେବାକୁ ସ୍ବୀକାର ନାହିଁ ?'

ପ୍ରଥମେ ଲେସ୍‌ଲି ଯେମିତି ବିସ୍ମୟରେ ହତବାକ୍ ହୋଇଗଲା । ତା ପରେ ହଠାତ୍ ତା ଆଖିରୁ ଲୋତକ ଗଡ଼ିବାକୁ ଲାଗିଲା । ସେଇ ଅଶ୍ରୁସିକ୍ତ ଚକ୍ଷୁରେ ଲେସ୍‌ଲି ହସିଲା । ଗୋଟିଏ ହାତରେ ମେକ୍ସ-ଓ୍ୱେଲଙ୍କ ଗଳା ଭିଡ଼ି ଧରି ସେ କହିଲା,'ଏକ୍ଷଣି ବୁଝି ପାରିଲି । ଏଇ ବ୍ୟବସାୟ ହିଁ ତୁମକୁ ପୃଥିବୀର ସବୁ କିଛି ଠାରୁ ଦୂରକୁ ଠେଲିନେଇ ଯାଉଛି । କେବଳ ବ୍ୟବସାୟର ଚିନ୍ତା ହିଁ ଦିନ ରାତି ତୁମ ମଥାରେ ଖେଳୁଛି । ପ୍ରଥମେ ମୋତେ ତ ଡରାଇ ଦେଇଥିଲ । ଆଚ୍ଛା, ହାର୍‌ଭି, କାଲି ସନ୍ଧ୍ୟା ଆଠଟା ବେଳେ 'ଲିଟ୍‌ଲ ଚର୍ଚ୍ଚ'ରେ ଯେ ଆମର ବିବାହ ହେଲା, ତାହା କଣ ଏହା ଭିତରେ ଭୁଲିଗଲଣି ?'

— ଓ ହେନେରୀ

# ମରୁଭୂମିରେ ମଦ

କଣ୍ଠନାଳୀରେ ଭୟଙ୍କର ପିପାସା ଛଡ଼ା ବର୍ତ୍ତମାନ ତାର ଆଉ କୌଣସି ତାଡ଼ନା ନ ଥିଲା । ଉଷ୍ଟ୍ରଟି ଧୀର ଗତିରେ ଅଗ୍ରସର ହେଉଥିଲା । ଟୋମାର ଘରେ ସୁନିଶ୍ଚିତ ଶୀତଳ ପାଣିପୂର୍ଣ୍ଣ ଆଶ୍ୱାସ ଥିଲା । ସେଥିପାଇଁ ବୋଧହୁଏ ବର୍ତ୍ତମାନ ଏହି ଶୁଷ୍କତାର ଶେଷ ମୁହୂର୍ତ୍ତଗୁଡ଼ିକ ଉଷ୍ଟ୍ରଟି ଓଠରେ ଜିଭ ବୁଲାଇ ଉପଭୋଗ କରୁଥିଲା । ସତରେ, ତାର ଯିବା ପାଇଁ କୌଣସି ତାଡ଼ନା ନ ଥିଲା । କହିବାକୁ ଗଲେ ପୂରା ଚଉଦ ଘଣ୍ଟା ସମୟ ଧରି ସେ ତାର ଘୋଡ଼ା ଛୁଟାଇ-ବାରେ ଲାଗିଛି । କାରଣ କାଲି ଭୋର ହେବା ଆଗରୁ ତାର ମୃତ ଦେହର କୌଣସି ଚିହ୍ନବର୍ଣ୍ଣ ମିଳିବ ନାହିଁ । ଯଦି ବା ପତ୍ତା ମିଳେ, ଲୋକବାକ ଯୋଗାଡ଼ କରି ତାର ଅନୁସନ୍ଧାନରେ ବାହାରିବାକୁ ଶେରିଫର ଆହୁରି କେତେ ଘଣ୍ଟା କଟିଯିବ । କିମ୍ବା ଏହା ବି ହୋଇପାରେ, ଶେରିଫ ବୋକାଙ୍କ ଭଳି ଏକା ଏକା ତାର ପଶ୍ଚାତ୍‌ଧାବନ କରିବାକୁ ଚେଷ୍ଟା କରିବ ।

ଟୋମାର ଘରର ବାୟୁ-ଯନ୍ତ୍ରର ଚକ ଓ ପଙ୍ଖା ଉଷ୍ଟ୍ରଟି ଦୂରରୁ ପ୍ରାୟ ଏକ ଘଣ୍ଟାରୁ ଅଧିକ ସମୟ ହେଲା ଦେଖିବାକୁ ପାଉଛି, କିନ୍ତୁ ସେତେବେଳେ ବି ତାର ଅଙ୍ଗୁର କ୍ଷେତ ଦୃଷ୍ଟି ଗୋଚର ହୋଇ ନ ଥିଲା । ଅଙ୍ଗୁର ଲତାପୁଞ୍ଜ ଡାଳ ଜମିରେ ଲଗା

ହୋଇଛି । ତେଣୁ ଶେଷ ମୁଣ୍ଡି ଆଉ ମଥାରେ ନ ପହଞ୍ଚିବା ଯାଏ ସେଗୁଡ଼ିକ ଠଉରାଇବା ସମ୍ଭବ ନୁହେଁ । ବର୍ଷା ଦିନରେ ଜଳ ଗଡ଼ି ଆସି ଢାଲୁ ଜମିରେ ଗୋଟାଏ ଜାଗାରେ ଜମା ହୁଏ । ଟେମ୍ପି କହେ, ସେଥିରେ ଅଙ୍ଗୁର ଚାଷର ଖୁବ୍ ସୁବିଧା ହୁଏ । ବର୍ଷା ଜଳ ମରୁଭୂମିର ବାଲି ସ୍ତର ଭେଦ କରି ତା ତଳେ ଥିବା କଙ୍କରିଲ ଆସ୍ତରଣ ଦେଇ ଖୁବ୍ ତଳକୁ ଚାଲିଯାଏ ଏବଂ ସେଠାରେ ଚାଲି ଚାଲି କର୍ଦ୍ଦମ ପରିପୂର୍ଣ୍ଣ ଏକ କୂପ ମଧ୍ୟରେ ଜଳ ସଞ୍ଚିତ ହୋଇ ଜମିକୁ ସରସ କରି ରଖେ ।

ଗ୍ରୀଷ୍ମ ଋତୁର ମଝାମଝି ବେଳକୁ କୂପ ଶୁଖିଯାଏ । କିନ୍ତୁ ତାର ଢେର ଆଗରୁ ଟେମ୍ପି କୂପର ପ୍ରତିଟି ଜଳକଣା ପମ୍ପ ଦ୍ୱାରା ଉଠାଇ ନେଇ କେତୋଟି ଜଳାଧାର ଭିତରେ ସାଇତି ରଖିଦିଏ । ଟେମ୍ପି ଶସ୍ତା ଟିଣରେ ଏହି ଜଳାଧାରଗୁଡ଼ିକ ତିଆରି କରିଥିଲି । ଟ୍ରେଟ ଟ୍ରେଟ ନଳ ସାହାଯ୍ୟରେ ଜଳାଧାରରୁ ସଞ୍ଚିତ ଜଳ ଅଙ୍ଗୁର କ୍ଷେତକୁ ନେଇ ଯିବାକୁ ହୁଏ ଏବଂ ଏହିପରି ଭାବରେ ବର୍ଷା ଋତୁ ନ ଆସିବା ଯାଏ ଜଳ ସିଞ୍ଚି ସିଞ୍ଚି ଅଙ୍ଗୁର ଲତାଗୁଡ଼ିକୁ ସଞ୍ଜୀବିତ କରି ରଖାଯାଏ । ତା ପରେ ହୁଏତ ନଭେମ୍ବରର କେଉଁ ଏକ ଦିବସରେ ଆକାଶରେ କଳା ମେଘ ଘୋଟିଯାଇ ଝର ଝର ହୋଇ ବୃଷ୍ଟି ପଡ଼େ ଏବଂ ତୃଷିତା ଧରଣୀ ଯେମିତି ଢକ ଢକ କରି ସେହି ଜଳ ଚକ ପାନ କରିଯାଏ । ଊର୍ଣ୍ଣି ଆଗରୁ ଆଉ ଥରେ ଯେତେବେଳେ ଏଠାକୁ ଆସିଥିଲା, ସେ ସ୍ୱଚକ୍ଷୁରେ ମୃତ୍ତିକାର ଏହି ସଶବ୍ଦ ଜଳପାନ ପ୍ରତ୍ୟକ୍ଷ କରିଥିଲା । ସୁଦୀର୍ଘ ନିଦାଘର ମଧ୍ୟବର୍ତ୍ତୀ ସମୟରେ ସେ ଏହି ପ୍ରଥମ ଥର ପାଇଁ ଏହି ଜାଗାଟିକୁ ଦେଖିଲା ।

ଊର୍ଣ୍ଣିର ଦୃଷ୍ଟିରେ ବାୟୁ-ଯନ୍ତ୍ରଟି ଯେପରି ଗୋଟିଏ ପବିତ୍ର ପ୍ରତୀକ ପରି ମନେ ହେଲା, ୧ଙ୍କ କୋଡ଼ିଏଟି ଆଲକାତରାରେ ରଞ୍ଜିତ

ଝର୍ଣ୍ଣା ଜଳାଧାର ତାର ନଷ୍ଟନ ମନକୁ ସରସ କରି ପକାଇଲା । କିନ୍ତୁ ସଙ୍ଗେ ସଙ୍ଗେ ତାର ଶରୀରରୁ ଖୁବ୍‌ଶୀଘ୍ର ଭାବରେ ସ୍ୱେଦ ନିର୍ଗତ ହେଲା । ପ୍ରଚଣ୍ଡ ଗରମ, ପବନର ନାମ ଗନ୍ଧ ନାହିଁ । ଚତୁର୍ଦ୍ଦିଗ ନିସ୍ତବ୍ଧ, ନିଥର । ଅଙ୍ଗୁର ଲତାଗୁଡ଼ିକରେ ପଡ଼ିଲା ଲାଲ ଧୂଳିର ଆସ୍ତରଣ । ସେଗୁଡ଼ିକ ନିତାନ୍ତ ମୃତପ୍ରାୟ ଓ ବିବର୍ଣ୍ଣ ଦିଶୁଥିଲା । ଅଙ୍ଗୁରସବୁ ତୋଳା ହୋଇ ଯାଇଛି, ନୂଆ ମଦ ତିଆରି ସରିଛି । ଅଙ୍ଗୁର ନ ଥିବାରୁ ପତ୍ରଗୁଡ଼ାକ ନାଙ୍ଗିଆ ଦିଶୁଥିଲା ।

ଡ୍ରୁବର୍ଣ୍ଣ ଘୋଡ଼ା ଦୌଡ଼ାଇ ଘରର ଦୁଆର ମୁହଁରେ ଆସି ପହଞ୍ଚିଗଲା । ସଦର ଦରଜା ଟପି ସେ ଭିତରର ଅଗଣାରେ ଆସି ଠିଆ ହେଲା । ସେଇଟି ଅଗଣାଟିର ତିନି ଦିଗ ଗୋଟିଏ ପୁଷ୍ପିତ ଲତାରେ ମଣ୍ଡିତ । ଡ୍ରୁବର୍ଣ୍ଣ ଲତାଟିର ନାମ ଜାଣେ ନାହିଁ । କିନ୍ତୁ ତାର ସ୍ୱର୍ଣ୍ଣଗର୍ଭ ବଡ଼ ବଡ଼ ଧଳା ଫୁଲଗୁଡ଼ିକର ଗନ୍ଧ କି ମଧୁର ! ଚତୁର୍ଦ୍ଦିଗର ବାୟୁମଣ୍ଡଳ ଯେପରି ସେହି ଗନ୍ଧରେ ମଥିତ ହୋଇ ଯାଇଛି । ସେହି ମୁହୂର୍ତ୍ତରେ ଡ୍ରୁବର୍ଣ୍ଣଙ୍କୁ ଏହି ସୁମିଷ୍ଟ ଗନ୍ଧ ଭଲ ଲାଗିଲା ନାହିଁ । ତାହା ଯେମିତି ତାକୁ ଆହୁରି ତୃଷାର୍ତ୍ତ କରି ପକାଇଲା ।

ଘୋଡ଼ାର ଲଗାମ ଫିଙ୍ଗି ଦେଇ ଡ୍ରୁବର୍ଣ୍ଣ ଘର ଭିତରେ ପ୍ରବେଶ କଲା । ହାଣ୍ଡିଶାଳର ବାହାରେ ଘରର ଏକ ପାଖରେ ଜଳକୁ ଶୀତଳ ରଖିବାର ଉପକରଣ । ଏକ ପ୍ରକାର ଛିଦ୍ର ବିଶିଷ୍ଟ ପଥରରେ ନିର୍ମିତ ଦୁଇଟି କଳସୀ । ଜିନିଷ ଦୁଇଟି ଅତିଶୟ ପୁରା-ତନ । ଛିଦ୍ର ବାଟେ ଯେଉଁ ତରଳ ପଦାର୍ଥ ଥପ ଥପ ହୋଇ ପଡ଼ୁଥିଲା, ତାହା, କଳସୀର ଭିତରଟାକୁ ଥଣ୍ଡା ରଖୁଥିଲା । ବାମ ଦିଗର କଳସୀରେ ରହିଛି ଜଳ, ଆଉ ଡାହାଣ ଦିଗରେ ମଦ । ଉଭୟ କଳସୀ ନିକଟରେ, ଗୋଟିଏ ଲେଖାଏଁ ଟିଣର ପାତ୍ର କଣ୍ଠାରେ

ଝୁଲୁ ହୋଇଛି । ଡ୍ରୁଣି ବାମ ହାତର କଳସୀର ଢାଙ୍କୁଣୀ ସବେଗରେ ଖୋଲି ପକାଇଲା, ଟିଣର ପାତ୍ରଟିକୁ କଳସୀ ଭିତରେ ବୁଡ଼ାଇ ଦେଲା ଏବଂ କଳସୀ ଭିତରେ ଥିବା ପରମ ରମଣୀୟ ଶୀତଳତା ତାର ହାତକୁ ହେମାଳ କରିଦେଲା ।

"ଏ, ଟୋମି", ଡ୍ରୁଣି ଡାକ ଛାଡ଼ିଲା । ତାର ତୃଷାର୍ତ୍ତ ଶୁଷ୍କ କଣ୍ଠରେ ସେହି ଡାକ ଗଁ ଗଁ ଚତ୍କାର ପରି ଶୁଭିଲା । ଜଳ ପିଇ ସେ ପୁଣି ଡାକିଲା, "ଟୋମି" ! ଏଥର ତାର ଗଳାଟା ଅନେକ ପରିମାଣରେ ପରିଷ୍କାର ଶୁଣାଗଲା ।

ଦୂରରୁ ଗୋଟିଏ କଣ୍ଠର ସ୍ୱର ଆସିଲା ।

ଡ୍ରୁଣି ଆଉ ଏକ ପାତ୍ର ଜଳ ଢକ ଢକ କରି ପିଇଦେଲା । ପିଇବା ବେଳେ ତିକ୍ତ ଧୂଳିର ଗନ୍ଧ ଆସି ତାର ନାକରେ ବାଜିଲା । ତାର ପୋଷାକରୁ ଏହି ଧୂଳିର ଗନ୍ଧ ବାହାରୁଥିଲା । ଡ୍ରୁଣିର ମନେ ହେଲା, ଯେମିତି ଘରେ ଆଲୋକ ବିକୀର୍ଣ୍ଣ ହୁଏ ଠିକ୍ ସେମିତି ଘରେ ତାର ପୋଷାକରୁ ଓ ତାର ଦେହରୁ ତାପ ବିକୀର୍ଣ୍ଣ ହେଉଛି ଏବଂ ସେହି ତାପ ଗୃହର ସ୍ୱମ-ଶୀତଳତା ଶୋଷି ନେଉଛି । ମାଟିରେ ଟୋମିର କାଠ-ପାଦର ଖଟ ଖଟ ଶବ୍ଦ ଶୁଣିବାକୁ ମିଳିଲା । ଡ୍ରୁଣିର ଓଠରେ ଚକିତ ମୃଦୁ ହସର ଆଭାସ ଦେଖା ଦେଲା । ଟୋମି ତାର କାଠ-ପାଦର ଋଜୁତା ସହିତ ସମତାଳ ରଖି ହାଲି ଦୋହଲି ଘରେ ପ୍ରବେଶ କଲା । ତାର ଚମ୍ପାଳିଆ ମୁହଁଟା ସ୍ୱେଦରେ ଉଜ୍ଜ୍ୱଳ ଦିଶୁଥିଲା, ଯେମିତି ଗୋଟାଏ ଆଲୋକର ରେଖା ତାର ମୁଖ ଉପରେ ପ୍ରତିଫଳିତ ହୋଇଥିଲା ।

"ଆରେ ଡ୍ରକ୍ ସେ", ଟୋମି କହିଲା । "କେତେ ଦିନ ପରେ ତୁମେ ଆସିଲ କୁହତ ।......ଜୁଲିଆ ତୁମକୁ ଦେଖିଥିଲେ କି ଆନନ୍ଦ ନ ହୋଇଥାନ୍ତା !"

"କାହିଁକି ? ସେ କଣ ଏଠାରେ ନାହିଁ କି ?" ଜଳପାତ୍ରରୁ ସହସା ମୁହଁ ଉଠାଇ ଡୁବ୍ରାଣ୍ଟି ତାକୁ ପଚାରିଲା ।

"ଜୁଲିଆ ନୋଗାଲେଜକୁ ଚାଲି ଯାଇଛି । ଏଠାରେ ଏତେ ଗରମ ଯେ ମୁଁ ତାକୁ କହିଲି, 'ଜୁଲିଆ, ତୁ ନୋଗାଲେଜକୁ ଚାଲିଯା । ସେଠାରେ ସବୁବେଳେ ପବନ ବହୁଥାଏ, ଗରମରେ ଏମିତି ଛଟପଟ ହେବୁ ନାହିଁ ।' ସେ ଯିବାକୁ ରାଜି ନ ଥିଲା, କାନ୍ଦୁଥିଲା । କିନ୍ତୁ ମୁଁ ତାକୁ ବାଧ୍ୟ କରି ପଠାଇ ଦେଇଛି ।"

"ସେ କଣ ସତରେ କାନ୍ଦୁ ଥିଲା ?"

"କିଏ, ଜୁଲିଆ ?······ହଁ, ସେ ଭାରି ଭଲ ଝିଅଟିଏ ।" ଟୋମା କହିଲା ।

"ସତେ ନା କଣ ? ତୁମେ ତାକୁ ଭଲ ବୋଲି କହୁଛ ?" ଡୁବ୍ରାଣ୍ଟି ପଚାରିଲା । ସେ ପାତ୍ରଟିକୁ ପୁଣି ତୁରନ୍ତ ଓଠ ପାଖକୁ ନେଇଗଲା, କିନ୍ତୁ ତତ୍‌କ୍ଷଣାତ ପାଣି ପିଇଲା ନାହିଁ । ସେତେବେଳେ ତାର ମୁଖ ମଣ୍ଡଳରେ ନୀରବ ହସର ବିସ୍ତାର । କିଛି କ୍ଷଣ ପରେ ସେ କହିଲା, "ମୋ ଘୋଡ଼ା ଦେହରେ ଟିକିଏ ଜଳ ଛିଞ୍ଚି ଦେଲେ ଭଲ ହୁଅନ୍ତା । ଟୋମା, ଟିକିଏ ଜଳ ତା ଉପରେ ପକାଇଦେ ନା !"

କାଠର ପଟା ଦିଆ ହୋଇଥିବା ଚଟାଣ ଉପରେ କାଠର ପାଦ ଠକ୍ ଠକ୍ କରି ଟୋମା ବାହାର ଅଗଣାରେ ଆସି ଠିଆ ହେଲା । ଡୁବ୍ରାଣ୍ଟି ଅଗଣାର ଗୋଟିଏ କୋଣରେ ଖଣ୍ଡିଏ ଝୁଲା ଦୋଳି ଦେଖି ପାରି ସେଥିରେ ଆସି ଦେହ ମେଲାଇ ଶୋଇ ପଡ଼ିଲା । ମରୁଭୂମିରୁ ଉତ୍‌କ୍ଷିପ୍ତ ଧୂଳିର କୁଜ୍‌ଝଟିକାରେ ଆକାଶ ଆଚ୍ଛାଦିତ ହୋଇ ଯାଇଥିଲା । ତାରି ଭିତରେ ଡୁବ୍ରାଣ୍ଟି ସୂର୍ଯ୍ୟାସ୍ତର ବର୍ଣ୍ଣଶୋଭା ଦେଖିବାକୁ ଲାଗିଲା । ଜଳ ଯେମିତି ତାର ଭିତର ଦେଇ ଥପ ଥପ ହୋଇ ଗଡ଼ି ପଡ଼ୁଛି । ଡୁବ୍ରାଣ୍ଟି ସହସା କ୍ଷୁଧା

ଅନୁଭବ କଲା । ରୋଷାଇ ଘରେ ବାସନକୁସନର ଝଣ ଝଣ ଶବ୍ଦ ଶୁଣାଗଲା, ଆଉ ତା ପରେ ଶୁଣିବାକୁ ମିଳିଲା ଟୋମାର କଣ୍ଠର ପ୍ରଫୁଲ୍ଲ ସ୍ୱର :

"ଡ଼କ୍, ତୁମେ କଣ ଖାଇବାକୁ ଭଲ ପାଅ ? ମୁଁ କଚ୍ଚା ଶୂକର ମାଂସ ରାନ୍ଧୁଛି । ଯଦି ତୁମକୁ ଶୂକର ମାଂସ ଭଲ ନ ଲାଗେ, ତାହାହେଲେ ତୁମ ପାଇଁ ଚମତ୍କାର ମେକ୍ସୀୟ ବିନ୍ସର ତରକାରୀ ରାନ୍ଧି ଦେବି । କଣ କହୁଛ, ଗରମ ଦରକାର ? ଓ, ତାହା କଣ ମୁଁ ଆଉ ଜାଣେ ନା ? ଡ଼କ୍‌କୁ କଣ ମୁଁ ଆଜି ନୂଆ ଦେଖୁଛି ? ଡ଼କ୍, ତୁମ ପାଇଁ ପ୍ରଚୁର ଭଲ ମଦ ଯୋଗାଡ଼ କରିଛି । ତା'ଛଡ଼ା ଭୁଟ୍ଟାରେ ତିଆରି ପିଠା ଅଛି । ଅନ୍ୟ କାହାରି କଥା ଛାଡ଼ି ଦିଅ, ଜୁଲିୟା ବି ମୋ ପରି ଭୁଟ୍ଟାର ପିଠା ତିଆରି କରି ପାରିବ ନାହିଁ । ...କହିବ ତ ତୁମ ପାଇଁ ଖାସା ଠେକୁଆ ମାଂସର ବି ବ୍ୟବସ୍ଥା କରି ପାରିବି ।"

"କେଉଁଥିରେ ଠେକୁଆ ମାର ? ଛର୍‌ରାର ଗୁଳିରେ ନିଶ୍ଚୟ ?" ଡ୍ରୁରାଣ୍ଡ ଜାଣିବାକୁ ଚାହିଁଲା ।

"ନା, ନା, ମୋର ରାଇଫେଲ ଅଛି । ସେଥିରେ ଠେକୁଆ-ଗୁଡ଼ାଙ୍କୁ ସାବାଡ଼ କରିଦିଏ ।"

"କଣ କହୁଛ, ରାଇଫେଲରେ ଠେକୁଆ ମାର ?" ଡ୍ରୁରାଣ୍ଡର ନୟନରେ କ୍ଷିପ୍ର କୌତୂହଳ ।

"ଏହି ଗୋଟିଏ ମାତ୍ର ବନ୍ଧୁକ ମୋର ଅଛି," ଟୋମା ଜବାବ ଦେଲା । "ଦେଖିବାକୁ ପାଇଲେ ହିଁ ହେଲା, ଠେକୁଆର ଆଉ ନିସ୍ତାର ନାହିଁ ।...ବୁଝି ପାରୁଛ ତ, କାଠର ପାଦରେ ବେଶୀ ଦୂର ଯାଇ ପାରେ ନାହିଁ । ତେଣୁ ସେଗୁଡ଼ାକୁ ତୁରନ୍ତ ସାବାଡ଼ କରି ଦେବାକୁ ହୁଏ । ସୂର୍ଯ୍ୟୋଦୟ ବେଳେ ଠେକୁଆଗୁଡ଼ାକ ଘରର

ଖୁବ୍ ପାଖକୁ ଚାଲି ଆସନ୍ତି ଏବଂ କାନ ହଲାଇବାକୁ ଲାଗନ୍ତି । ମୁଁ ତାଙ୍କ ମଥାକୁ ଲକ୍ଷ୍ୟ କରି ଗୁଳି ଫୁଟାଏ ।"

"କଣ କହୁଛ, ମଥାକୁ ଲକ୍ଷ୍ୟ କରି ଗୁଳି ଫୁଟାଅ ?" ଡୁରାଣ୍ଟିକୁ ଅସ୍ପଷ୍ଟ ସ୍ୱରରେ କହିବାର ଶୁଣାଗଲା । ତାପରେ ଭ୍ରୂକୁଟି କରି ସେ ନୀରବ ରହିଲା । ତାର ମୁହଁ ଓ ମଥା ଉପରେ ସେ ଥରେ ହାତ ବୁଲାଇ ଆଣିଲା ।

ତାପରେ ଟୋମା ଖାଦ୍ୟ ସଜାଇ ଅଗଣାକୁ ନେଇ ଆସିଲା । ଗୋଟିଏ ଓ୍ୱେଟ କାଠ ଟେବୁଲ ଉପରେ ସେ ଖାଦ୍ୟ ସାମଗ୍ରୀଗୁଡ଼ିକ ରଖିଲା । ଗୃହର ପ୍ରାଚୀରରେ ଝୁଲନ୍ତି ଗୋଟିଏ ପ୍ରଦୀପରୁ ଅର୍ଦ୍ଧ ବୃତ୍ତାକାରରେ ଆଲୋକର ରେଖା ଆସି ଟେବୁଲ ଉପରେ ପଡ଼ିଥିଲା । ଟେବୁଲରେ ବସି ସେମାନେ ଭୋଜନ କରିବାକୁ ଲାଗିଲେ । ଆହାର ପର୍ବ ପାଇଁ ଟୋମା ବେଶ୍ ପରିପାଟୀ ହୋଇ ଆସିଥିଲା । ତାର କେଶ ଗୁଚ୍ଛ ଜଳରେ ସିକ୍ତ ହୋଇଥିଲା ଓ ଗୋଲ ଖପୁରି ଉପରେ ପଛକୁ ଓଲଟା ହୋଇଥିଲା । ସେହି କେଶ ସିକ୍ତ ହେବାକୁ ଯେଉଁ ପରିମାଣ ଜଳ ଲାଗିଛି, ସେହି ଜଳ ପାଇଁ ମରୁଭୂମିରେ ଯେ କୌଣସି ଲୋକ ପାଞ୍ଚ ଡଲାର ଯାଏ ଦେବାକୁ ପ୍ରସ୍ତୁତ ହୋଇପାରେ ।

ପ୍ରତ୍ୟେକଟି ଖାଦ୍ୟ ଦ୍ରବ୍ୟ ବେଶ୍ ପରିପାଟୀରେ ରନ୍ଧା ହୋଇଥିଲା । ଟୋମା ଜାଣେ, କପୋତ ରାନ୍ଧିବାକୁ ହୁଏ, ଆଉ କପୋତ ଭାବରେ ମଦରେ ପାକ ପୂର୍ଣ୍ଣ କରି ରଖିବାକୁ ହୁଏ, ତାହା ବି ତାକୁ ଭଲ ଭାବରେ ଜଣା ଅଛି ।

ଟୋମା କହିଲା, "ଏଟା ପୁରୁଣା ମଦ । ଏଗାର ବର୍ଷ ତଳେ ତିଆରି ହୋଇଥିଲା । ମୋର ବାବାଙ୍କ ଅମଳରେ । ତୁମେ ଯୁଁ' ଭିତରେ ଆଲୁଅ ଦେଖି ପାରିବ—ନିଷ୍ଟୟ ଲାଲ ଭିତରେ ଗୋଟାଏ ତମ୍ବାଳିଆ ଭାବ ଦେଖି ପାରୁଛ ? ମୋ ବାବା ସଦାବେଳେ

କହୁଥିଲେ, ସେଟା ଆଉ କିଛି ନୁହେଁ, ଭଲ ମଦ ପ୍ରତି ସେଟା ହେଲା ସମସ୍ତ ତ ଦାନ —କମଳାପୁରା ।"

"ତୁମ ବାବାଙ୍କର କିପରି ଦେହାନ୍ତ ହେଲା ?"

ଯେମିତି ଗୋଟାଏ ଚିନ୍ତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରୁଛି, ଏପରି ଭାବରେ ଟୋମି ତାର ହାତଟା ଉଠାଇ ରଖିଲା ।

"ସେହି ମରୁଭୂମି ହିଁ ବାବାଙ୍କ ମୃତ୍ୟୁର କାରଣ । ତାଙ୍କର ତମ୍ବୁ ଘୋଡ଼ାଟାର ସନ୍ଧାନ ମିଳିଥିଲା—ତାହା ବି ମୃତ ଅବସ୍ଥାରେ । ଖାଦ୍ୟ ପାନ ଭିତରେ ଗୋଟାଏ କଣା ଦେଖିବାକୁ ମିଳିଥିଲା । ବାବା ଯେତେବେଳେ ପାଞ୍ଚ ମାଇଲ ଦୂରରେ— ମରୁ-ଝଡ଼ ଭିତରେ ମୁଁ ତାଙ୍କୁ ଦେଖି ପାରିଥିଲି ।"

"ପାଞ୍ଚ ମାଇଲ ? ତାର ମାନେ ଏକ ଘଣ୍ଟାର ରାସ୍ତା । ତୁମେ କଣ କହୁଛ ?" ଡୁରାଣ୍ଟର ବିସ୍ମୟାବିଷ୍ଟ ପ୍ରଶ୍ନ : "ତାପରେ ? ବାଲିରେ ମୁହଁ ମାଡ଼ି ପଡ଼ିଗଲେ, ଆଉ ଉଠି ପାରିଲେ ନାହିଁ ? ମରିଗଲେ ?"

"ନା, ତାହା ନୁହେଁ," ଟୋମି କହିଲା, "ତୃଷାରେ ଯେତେବେଳେ କେହି ମରିଯାଏ, ମୃତ୍ୟୁଟା ସବୁ କ୍ଷେତ୍ରରେ ଏକା ଭାବରେ ଘଟିଥାଏ । ପ୍ରଥମେ ତୃଷାର୍ତ୍ତ ବ୍ୟକ୍ତି ତାର ଜାମା ଛିଣ୍ଡାଇ ପକାଏ, ତାପରେ ତଳର ଲୁଗାପଟା । ଶୀତଳ ହେବା ପାଇଁ ଏହି ଆକୁଳତା । କିନ୍ତୁ ସେଥିରେ କଣ ଆଉ ଶୀତଳ ହୋଇପାରେ ? ବରଂ ସର୍ବାଙ୍ଗରେ ସୂର୍ଯ୍ୟଙ୍କ ପ୍ରଖର ତାପ ଲାଗି ଚମଡ଼ା ପୋଡ଼ିଯାଏ । ତାପରେ ଯେଉଁ ଅବସ୍ଥା, ତାର ନାମ ମୃଗତୃଷ୍ଣା । ଏହି ଅବସ୍ଥାରେ ମନେ ହୁଏ, ସବୁ ଠାରେ ଜଳ, ଖାଲି ଟିକିଏ ବାଲି ଖୋଳିଦେଲେ ହେଲା । ସେ ବାଲି ଖୋଳିବାକୁ ଆରମ୍ଭ କରେ । ତାର ନାକରେ ଧୂଳି ଭର୍ତ୍ତି ହୋଇଯାଏ । ସେ ଚିତ୍କାର କରିବାକୁ ଲାଗେ । ବାଲିରେ ତାର ନଖ ଉଡ଼ି ଯାଏ, ଅଙ୍ଗୁଳିରୁ ମାଂସ ଉଠି ଯାଇ ହାଡ଼ ବାହାରି

ପଡ଼େ ।" ଏ ପର୍ଯ୍ୟନ୍ତ କହି ଟୋମା କ୍ଷିପ୍ର ଗତିରେ ଢୋକେ ମଦ ପିଇ ଦେଲା ।

"ତୁମେ ତ କାହାକୁ ପିପାସାରେ ମରିବାର ଦେଖି ନାହଁ, ତାହାହେଲେ ତୁମେ କିପରି ଜାଣିଲ ଯେ ସେମାନେ ଚିତ୍କାର କରିବାକୁ ଲାଗନ୍ତି ?" ଡୁରାଣ୍ଡି ପଚାରିଲା ।

"ସେମାନଙ୍କର ମୃତ ମୁଖ ଉପରେ ବି ଚିତ୍କାରର ଭାବଟି ମୁଦ୍ରିତ ହୋଇ ରହିଥାଏ । ସେଥିପାଇଁ ମୁଁ ଏହା କହୁଛି ।" ଟୋମା ଜଣାଇଲା, "ଆଜି ଟିକିଏ ମଦ ଖାଅ । ଭୟ ନାହିଁ, ମରୁଭୂମି ଏଠାରେ ତୁମର କୌଣସି କ୍ଷତି କରି ପାରିବ ନାହିଁ । କିପରି ଭାବରେ ମରୁ-ଯାତ୍ରୀକୁ ଏଡ଼ି ଯିବାକୁ ହୁଏ ସେହି ବାଟ ବାବା ହିଁ ମୋତେ ଦେଖାଇ ଯାଇଛନ୍ତି । ଆମେ ଏଠାରେ ଖୁବ୍ ଭଲରେ ଅଛୁଁ । ନୁହେଁ ?"

ଡୁରାଣ୍ଡି ତା ଜାମାର ଫାଶଟା ଫିଟାଇ ଫିଟାଇ କହିଲା, "ସେଟା ସତ । ବେଶ୍ ଭଲ ।"

ଝୁଲନ୍ତ ବିଛଣାରେ ଡୁରାଣ୍ଡିକୁ ଖୁବ୍ ଭଲ ନିଦ ହେଲା । ଏକ ସମୟରେ ରାଇଫଲର ଗର୍ଜନରେ ତାର ନିଦ ଭାଙ୍ଗିଗଲା । ସେ ଉଠି ପଡ଼ି ଦେଖିଲା, ଆକାଶରେ ପ୍ରଭାତର ଅରୁଣାଭା ଖେଳି ଗଲାଣି । ନବୋଦିତ ସୂର୍ଯ୍ୟ ଖଣ୍ଡିଏ ପ୍ରକାଣ୍ଡ ଗୋଲ ଥାଳି ପରି ଦିଶୁଥିଲେ । ତାହା ଏତେ ପ୍ରକାଣ୍ଡ ଓ ଏତେ ଗୋଲ ଯେ ତାର ମନେ ହେଲା, ସେ ଯେମିତି ଥାଳିଟାକୁ ଉପରୁ ଦେଖୁଛି ।

ଡୁରାଣ୍ଡି ଶଯ୍ୟା ତ୍ୟାଗ କରି ଦେଖିଲା, ଟୋମା ସେହି ଆଡ଼କୁ

ଆସୁଛି । ତାର ଗୋଟିଏ ହାତରେ ଠେକୁଆଟିଏ, ଆଉ ଅନ୍ୟ ହାତରେ ରାଇଫେଲ ।

ଟୋମା ହସି ହସି ତାକୁ କହିଲା, "ଦେଖୁଛ, କେମିତି ପ୍ରାତଃଭୋଜନର ବ୍ୟବସ୍ଥା କରୁଛି । ମୋତେ କଷ୍ଟ କରିବାକୁ ପଡ଼ୁ ନାହିଁ । ପ୍ରାତଃଭୋଜନ ନଜେ ଆସି ଧରା ଦେଉଛି ।"

ଡୁରାଣ୍ଡି ମନୋଯୋଗ ସହକାରେ ଠେକୁଆଟିକୁ ଦେଖିବାକୁ ଲଗିଲ । ବେଶ୍ ସୁନ୍ଦର ଓ ଗୋଲ ଗାଲ, ଆଉ କ ଆଶ୍ଚର୍ଯ୍ୟ, ରାଇଫେଲର ଗୁଳିଟା ସତରେ ତାର ମଥା ଭେଦ କରି ଯାଇଛି,— ଏକବାରେ ଖପୁରୀର ଠିକ୍ ମଝିରେ । ଡୁରାଣ୍ଡିର ପିଠି ବାଟେ ଯେମିତି ଗୋଟାଏ ପ୍ରଚଣ୍ଡ ଭୟର ଶିହରଣ ଉହ୍ଲାଇ ଆସିଲ । ପ୍ରାତଃଭୋଜନ ଆଗରୁ ସେ ଅତି ସାବଧାନରେ ନିଜର ଗୋଡ଼ ହାତ ଧୋଇ ପକାଇଲ । ତାର ମନେ ହେବାକୁ ଲଗିଲ, ତାର ରକ୍ତ ଯେମିତି ସମସ୍ତ ଦିନଟା ପାଇଁ ଶୀତଳ ହୋଇଗଲ ।

ପ୍ରାତଃଭୋଜନ ଅବଶ୍ୟ ବେଶ୍ ଭଲ ହେଲ । ରୋଟି ଓ ତା ସାଙ୍ଗକୁ କଞ୍ଚା ଲଙ୍କା ଦିଆ ଠେକୁଆ ମାଂସର ଝୋଳ । ତାପରେ କଡ଼ା କଫି । ଆହାର ସମାଧା ହେବା ଆଗରୁ ପୂର୍ବ ଦିଗର ଝରକା ବାଟେ ସୂର୍ଯ୍ୟଙ୍କ କିରଣ ଆସି ଘରେ ପଡ଼ିଲ । ସେମାନଙ୍କ ଶରୀର ଘର୍ମାକ୍ତ ହୋଇଗଲ ।

"ଟୋମା, ତୁମ ରାଇଫେଲଟା ମୋତେ ଟିକିଏ ଦିଅ ତ ଦେଖେଁ," ଡୁରାଣ୍ଡି କହିଲା ।

ହସି ହସି ଟୋମା କହିଲ, "ଦେଖ, କିଛି କ୍ଷତି ନାହିଁ । ମାତ୍ର ବନ୍ଧୁକଟିର ଯେଉଁ ସୁନାମ ଅଛି ସେଟା ଯେମିତି ଗୋଟିଏ ନ ଯାଏ ।" ଟୋମା ପନ୍ଦର-ଗୁଳିଭରା ବନ୍ଧୁକଟି ଆଣି ଉପସ୍ଥିତ ହେଲ ।

"କଷ୍ଟପୂ ଗୁଳି ଭର୍ତ୍ତି ହୋଇଛି ?" ଡୁରାଣ୍ଡି ପଚାରିଲ ।

"ଯେଉଁ ମୁହୂର୍ତ୍ତରେ ମୁଁ ଘରକୁ ଫେରି ଆସେଁ, ସେହି ମୁହୂର୍ତ୍ତରେ ମୁଁ ବନ୍ଧୁକରେ ଗୁଳି ଭର୍ତ୍ତି କରି ରଖେଁ।" ଟୋମି କହିଲା।

"ଟୋମି, ମୋ ସାଙ୍ଗରେ ଟିକିଏ ବାହାରକୁ ଆସ ତ," ଆଦେଶର ସ୍ୱରରେ ଡ୍ରୁଗଣ୍ଡି କହିଲା।

ସେମାନେ ଘରୁ ବାହାରକୁ ଆସିଲେ। ସୂର୍ଯ୍ୟଙ୍କ ତାପ ହେତୁ ଡ୍ରୁଗଣ୍ଡିର ଦେହରୁ ଗରମ ପାଣି ଭଳି ଝାଳ ବହି ପଡ଼ିବାକୁ ଲାଗିଲା ଏବଂ ତାପରେ ତାହା ଶୁଖିଗଲା। ଶୁଖିଲା ଚମଡ଼ା ଉପରେ ତାର ପୋଷାକ ହାଲୁକା ବୋଧ ହେବାକୁ ଲାଗିଲା।

ଡ୍ରୁଗଣ୍ଡି କହିଲା, "ଟୋମି, ତୁମକୁ ଗୋଟିଏ କଥା କହିବି। ତୁମେ ଯେଉଁଠି ଅଛ, ଠିକ୍ ସେଇଠି ଠିଆ ହୋଇ ଥାଅ। ନିକଟକୁ ଚାଲି ଆସ ନାହିଁ।... ବର୍ତ୍ତମାନ ଶୁଣ।...ଶେରିଫ ଓ ତାର ଲୋକମାନେ ମୋର ଅନୁସନ୍ଧାନରେ ଏହି ପଥରେ ବାହାରିଛନ୍ତି। ଆଜି ଯେ କୌଣସି ସମୟରେ ସେମାନେ ଆସି ଏଠାରେ ପହଞ୍ଚି ପାରନ୍ତି। ସେମାନେ ଆସି କଣ କରିବେ ନା, ତୁମର ଜଳାଧାରଗୁଡ଼ିକରୁ ଜଳ ଭରିନେବେ ଏବଂ ତାପରେ ମରୁଭୂମି ଉପରେ ପୁଣି ମୋର ସନ୍ଧାନରେ ବାହାରିବେ। ବୁଝି ପାରୁଛ ତ ମୋ କଥା ? ସେମାନଙ୍କ ସଙ୍ଗରେ ଜଳ ଥିଲେ ଯାଇ ସେମାନେ ମୋତେ ଅନୁସରଣ କରି ପାରିବେ, ନଚେତ୍ ନୁହେ। ସେମାନେ ଯେମିତି ଜଳ ନ ପାଆନ୍ତି, ସେହି ବ୍ୟବସ୍ଥା ମୁଁ କରି ଦେଉଛି।"

"ଡିକ୍, ତୁମର ଉଦ୍ଦେଶ୍ୟଟା କଣ କୁହ ତ," ଟୋମି କହିଲା। "ଶୁଣ, ଗୋଟିଏ କାମ କରିଯାଉ।...ମୁଁ ତୁମକୁ ପୁରୁଣା ମଦର କୋଠରୀରେ ଲୁଚାଇ ରଖିବି। କେହି ତୁମକୁ ଖୋଜି ବାହାର କରି ପାରିବେ ନାହିଁ।"

ଡୁବ୍ରଣ୍ଟି ବାଧା ଦେଇ କହିଲା, "ଶେରଫ୍ ଯେମିତି କେଉଁଠି ହେଲେ ଟୋପାଏ ସୁଦ୍ଧା ପାଣି ଖୋଜି ନ ପାଏ । ତାହା କପରି ଭାବରେ କରିବାକୁ ହେବ, ମୁଁ ସେଇଟା ଦେଖାଉଛି ।"

ସେ ରାଇଫେଲଟି କାନ୍ଧ ଉପରେ ରଖିଲା, ଲକ୍ଷ୍ୟ କଲା, ଆଉ ଗୁଳି ଫୁଟାଇଲା । ଗୁଳି ଯାଇ ବାଜିଲା ଏକବାରେ ସବା ଆଗର ଜଳାଧାରର ଦେହରେ, ତାର ତଳଟା କଣା ହୋଇଗଲା । ଲୁହା କାନ୍ଥ କଡ଼ରେ ମାଟି ହଠାତ୍ ଯେମିତି ଅର୍ଦ୍ଧ-ବୃତ୍ତାକାରରେ ଅନ୍ଧକାରରେ ଆବୃତ ହୋଇଗଲା ।

ଟୋମା ଆଣ୍ଠୁ ମାଡ଼ି ବସି ପଡ଼ି ଖାଲି କହି ଯିବାକୁ ଲାଗିଲା, "ଏ କଣ କରୁଛ ଡିକ୍, ଦୋହାଇ ଡିକ୍, ତୁମ ଗୋଡ଼ ତଳେ ପଡ଼ୁଛି । ଦେଖ, ମୋର ସମୁଦାୟ ଅଙ୍ଗୁର ବଗିଚାଟା ଧ୍ୱଂସ ହୋଇଯିବ । ଖାଲି ପୁରୁଣା ମଲା କେତେ ଗୁଡ଼ାଏ ଗଛ ଲତା ଛଡ଼ା ବଗିଚାରେ ଆଉ କିଛି ରହିବ ନାହିଁ ।"

"ଚୁପ୍, ତୁମର ପଦେ କଥା ବି ଶୁଣିବି ନାହିଁ ।" ଡୁବ୍ରଣ୍ଟି ଧମକ ଦେଇ କହିଲା । "ଥରେ ଯେତେବେଳେ ଆରମ୍ଭ କରିଛି, ଶେଷ ଅବଧି ନ ଦେଖି ମୁଁ ଛାଡ଼ୁ ନାହିଁ ।"

ଟୋମା ମୁହଁ ଓହଳାଇ କାନରେ ଆଙ୍ଗୁଳି ଦେଇ ଦେଲା । ଡୁବ୍ରଣ୍ଟି ଗୋଟାକ ପରେ ଗୋଟାଏ ଜଳାଧାର ବନ୍ଦ କରିବାକୁ ଲାଗିଲା । ଜଳାଧାର ଗୁଡ଼ିକ ଏପରି ଭାବରେ ଛିନ୍ନ ବିଚ୍ଛିନ୍ନ ହୋଇଯିବା ପରେ ସେ ରାଇଫେଲ ଉପରେ ଭର ଦେଇ ଠିଆ ହେଲା ।

ଡୁବ୍ରଣ୍ଟି ଆଦେଶର ସ୍ୱରରେ ତାକୁ କହିଲା, "ମୋର ମଦ୍ୟ ପାତ୍ରଟି ନେଇ ଭିତରକୁ ଯାଅ ଏବଂ ଶୀତଳ ପାତ୍ରରୁ ଜଳ ଆଣି ସେଇଟା ଭର୍ତ୍ତି କରି ନେଇ ଆସ । ଯାଅ, ଡେରି କର ନାହିଁ ।"

ଟୋମ୍ ଉଠି ଠିଆ ହେଲା । ମଦ୍ୟ ପାତ୍ରଟି ହାତରେ ଧରି, ସେ ଥରେ ସ୍ଥିର ଆଖିରେ ଅନାଇଲା । ସେତେବେଳେ ବି ଜଳାଧାର ଗୁଡ଼ିକରୁ ଜଳ ଝରୁଥିଲା, ଆଉ ମାଟିରେ ସେହି ଜଳ ଶୋଷି ନେବାର ଶବ୍ଦ ଶୁଣା ଯାଉଥିଲା । ସେ ଆଡ଼କୁ ସେ ଅନାଇଲା ନାହିଁ । ତାର ଦୃଷ୍ଟି ଦ୍ରାକ୍ଷାକୁଞ୍ଜ ଉପରେ ନିବଦ୍ଧ ଥିଲା । ତାପରେ ସେ ଘର ଭିତରକୁ ଚାଲିଗଲା ।

ଡୁରାଣ୍ଡି ତାର ଡନ୍ ଘୋଡ଼ା ଉପରେ ଚଢ଼ି ବସିଲା । ବାମ ହାତରେ ସାଇଫେଲଟା ଧରି, ସେ ଡାହାଣ ହାତରେ ଖୋଳରୁ ରିଭଲଭରଟା ବାହାର କରି ଆଣିଲା । ଟୋମ୍ ଫେରି ଆସିଲା, ଏବଂ ମଥା ତଳକୁ ପୋତି ଡୁରାଣ୍ଡି ପାଖରେ ଠିଆ ହେଲା । ଡୁରାଣ୍ଡି ରିଭଲଭରଟି ହାତରେ ଧରି ସତର୍କ ଭାବରେ ଟୋମ୍‌କୁ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲା । କିନ୍ତୁ ଟୋମ୍ କେଉଁ ଆଡ଼କୁ ଚାହିଁଲା ନାହିଁ, ମାତ୍ର ମଦ୍ୟ ପାତ୍ରଟି ଡୁରାଣ୍ଡିର ହାତକୁ ବଢ଼ାଇ ଦେଲା ।

ଡୁରାଣ୍ଡି କହିଲା, "ଟୋମ୍, ତୁମେ ଗୋଟାଏ ବଡ଼ ଅପଦାର୍ଥ । ମୁଁ ଯଦି ତୁମ ପରି ହୋଇଥାନ୍ତି, ଶିବ୍ ସହିତ ଖାଲି ହାତରେ ବି ଲଢ଼ି ଥାନ୍ତି । ତୁମ ସାଙ୍ଗରେ ମୁଁ ଆଜି ଯେଉଁ ବ୍ୟବହାର କଲି, ତାହା ସହଜରେ ଘଟିବାକୁ ଦେଇ ନ ଥାନ୍ତି । ଆଉ ତୁମେ କଣ କଲ ନା ନିଶ୍ଚଳ୍ପ ହୋଇ ବସି ରହିଲ ଏବଂ ଥରେ ମାତ୍ର ପ୍ରତିରୋଧ କଲ ନାହିଁ ।"

ଟୋମ୍ ଯେମିତି ତାର କଥାଗୁଡ଼ିକ ଶୁଣି ପାରିଲା ନାହିଁ । ଅଙ୍ଗୁର ଲତାଗୁଡ଼ିକ ଆଡ଼କୁ ହାତ ବଢ଼ାଇ ସେ ଖାଲି କହିଲା, "ହାୟ ଭଗବାନ, ଏହା କଣ ତୁମ ମନରେ ଥିଲା ? ସେଗୁଡ଼ିକୁ ମାରି ଦେବ ?"

ଜଳପୂର୍ଣ୍ଣ ଅଛି କି ନା ପରୀକ୍ଷା କରିବା ପାଇଁ ଉସ୍ମାଣ୍ଡି ପାତ୍ର-ଟିକୁ ଜୋରରେ ହଲାଇ ଦେଲା । ନା, ଠିକ୍ ଅଛି । ପାତ୍ରଟି ଏମିତି ଭର୍ତ୍ତି ହୋଇଛି ଯେ ଭିତରେ ପାଣିର ଶବ୍ଦ ହେବାର ଵ୍ୟୁ ନାହିଁ । ତାପରେ ସେ ଘୋଡ଼ାର ମୁହଁଟା ବୁଲାଇ ଦେଇ ଥରେ ପାଦରେ ଖେଞ୍ଚି ଦେଇ ଘୋଡ଼ାଟିକୁ ଦୌଡ଼ାଇ ନେଲା ।

ଟୋମାର ଘର ଠାରୁ ଅଧ ମାଇଲଏ ବାଟ ଆସି, ଉସ୍ମାଣ୍ଡି ଗୁଳ-ଶୂନ୍ୟ ରାଇଫେଲଟିକୁ ଭୂଇଁରେ ଫିଙ୍ଗିଦେଲା । ସେହି ଅକାମୀ ବୋଝଟିକୁ ସାଙ୍ଗରେ ବହି ନେଇ ସିବାରେ କୌଣସି ଅର୍ଥ ନ ଥିଲା । ଆଉ ତା ଛଡ଼ା ଟୋମା ତାର ନେଙ୍ଗଡ଼ା ପାଦରେ ଏତେ ଦୂର ଆସି ପାରିବ କି ନା ସନ୍ଦେହ ।

କିନ୍ତୁ ଆଉ ମାଇଲଏ ଖଣ୍ଡେ ଆଗେଇ ଯାଇ, ଉସ୍ମାଣ୍ଡି ପଛକୁ ଫେରି ଚାହିଁ ଦେଖିଲା, ଟୋମାର କ୍ଷୁଦ୍ର ମୂର୍ତ୍ତି ଧୂଳିରୁ ରାଇଫେଲଟି ଉଠାଇ ନେଉଛି ଏବଂ ତା ଆଡ଼କୁ ଘନ ଘନ ଏକାଗ୍ର ଦୃଷ୍ଟିରେ ଅନାଉଛି । ଉସ୍ମାଣ୍ଡିର ହଠାତ୍ ମନେ ପଡ଼ିଗଲା, ଗୁଳିର ଆଘାତରେ ଫୁଟି ଯାଇଥିବା ଠେକୁଆର ମଥାରେ ଶ୍ଳେଟ ନକ୍ସା ରାବଟିର କଥା । ସେ ଆଉ ଯେଉଁ ଠାକୁ ଯାଉ ପଛେ, ମାତ୍ର ମରୁଭୂମିର ଅଭ୍ୟନ୍ତରରେ ଅବସ୍ଥିତ ଦ୍ରାକ୍ଷାକୁଞ୍ଜକୁ ସେ ନିଶ୍ଚୟ ଆଉ ଫେରିସିବ ନାହିଁ । ତାପରେ ତାର ମାନସ-ପଟରେ ଭାସି ଉଠିଲା ଟୋମାର ଗୃହରେ ଉପସ୍ଥିତ ପର୍ମାଲ୍‌-କଳେବର ଶେରିଫ ଓ ତାର ଦଳବଳର ଚିତ୍ର । ଉସ୍ମାଣ୍ଡି ମନେ ମନେ ବଡ଼େ ହସି ପକାଇଲା ।

ଶେରିଫର ଦଳବଳ ଅବଶ୍ୟ ପ୍ରଚୁର ମଦ ପାଇବେ, କିନ୍ତୁ ଜଳ ? କାହାରି ସାଧ୍ୟ ନାହିଁ ଯେ ଜଳ ବ୍ୟତୀତ ମରୁଭୂମି ପାର ହୋଇ ପାରିବ, ଏପରିକି ତଟ୍ଟୁ କିମ୍ୱା ଘୋଡ଼ାର ସାହାଯ୍ୟରେ ବି ନୁହେଁ । ଉସ୍ମାଣ୍ଡି ଥରେ ତା ପାତ୍ରର ସୁଗୋଲ ଧାରଟିରେ ସାଦରେ

ହାତ ବୁଲାଇଲା । ଏକ୍ଷଣି ସେ ଢୋକେ ଜଳ ପିଇ ପାରେ—ତାର ମରୁଭୂମି ଯାତ୍ରାର ପ୍ରଥମ ଜଳପାନ । କିନ୍ତୁ ନା, ଏକ୍ଷଣି ନୁହେଁ । ତୃଷ୍ଣାଟା ଆହୁରି ପ୍ରବଳ ହେଉ, ସେତେବେଳେ ଯାଇ ଦେଖାଯିବ । ସୁଖଭୋଗର ସମ୍ପୂର୍ଣ୍ଣତା ଇଚ୍ଛା କରି ବିଳମ୍ବ କରିବା ବି ଏକ ଧରଣର ବିଳାସ ।

ସେ ତାର ଗମନ-ପଥ ଉପରେ ଚକ୍ଷୁ ବିନ୍ୟସ୍ତ କଲା । ନିକଟରେ ଏଠାରେ ସେଠାରେ ହାଡ଼ ସବୁ ପଡ଼ିଛି । କିନ୍ତୁ ଦୂରକୁ ଦୂରକୁ ଏକ ଧାଡ଼ିରେ, ଆଉ ଦୂରରୁ ସେଟା ଦେଖିଲେ ମନେ ହେଉଛି ଯେମିତି ଗୋଟିଏ କମ୍ପମାନ ଧଳା ଅଖଣ୍ଡ ରେଖା । ଦୂରର ଶୀତଳ ମାଳମା ହାତ ଠାରୁଛି, ଆଉ ହାଡ଼ର ଶୁଭ୍ର ରେଖା ଆପେକ୍ ମରୁଭୂମିରେ ସେହି ଦିଗକୁ ଯେମିତି ଅଙ୍ଗୁଳି ନିର୍ଦ୍ଦେଶ କରି ଦେଉଛି । ଆଉ ଭାବନା କରି, କାଲି ସକାଳେ ସେ ପାହାଡ଼ ପାଖରେ ପହଞ୍ଚି ଯିବ ।

ଗୋଟିଏ ଗାତରୁ ସଁ କରି ଗୋଟିଏ ଶ୍ଳେଟ ଗଧିଆ ବାହାରି ଆସିଲା । ଧୂଳି ଧୂସରିତ ପବନର ଗୋଟାଏ ଝଲକ ଭଳି ସେ ଯେମିତି ଧାଇଁ ପଳାଇଲା । ଗଧିଆଟିର ଜିଭ ମୁହଁର ଗୋଟାଏ ପାଖରୁ ଖଣ୍ଡିଏ ଶ୍ଳେଟ ଲାଲ ଚମ କନା ପରି ବାହାରକୁ ଝୁଲି ପଡ଼ି-ଥିଲା । ଅକସ୍ମାତ୍ ଉଲ୍ରିଣ୍ଟିକୁ ଭୟଙ୍କର ଶୋଷ ଲାଗିଲା । ସେ ପାତ୍ରର ଠିପି ଖୋଲି ମୁହଁ ପାଖରେ ଟେକି ଧରିଲା । ଗନ୍ଧଟା ଯେମିତି କିପରି ଟିକିଏ ଖଟାଳିଆ ଜଣାଗଲା । ବୋଧହୁଏ ଢାଙ୍କୁଣୀଟା ପୁରୁଣା ହୋଇଯାଇ ଥିବାରୁ ଏପରି ମନେ ହେଉଛି । ତାପରେ ସେ ଈଷତ୍-ଉଷ୍ଣ ତରଳ ପଦାର୍ଥକୁ ଯଥେଷ୍ଟ କିଛି ତାର ତଣ୍ଟି ଭିତରେ ଢାଳି ଦେଲା । ସାବଧାନ ହେବାକୁ ତାର ସମୟ ନ ଥିଲା । ତା ଆଗରୁ ସେ କିଛି ଉଦରସ୍ଥ କରି ପକାଇ ଥିଲା ।

ସେଇଟା ଥିଲା ମଦ !

ସେ ପ୍ରଥମେ ପର୍ବତ-ଶ୍ରେଣୀ ଆଡ଼କୁ ଚାହିଁଲା । ସକାଳେ ବାହାରିବା ବେଳେ ସେଗୁଡ଼ିକ ଯେପରି ଦୂରବର୍ତ୍ତୀ ଓ ଶାନ୍ତ ମନେ ବୋଧ ହେଉଥିଲେ, ଏକ୍ଷଣି ବି ତାକୁ ଠିକ୍ ସେହିପରି ମାଲୁମ ହେଲା । ମଦ ଉପରେ ନିର୍ଭର କରି ଚବିଶ ଘଣ୍ଟା ଯାଏ ବାଟ ଚାଲିବାକୁ ପଡ଼ିବ, ଜଳ ମିଳିବ ନାହିଁ—ଏହା ଭାବିଲା ମାତ୍ରେ ଉରୁଷ୍ଟି ଶିହରି ଉଠିଲା ।

ସେ ମନେ ମନେ କହିଲା, "ମୋର ଯେମିତି ବୁଦ୍ଧି, ମୁଁ ସେମିତି ଫଳ ପାଉଛି । ମୁଁ ତାକୁ ବିଶ୍ୱାସ କରି ଜଳ ଭରି ଆଣିବାକୁ ଦେଇଥିଲି···ମୋର ଉପଯୁକ୍ତ ଶାସ୍ତି ହୋଇଛି । ସେ ମରୁ ଚେଙ୍ଗେ ।" ପ୍ରଚଣ୍ଡ ଇଚ୍ଛା ବଳରେ ସେ ସାମୟିକ ଭାବରେ ତାର ମାନସିକ ଆତଙ୍କ ଦମନ କଲା । ଦିପହର ନ ହେବା ଯାଏ ସେ ଆଉ ତାହା ଛୁଇଁବ ନାହିଁ । ଦିପହର ହେଲେ ବିଶେଷ ବିଚାର ବିବେଚନା କରି ସେ ଟୋକେ ହେଲେ ପିଇବ । ତାକୁ ଯେ କୌଣସି ମତେ ମରୁଭୂମି ଅତିକ୍ରମ କରିବାକୁ ପଡ଼ିବ ।

ସମୟ ଗଡ଼ି ଯିବାକୁ ଲାଗିଲା । ଉରୁଷ୍ଟି ତାର ଘଡ଼ି ଆଡ଼କୁ ଚାହିଁ ଦେଖିଲା, ମାତ୍ର ଦଶଟା ବାଜିଛି । କିନ୍ତୁ ତାର ଧାରଣା ଥିଲା ବୋଧହୁଏ ଦିପହର ଗଡ଼ି ଗଲାଣି ! ମଦ୍ୟ-ପାତ୍ରର ମୁହଁଟା ଖୋଲି ସେ ଏକ ଟୋକରେ ଟିକେ ବେଶୀ ମଦ ପିଇଦେଲା । ତା ପରେ ଠିପି ବନ୍ଦ କରିବା ମାତ୍ରେ ତାର ମନେ ହେଲା, ତାକୁ ପ୍ରଚଣ୍ଡ ଶୋଷ ଲାଗୁଛି । ସେ ମଦ୍ୟ-ପାତ୍ରଟିକୁ ଥରେ ଖୁବ୍ ଜୋରରେ ହଲାଇ ଦେଲା । ଏ କଣ, ଏହା ଭିତରେ ଏଟା ଏତେ ହାଲୁକା ହୋଇ ଗଲାଣି !

ଟଚ୍ଚ ଘୋଡ଼ାର ମୁହଁ ଫେରାଇ ସେ ଥରେ ଭାବିଲା, ଫେରି ଯିବ । କିନ୍ତୁ ତତ୍‌କ୍ଷଣାତ୍ ଗୁଳିବିଦ୍ଧ ଠେକୁଆର ମଥାଟି ମନେ ପଡ଼ିଯିବା ମାତ୍ରେ ତାର ସଂକଳ୍ପ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଟୋମାର ଦ୍ରାକ୍ଷାକୁଞ୍ଜର ଦଶା ସେ କଣ ନ କରି ଆସିଛି । ଅଙ୍ଗୁର ଲତା-ଗୁଡ଼ିକ କ୍ରମେ କ୍ରମେ ବାଙ୍କି ଯାଇ ଝୁଲି ପଡ଼ି ଶୁଖିଯିବ ଏବଂ ତାର ଚେଇଲି ଝଡ଼ି ପଡ଼ିବ । ପ୍ରତ୍ୟେକଟି ଅଙ୍ଗୁର ଲତା ଟୋମା ନିକଟରେ ମଣିଷର ଜୀବନ ସଦୃଶ ମୂଲ୍ୟବାନ୍ । ଆଜି ସେଗୁଡ଼ିକର ମୃତ୍ୟୁ ପାଇଁ ସେ ନିଜେ ତ ଦାୟୀ !

ପଞ୍ଚମ ଶ୍ରେଣୀର ମାଳମା ଆଡ଼କୁ ସେ ପୁନର୍ବାର ଅନାଇଲା । ବକ୍ଷ ଭିତରେ ତାର ହୃତ୍‌ପିଣ୍ଡ ଭୟରେ ଥରି ଉଠିଲା । ତାର ଜିଭଟା ମୁହଁର ଗାତ ଭିତରକୁ ପଶି ଯିବାକୁ ଲାଗିଲା । ଏଟା ଭୟ ନା ଆଉ କିଛି ? ମୃତ୍ୟୁ-ପାଣ୍ଡୁର ଶୁଷ୍କ ପବନର ତାଡ଼ନାରେ କଣ ଏତେ ପରିମାଣରେ ବୈକଲ୍ୟ ଦେଖା ଦେଇ ପାରେ ?

ଦିନ ଗଡ଼ି ଚାଲିଲା । ମଝିରେ ମଝିରେ ତାର ପାକସ୍ଥଳୀରେ ତୀବ୍ର ବେଦନା ଅନୁଭୂତ ହେବାକୁ ଲାଗିଲା ଏବଂ ତାହା ସଙ୍ଗେ ସଙ୍ଗେ ବାନ୍ତିର ଉପକ୍ରମ ମଧ୍ୟ । ତଳକୁ ଚାହିଁ ଦେଲା ମାତ୍ରେ ସେ ଦେଖି ପାରିଲା, ତାର ବୁଟ ଜୋତାରେ ରକ୍ତ ଲାଗିଛି । ସେ କ୍ରମାଗତ ଭାବରେ ଟଚ୍ଚ ଘୋଡ଼ାଟିକୁ ପାଦରେ ଖେଞ୍ଚି ଖେଞ୍ଚି ଦୌଡ଼ାଉଥିଲା । ସେଥିପାଇଁ ଘୋଡ଼ାର ଦେହରୁ ରକ୍ତ ଝରି ତାର ଜୋତା ରଙ୍ଗୀନ ହୋଇ ଯାଇଛି । ଘୋଡ଼ାଟି ଯେମିତି ଗୋଟାଏ ଅଦ୍ଭୁତ ଭଙ୍ଗୀରେ ଚାଲୁଥିଲା । ହଠାତ୍ ଉତ୍ତରଣ୍ଡିର ମନେ ହେଲା, ସେ ବହୁତ ବେଳ ହେଲା ଘୋଡ଼ାଟିକୁ ଏକାଧ କ୍ରମେ ଜୋର କଦମରେ ଚଳାଇ ଆଣିଛି । ସେ ଲଗାମ ଟାଣି ତାକୁ ଅଟକାଇ ଦେଲା । ଘୋଡ଼ାଟି ଠିଆ ହୋଇଗଲା । ତାର ପାଦ ଗୁଡ଼ିକ ଫାଙ୍କ-ଫାଙ୍କ, ମଥା ନଇଁ

ପଡ଼ୁଛି । ଗଛରୁ ଟିକିଏ ଝିଙ୍କି ପଡ଼ିବାରୁ, ଇବ୍ରାହିମର ଆଖିରେ ପଡ଼ିଗଲା, ଘୋଡ଼ାର ମୁହଁଟା ମେଲା ହୋଇଛି ।

"ହାୟ, ହାୟ, ମୁଁ କ ବୋକାମୀ ନ କରିଛି । ଏ ଯେ ମରିବା ଉପରେ ହୋଇ ଗଲାଣି ।" ଇବ୍ରାହି ଚିତ୍କାର କରି କହିଲା ।

ଘୋଡ଼ାଟି ଅବଶ୍ୟ ତତ୍‌କ୍ଷଣାତ୍ ମଲା ନାହିଁ । ଯେତେବେଳେ ବେଳ ବୁଡ଼ିଗଲା, ସୂର୍ଯ୍ୟ ଅସ୍ତ ହୋଇଗଲେ, ସେତେବେଳେ ଘୋଡ଼ାଟି ମୁହଁ ମାଡ଼ି ତଳେ ପଡ଼ି ଯାଇ ମରିଗଲା । ଇବ୍ରାହି ତାର ଶଭିଲଭର ଛଡ଼ା ଆଉ ସବୁ ଜିନିଷ ଫିଙ୍ଗିଦେଲା । କିନ୍ତୁ ଏହି ସାମାନ୍ୟ ଓଜନ ଟିକକ ବହିବାକୁ ତାକୁ କଷ୍ଟ ହେଉଥିଲା । ପ୍ରାୟ ଘଣ୍ଟାଏ ପରେ ସେ ସେଟାକୁ ବି ଫୋପାଡ଼ି ଦେଲା । ତାର ଆଖି ଦୁର୍ବଳତର ହୋଇ ଆସୁଥିଲା । ଆକାଶ ଆଡ଼କୁ ଆଖି ମେଲାଇ ରହିଁଦେଲା ମାତ୍ରେ ତାକୁ ମୁହୂର୍ତ୍ତକ ପାଇଁ ତାରାଗୁଡ଼ିକ ଉଜ୍ଜ୍ୱଳ, ଧଳା ଓ ସ୍ପଷ୍ଟ ଦିଶିଲେ । କିନ୍ତୁ ମାତ୍ର ମୁହୂର୍ତ୍ତକ ସକାଶେ । ତାପରେ ତାରାଗୁଡ଼ିକ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଚଳମାନ ବୃତ୍ତ ଓ ଲାଲ ରେଖା ମଧ୍ୟରେ ଘୂରି ଘୂରି ସବୁ ମିଶି ଏକାକାର ହୋଇଗଲେ ।

ସେ ଶୋଇ ପଡ଼ିଲା । ତାର ଦେହ ଅସମ୍ଭବ ଭାବରେ କମ୍ପୁଥିଲା । ଚକ୍ଷୁ ମୁଦ୍ରିତ କରି ସେ ଅପେକ୍ଷା କରିବାକୁ ଲାଗିଲା, କେତେବେଳେ କମ୍ପନ କମିବ । କିନ୍ତୁ କମ୍ପନ କୌଣସି ମତେ କମିଲା ନାହିଁ । ଅନ୍ଧକାରରେ ନିଶ୍ୱାସ ନେବାକୁ ଯାଇ ତାର ମନେ ହେଲା, ପ୍ରତି ଥର ଶ୍ୱାସ ଗ୍ରହଣ ସହିତ ଯେମିତି କିଛି କୃଷ୍ଣ ଧୂଳି କଣା ତାର ନାସିକା ଭିତରକୁ ପଶି ଯାଉଛି ।

ସେ ଉଠି ପଡ଼ି ଠିଆ ହେଲା । ଟଳି ଟଳି ସେ ଚାଲିବାକୁ ଆରମ୍ଭ କଲା । ମଝିରେ ମଝିରେ ସେ ଦୌଡ଼ିବାକୁ ଲାଗିଲା ।

ତୃଷାରେ ଗ୍ଳଣ୍ଡ ଫାଟି ମରିଯିବା ଅଗରୁ ଲୋକେ କୁଆଡ଼େ ପାଗଳ ହୋଇ ଯାଆନ୍ତି । ଏହି କଥାଟି ଜୁରାଣ୍ଡିର ଘନ ଘନ ମନେ ପଡ଼ିବାକୁ ଲାଗିଲା । ତାର ଜିଭ ଫୁଲି ବଡ଼ ହୋଇ ଯାଇଥିଲା । ଏକ ସମୟରେ ତାର କଣ୍ଠ ରୁଦ୍ଧ ହୋଇଯିବ, କିନ୍ତୁ ତା ଆଗରୁ ସେ ଛୁରୀରେ ତାର ଜିଭ କାଟି ପକାଇବ ଏବଂ ସେଥିରୁ ଯେଉଁ ରକ୍ତ ବାହାରିବ ସେଥିରେ ତାର କାମ ଚଳିଯିବ, ଅର୍ଥାତ୍ ସେହି ରକ୍ତରେ ସେ ତୃଷା ନିବାରଣ କରିବାକୁ ସମର୍ଥ ହେବ । କିନ୍ତୁ ପର ମୁହୂର୍ତ୍ତରେ ତାର ମନେ ହେଲା, ରକ୍ତର ସ୍ୱାଦ ଲୁଣିଆ ।

ଥରେ ଶୈଶବରେ ସେ ତାର ପିତାଙ୍କ ସହିତ ଏକ ଗିରିବର୍ତ୍ମ ଅତିକ୍ରମ କରିଥିଲା । ଗିରିବର୍ତ୍ମର ବହୁ ତଳେ ଗୋଟାଏ ପାର୍ବତ୍ୟ ହ୍ରଦ ଥିଲା । ହ୍ରଦର ବହୁ ବିସ୍ତୀର୍ଣ୍ଣ ଅଗାଧ ନୀଳ ଜଳରାଶି ଆଡ଼କୁ ସେମାନେ ଅନାଇ ରହିଥିଲେ । ସେ ଜଳ ଥିଲି ବରଫ ପରି ଥଣ୍ଡା ।

ସେ ଏଥର ଉପରକୁ ଅନାଇଲା । ସେତେବେଳକୁ ଆକାଶରୁ ସବୁ ତାରା ଲିଭି ଗଲେଣି । ସେଥିରେ ସେ ହଠାତ୍ ଅତିଶୟ ଭୀତତ୍ରସ୍ତ ହୋଇ ପଡ଼ିଲା । ମରୁଭୂମିରେ ଏପରି ଗାଢ଼ କଳା ରାତ୍ରି ସେ ଆଗରୁ କେବେ ହେଲେ ପ୍ରତ୍ୟକ୍ଷ କରି ନ ଥିଲା । ତାର ଚକ୍ଷୁର ଦୃଷ୍ଟି ଝାପସା ହୋଇ ଆସୁଥିଲା, ବୋଧହୁଏ ସେ ଅନ୍ଧ ହୋଇ ଯାଉଥିଲା । ଯେତେବେଳେ ଭୋର ହେବ, ପର୍ବତ ଶ୍ରେଣୀ ଆଉ ତାକୁ ଦେଖାଯିବ ନାହିଁ ଏବଂ ତଦ୍ଦ୍ୱାରା ମରୁଭୂମି ଭିତରେ ତା ପକ୍ଷରେ ଘୂରି ମରିବା ହିଁ ଖାଲି ସାର ହେବ । ଶେଷରେ ଏକ ସମୟରେ କ୍ଳାନ୍ତ ହୋଇ ମୁହଁ ମାଡ଼ି ପଡ଼ିଯାଇ ସେ ମରିଯିବ ।

ନକ୍ଷତ୍ରହୀନ ଆକାଶ, ବାୟୁହୀନ ଶୂନ୍ୟ ମଣ୍ଡଳ, ହ୍ରଦର ଜଳ ପରି ନିସ୍ତରଙ୍ଗ ବାୟୁ ମଣ୍ଡଳ, ଆଜି ତାର ପ୍ରାଣ ଧୀରେ ଧୀରେ ସ୍ତିମିତ ହୋଇ ଆସୁଛି ।

ଗଳା ପାଖରେ ସେ ତାର ଜାମାକୁ ଚିପି ଧରିଲି ଏବଂ

ସେଠାକୁ ଦୁଇ ଖଣ୍ଡ କରି ଛୁଡ଼ାଇ ପକାଇଲା । ତା କମରର ଦୁଇ ପାଖରେ ଛୁଣ୍ଡା କନା ଭଳି ଦୁଇ ଭାଗ ହୋଇ ସେଠା ଝୁଲି ପଡ଼ିଲା ।

ଚକ୍ଷୁର କ୍ଷୀଣ ଦୃଷ୍ଟିରେ ମାଟି ଯେତିକି ବାରି ହେଉଥିଲା, ସେଥିରେ ବାଟ ଚାଲି ହେଉ ନ ଥିଲା । ତେଣୁ ସେ କସ୍ତୁତ ହୋଇ ପଡ଼ିଲା । ଏହି ସମୟରେ ଆକାଶରେ ତାରାମାନେ ବା କାହାନ୍ତି ? ସେ ଅନ୍ଧ ହୋଇ ଯାଇଛି, ଆଉ ତାର କୌଣସି ଆଶା ନାହିଁ । କୂଅରେ ଗୋଟିଏ ପକ୍ଷୀ ମୃତ୍ୟୁର ବଞ୍ଚିବାର ସମ୍ଭାବନା ଠାରୁ ତାର ବଞ୍ଚିବାର ସମ୍ଭାବନା ଅଧିକ ନ ଥିଲା । ହାୟ, ଶେଷକୁ କପାଳରେ ଏହା ଥିଲା !

ମଦ ସାଙ୍ଗରେ ବିଷ ମିଶାଇ କପଟ ଭାବରେ ଚେତନା ଲୋପ କରି ଦେବାକୁ ହୁଏ, ଇଟାଲୀୟ ବଦମାସମାନଙ୍କୁ ତାହା ଖୁବ୍ ଭଲ ଭାବରେ ଜଣା ଥିଲା । ଓ୍ବୁର୍ଣ୍ଟିକୁ ଅନ୍ଧ କରିଦେବା ପାଇଁ ଟୋମା ଏହି କାରସାଦି କଲା ।

ହଠାତ୍ ଯେମିତି ଓ୍ବୁର୍ଣ୍ଟର କାନରେ ଜଳର ଶବ୍ଦ ଆସି ବାଜିଲା । କିନ୍ତୁ ତାହା ଜଳର ଶବ୍ଦ ନୁହେଁ । ଯେଉଁ ନରମ ଗମ୍ଭୀର ବାଲି ଉପରେ ସେ ଯାଉଥିଲା, ତାର ସେଁ ସେଁ ଶବ୍ଦ । ଏମିତି ନରମ ବାଲି ଯେ ଖାଲି ହାତରେ ବି ତାହା ଖୋଳା ଯାଇପାରେ ।

ତାପରେ, କେତେ ଘଣ୍ଟା ପରେ, ଆକାଶର କଳା ଯବନିକା ଭେଦ କରି ବୃଷ୍ଟି ପଡ଼ିବାକୁ ଲାଗିଲା । ପ୍ରଥମେ ଫୁସ୍ ଫୁସ୍ କରି କଥା କହିବା ଭଳି ଅସ୍ଫୁଟ ଧାରାପାତ, ତାପରେ ପାରସ୍ପରିକ ଶବ୍ଦାଳାପ ଭଳି ମୃଦୁ ମର୍ମର, କିନ୍ତୁ ତାପରେ, ଠିକ୍ ଭୋର ହେବା ବେଳକୁ, ସହସ୍ର ଧାବମାନ ଅଶ୍ୱର ଖୁରା ଧ୍ୱନି ଭଳି ପ୍ରଚଣ୍ଡ ଗର୍ଜନ । କିନ୍ତୁ ସେହି ବିଚିତ୍ର ଶବ୍ଦର ଝଙ୍କାର ଭିତରେ ନଗ୍ନ ମସ୍ତକ ଓ ଲାଲ ଶରୀର ବିଶିଷ୍ଟ ବଡ଼ ବଡ଼ ପକ୍ଷୀଗୁଡ଼ିକ ଆପେକ୍ ମରୁଭୂମି ଭିତରେ ଗୋଟିଏ ସ୍ଥାନ ଠିକ୍ ଖୋଜି ବାହାର କରିନେଲେ ।

— ମଧାକ୍ସ ବ୍ରାଣ୍ଡ

# ୧୬

ନିଜ ଘର ସାମନାରେ ଥିବା ଗେଟ ବଗିଚାଟିରେ ଠିଆ ହୋଇ ଆର୍ଥାର ଗୁଡ଼୍‌ଷ୍ଟୀଡ଼୍‌ ହେମନ୍ତ କାଳୀନ ତୀବ୍ର ବାୟୁ ଜୋରରେ ନାକ ଭିତରକୁ ଟାଣି ନେଉଥିଲେ । ଯଦିଚ ଆଖପାଖରେ କେହି ଉପସ୍ଥିତ ନ ଥିଲେ, ସେ ଯେ ପେଟଟା ଭିତରକୁ ଟାଣି ନେଇଥିଲେ ଏବଂ ଛାତିଟା ଆଗକୁ ବାହାର କରି ଦେଇଥିଲେ—ସେ ବିଷୟରେ ସେ ସଚେତନ ଥିଲେ । ତାଙ୍କର ଫୁସ୍‌ଫୁସ୍‌ ଝଣ୍ଡ୍ରା ନିଶ୍ୱାସ ସାଙ୍ଗରେ ସମାନ ଭାବରେ ତାଳ ରଖି ସମ୍ପ୍ରସାରିତ ହେଉ ନ ଥିଲା—ସେ ବିଷୟରେ ବି ସେ ଅସ୍ୱସ୍ତିକର ଭାବରେ ସଚେତନ ଥିଲେ । ପବନ ଜୋରରେ ତାଙ୍କ ନାକ ବାଟେ ଠିକ୍ ଭିତରକୁ ଯାଉଥିଲା—କିନ୍ତୁ ଛାତିର ମଝାମଝି କେଉଁଠାକୁ ଯାଇ ଯେମିତି ଧକ୍କା ଖାଇ ପୁଣି ଖୁବ୍ ଜୋରରେ ବାହାରି ଆସୁଥିଲା ।

ତାଙ୍କର ସ୍ୱାସ୍ଥ୍ୟଲାଭର ଆକାଙ୍‌କ୍ଷା ପକ୍ଷରେ ଏହା ଏପରି କ୍ଷତିକର ଥିଲା ଯେ ସେ କିଛି କ୍ଷଣ ପାଇଁ ପାହାଡ଼ଗୁଡ଼ିକ ଆଡ଼କୁ ଅନାଇ ରହିବା ପ୍ରୟୋଜନ ବୋଧ କଲେ—ପାହାଡ଼ଗୁଡ଼ିକର ମଝିରେ ଯେଉଁ ସବୁ ପଥ ବଙ୍କେଇ ବଙ୍କେଇ ଚାଲି ଯାଇଛି, ସେ ସେଗୁଡ଼ିକର କଥା ଭାବିବାକୁ ଲାଗିଲେ । ସେହି ସବୁ ପଥରେ ଶାନ୍ତି, ସ୍ୱାସ୍ଥ୍ୟ ଓ ଯୌବନ ଯେନ ସଗର୍ବରେ ଚାଲି ଯାଇ ହୁଏ ।

ଆକାଶ ତଳେ ଝୁଲୁଥିବା ଶୀତଳ କୁହୁଡ଼ି ଏବଂ ହାତରେ ବୁଣା ପଶମ ମୋଜାର ଫାଙ୍କ ବାଟେ ପାଦରେ ଲମ ବର୍ଦ୍ଧମାନ ବାୟୁର ଶୀତଳତା । ସେ ଜାଣିଥିଲେ ଯେ ଏମିତି ଏକ ଦିନରେ ଚିବୁକ ଭିତରକୁ ଟାଣି ନେଇ ଗୁଡି ଯୁଲାଇ ଦ୍ରୁତ ଗତିରେ ପଦ ଚାଳନା ଅବଶ୍ୟ କଷ୍ଟକର କାର୍ଯ୍ୟ । କେଉଁ କେଉଁ ଦିନ ଗୋସାଇଁ ବାପାଙ୍କର ଅଶୀ ବର୍ଷ ବୟସରେ ତିଆରି ଓୟାଲନାଟ ବାଡ଼ିଟା ଘୁରାଇ ଘୁରାଇ ସେ ରାସ୍ତାରେ ବୁଲି ଯାଉଥିଲେ ଏବଂ ତାଙ୍କ ଆଡ଼କୁ ଆସୁଥିବା କୌଣସି ଗାଡ଼ିର ଯାତ୍ରୀମାନଙ୍କ ପ୍ରତି ହାସ୍ୟ ନିକ୍ଷେପ କରିବା ପାଇଁ ପ୍ରସ୍ତୁତ ହୋଇ ରହୁଥିଲେ । ମିଷ୍ଟର ଗୁଡ୍‌ଷ୍ଟିଡ୍‌ଙ୍କ ହାସ୍ୟରେ ଯେମିତି କିଛି ବେହେଡ଼ା କଥା ଥିଲା । ପ୍ରଥମତଃ ତାଙ୍କର ନୂତନ ଦାନ୍ତଗୁଡ଼ିକ କ୍ଷେତ୍ରରେ ହସଟା ଅତି ବେଶୀ ସାଦା ଥିଲା—ଦାନ୍ତଗୁଡ଼ିକ ଦେଖି ମନେ ହେଉଥିଲା, ସେଗୁଡ଼ିକ ଯେମିତି କୌଣସି ସ୍ୱାସ୍ଥ୍ୟବାନ ଯୁବକ ଘୋଡ଼ାର ଦାନ୍ତର ଆଦର୍ଶରେ ତିଆରି କରା ଯାଇଥିଲା—ଫାଙ୍କ ଫାଙ୍କ ଏବଂ ଆନ୍ତରିକତାପୂର୍ଣ୍ଣ, ଯେମିତି ଯେତିକି ଆନନ୍ଦ ଓ ଶକ୍ତି ସେ ଅନୁଭବ ନ କରନ୍ତି, ତା ଠାରୁ ଅଧିକ ଦେଖାଇବା ପାଇଁ ସେ ବ୍ୟଗ୍ର ହୋଇ ଉଠୁଥିଲେ ।

ପ୍ରତି ଦିନ ସେ ପାହାଡ଼ ଆଡ଼କୁ ଯାଇଥିବା ରାସ୍ତାରେ ବୁଲି ବୁଲି ଗ୍ରାମକୁ ଯାଆନ୍ତି । ମହାସାଗରର ସେପଟରୁ କିଣା ନିଜର ଟୁଇଡ୍ ପୋଷାକ ତାଙ୍କୁ ଚମତ୍କାର ଦେଖାଯାଏ—ସେ ଯେଉଁ ଅଦମ୍ୟ ଉତ୍ସାହ ଯୋଗେ ନିଜର ଶରୀରକୁ ଠିକ୍ ରଖୁଥିଲେ, ତାହା ଦେଖିଲେ ପ୍ରତ୍ୟେକ ବ୍ୟକ୍ତି କିଛି ନା କିଛି ବିସ୍ମୟ ପ୍ରକାଶ ନ କରି ରହିପାରୁ ନ ଥିଲା । ତାଙ୍କୁ ଦେଖି ପକାଇଲା ମାତ୍ରେ ତାଙ୍କର ନିକଟତମ ପ୍ରତିବେଶିନୀ କୁମାରୀ ଆଡ଼ ହାର୍ଟର ସେ ତଣ୍ଟି ଫଟାଇ ଚିତ୍କାର କରିବାକୁ ଇଚ୍ଛା ହୁଏ, ଏ କଥା ସେ କେବେ ହେଲେ ଶୁଣି

ନାହାନ୍ତି । କୁମାରୀ ଆବକୁ ମନ୍ତବ୍ୟ କରିବାର ଶୁଣା ଯାଇଛି—
"ମୋର ମନେ ହୁଏ, ସେ ପ୍ରତି ଦିନ ବୁଲି ଯାଆନ୍ତି । ଅନ୍ତତଃ ସେ
ନିଜେ ତାହା ଦାବି କରନ୍ତି । ତଥାପି ମୋର କପାଳ ଦୋଷରୁ
ମୁଁ ତାଙ୍କୁ ଏମିତି ସବୁ କଦର୍ଯ୍ୟ ହେମାଳ ଦିନରେ ବାହାରକୁ
ଯିବାର ଦେଖେଁ, ଯେତେବେଳେ କାଣିଚୁଏ ବୁଦ୍ଧି ଥିବା ଲୋକ ବି
ଘର ଭିତରେ ରହିଥାଏ । ଏହା ଦେଖି ଦେଖି ମୋ ମନରେ ଘୃଣା
ଜାତ ହୋଇଛି । ଯଦି ନିଜର ସ୍ୱାସ୍ଥ୍ୟ ଠିକ୍ ରଖିବା ହିଁ ତାଙ୍କର
ଉଦ୍ଦେଶ୍ୟ ହୁଏ, ତାହାହେଲେ କି ଉଦ୍ଦେଶ୍ୟରେ ସେ ସ୍ୱାସ୍ଥ୍ୟ ଠିକ୍
ରଖୁଛନ୍ତି ? ସେ ନିଜକୁ ଯେତେ ପରିମାଣରେ ସୁସ୍ଥ ବୋଲି ପ୍ରତି-
ପାଦନ କରିବାକୁ ଚାହାନ୍ତି, ଯଦି ତାହା ସତ ହୁଏ, ତାହାହେଲେ
ତାଙ୍କ ଘରେ ଔଷଧ ଆଲମାରିରେ ଏତେ ବାଇକାର୍ବୋନେଟ ଅଫ୍
ସୋଡ଼ା କାହିଁକି ବା ରଖା ଯାଇଛି ? ଆପଣମାନଙ୍କ ଭିତରୁ କେହି
ହେଲେ ସେ ପ୍ରକାରର ଜିନିଷ ଦେଖି ନାହାନ୍ତି । ଦିନେ ମୁଁ ହଠାତ୍
ଆଲମାରୀଟା ଖୋଲି ଦେଇଥିଲି—ଅବଶ୍ୟ ଲୁଚାଇ କରି ନୁହେଁ ।
ମୁଁ ହାତ ଧୋଇ ସାରି ହାତରେ ଲଗାଇବା ପାଇଁ ଗୋଟାଏ କିଛି
ଜିନିଷ ଖୋଜୁଥିଲି । ମୋର ହାତ ଦୁଇଟି ଯେ କିପରି ତାହା ତ
ଆପଣମାନେ ସମସ୍ତେ ଜାଣନ୍ତି ।"

ଜୀବନର ମଧ୍ୟ ସ୍ଥଳରୁ ଯେ ଗୋଟାଏ ସମୃଦ୍ଧିକୁ ପଦାକୁ
ଓଟାରି ଆଣିବାର ଅଛି—ମିଷ୍ଟର ଗ୍ରିଫିଥ୍ ତାହା ଅନୁଭବ
କରୁଥିଲେ । କିନ୍ତୁ କୁମାରୀ ହାର୍ଟ ସେ କଥା ଆଦୌ ବୁଝୁ ନ ଥିଲି ।
ହୁଏତ ମିଷ୍ଟର ଗ୍ରିଫିଥ୍‌ଙ୍କର ହାତ ମୁଠାର ବନ୍ଧନ ଥିଲା କଦର୍ଯ୍ୟ
କିମ୍ବା ଫାଙ୍କ ଥିଲି କମ—କାରଣ ଫାଙ୍କ ବାଟେ ତା ପାଇଁ ଯେଉଁ
ସବୁ ଚିହ୍ନ ଝରି ପଡ଼ୁଥିଲା, ସେଗୁଡ଼ାକ ନଷ୍ଟ ହୋଇ ଥିଲା । ତଥାପି ସେ
ଯେତିକି ପାରୁଥିଲେ, ଚେଷ୍ଟା କରୁଥିଲେ । ସେ ପାଇପ ଟାଣୁଥିଲେ—

ଏପରିକି, ଆଲୋଚନା ସମୟରେ ତାଙ୍କର ପ୍ରିୟ ପାଇପଟି ସ୍ୱଚ୍ଛନ୍ଦରେ ୧୫ ମିନିଟ ଧରି ଟଣା ହେଉଥିଲା । ତାଙ୍କ ଚୁଲି ପାଇଁ ସେ ଜାଳେଣି କାଠ ଲାଗି ବାଇନା ଦେଉ ନ ଥିଲେ । ସେ ନିଜେ କାଠ ହାଣୁଥିଲେ—ଫଳରେ ଜାଳେଣି କାଠକୁ କାଠ ବୋଲି ଆଦୌ ମନେ ହେଉ ନ ଥିଲା—ସେଗୁଡ଼ିକ ଡାଳପତ୍ର ବୋଲି ମନେ ହେଉଥିଲା । ସେ ପାହାଡ଼ଗୁଡ଼ିକୁ ପର୍ବତ ବୋଲି କହୁଥିଲେ ଏବଂ ପ୍ରାୟ ତାଙ୍କ ଚକ୍ଷୁରେ ଏପରି ସୁଦୂର ନିବଦ୍ଧ ଦୃଷ୍ଟିରେ ସେ ସେଗୁଡ଼ିକ ଆଡ଼କୁ ଗୃହିଁ ରହୁଥିଲେ ଯେ ମନେ ହେଉଥିଲା, ପାହାଡ଼ଗୁଡ଼ିକ ଅତି ନିକଟରେ ମୃଦୁ ଓ ବନ୍ଧୁତ୍ୱପୂର୍ଣ୍ଣ ଭାବରେ ମଥା ଟେକି ଠିଆ ହୋଇଛନ୍ତି—ଏଥିରେ ସେ ନିଶ୍ଚୟ ଅସ୍ୱସ୍ତି ଅନୁଭବ କରନ୍ତି ।

ଜୀବନ ଧାରଣକୁ ସୁନ୍ଦର କରି ଗଢ଼ିବା କଠିନ ବ୍ୟାପାର । ଗଭୀର ଅନ୍ତରଙ୍ଗତା ପୂର୍ଣ୍ଣ ହସ ଓ ସୁନ୍ଦର କଥା ଦ୍ୱାରା ସେ ଯେତେ ସଜୀବ କରିବା ପାଇଁ ଚେଷ୍ଟା କଲେ ସୁଦ୍ଧା, ଯେଉଁସବୁ ଜିନିଷର ନାମ ପଦ୍ମରାଗ ମଣି ପରି ଝଟକୁଥାଏ, ତାଙ୍କ ହାତକୁ ସେସବୁ ବି ଯେମିତି ମ୍ଳାନ ହୋଇ ଯାଉଥିଲେ । ସେ କଥା କହିବାକୁ ଭଲ ପାଉଥିଲେ—ସେ ଭଲ ପାଉଥିଲେ ଜନ୍ମକ୍ତ ଚୁଲିରେ ଜଳି ଉଠି ନିଆଁ, ହାଉଣ୍ଡ କୁକୁର, ତମାଖୁ ସେବନ, ପ୍ରିୟ ଚୌକି, ଭଦ୍ରଲୋକ, ଉଚ୍ଚ ଶ୍ରେଣୀର ଭଦ୍ର ମହିଳାଙ୍କ ସଙ୍ଗ, ପ୍ରଭୃତି । କେଉଁ କେଉଁ ସମୟରେ ତାଙ୍କର ମନେ ହେଉଥିଲା ଯେ କଥା ମଧ୍ୟରେ ସୀମାବଦ୍ଧ ସବୁ କିଛି ହିଁ ଭଲ ଜଣାଯାଏ, ମାତ୍ର ସେମାନେ ଯେଉଁ ସବୁ ବସ୍ତୁର ପ୍ରତୀକ ଅବଶ୍ୟ ସେମାନଙ୍କ ଭିତରେ ନୁହେଁ ।

ଯେତେବେଳେ ସେ ନୈର୍ବ୍ୟକ୍ତିକ ଓ ଅବଗୁଣ୍ଠନଯୁକ୍ତ ପାହାଡ଼ଗୁଡ଼ିକ ଆଡ଼କୁ ଗୃହିଁ ଠିଆ ହୋଇ ରହୁଥିଲେ, ସେତେବେଳେ ମନେ ହେଉଥିଲା ଯେ ସେଗୁଡ଼ିକ ବୋଧ ହୁଏ ବଦଳୁଛନ୍ତି ଏବଂ ତାଙ୍କୁ ଆକର୍ଷଣ କରୁଛନ୍ତି । ପାଇନ ଓ ହେମଲକ୍‌ର କଟୁ ଗନ୍ଧ

ଯେମିତି ପବନରୁ ଉଭାଇ ଯାଉଥିଲା—ତା ବଦଳରେ ଭିଜା ମାଟିର ସନ୍ତସନ୍ତିଆ ଗନ୍ଧ ଓ ପଚ୍ଚ ପତ୍ରର ଗନ୍ଧ ଆସି ନାକରେ ବାଜୁଥିଲା । ସେ ଦିନ ପବନ ତୀବ୍ରତର ହେଲା ଏବଂ କୁହୁଡ଼ି ପରିଷ୍କାର ହୋଇଯାଇ ଦୂରରେ ଧୂଳିଜନକ କଳା ମେଘ ଦେଖା ଦେଲା । ସେ ସହସା ନିଜକୁ ଏକାକୀ ଅନୁଭବ କରି ଘର ଆଡ଼କୁ ଫେରି ଗଲେ—କିନ୍ତୁ ମଳିନ ଧୂସର ଆଲୋକରେ ପାହାଡ଼ର ତୀକ୍ଷ୍ଣ ଢାଲୁ ପୃଷ୍ଠଭୂମିକାରେ ଘରଟି ବହୁତ ଦୂର ଦୁର୍ବଳ ଓ ଜରାଜୀର୍ଣ୍ଣ ବୋଲି ମନେ ହେଲା । ଏଟା ଯେମିତି ଅନେକ ପରିମାଣରେ ଶୁଖିଲା ଖୋଳପା—ଉତ୍ତାପ ନାହିଁ କି ହାର୍ଦ୍ଦିକତା ନାହିଁ । ଯେଉଁ ସଞ୍ଚିତ କାଠ ଲାଗି ତାଙ୍କର ଏତେ ଗର୍ବ, ତାହା ଯେମିତି ହାସ୍ୟକର ଭାବରେ କମ ବୋଲି ମନେ ହେଲା—ଗଛର ଡାଳ କାଟି ଜମାଇବା ଯେ ନିରର୍ଥକ, ତାଙ୍କ ଉପରେ ଝୁଲି ପଡ଼ିଥିବା କଳା ଗଛଗୁଡ଼ିକ ଯେମିତି ତାହା ନିର୍ଦ୍ଦେଶ ଦେବାକୁ ବ୍ୟଗ୍ର ।

ଘର ଭିତରକୁ ଯାଇ ସେ ନିଆସିଲି ଜଳାଇ କାଠରେ ନିଆଁ ଲଗାଇଲେ ଏବଂ ତାପରେ ସୁଇଚ୍ ଟିପି ରେଡିଓଟା ଚଳାଇଦେଲେ । ସେ ଗୋଟାଏ ସଙ୍ଗୀତାନୁଷ୍ଠାନର ଶେଷାଂଶ ଶୁଣିବାକୁ ପାଇଲେ ଏବଂ ତାପରେ ଜଣେ ଘୋଷକର ଗଳା ଘରଟା କମ୍ପାଇ ଦେଲା । କେତେ ସେକେଣ୍ଡ୍ ଆଗରୁ ଘୋଷକ ଯେ କଣ କହୁଥିଲା ମିଷ୍ଟର ଗୁଡ୍‌ସ୍ପିଡ୍ ତାହା ଶୁଣି ପାରିଲେ ନାହିଁ । ତାପରେ ସେ ବୁଝି ପାରିଲେ ଯେ ବେତାରରେ ଝଡ଼ ସମ୍ବନ୍ଧରେ ଗୋଟାଏ ସତର୍କ ବାଣୀ ପ୍ରଚାରିତ ହେଉଛି, ଆଉ ତାଙ୍କର ମନେ ହେଲା ଯେ ଘୋଷକର ଗଳାରେ ଗୋଟାଏ ଦ୍ରୁତ ଜରୁରୀ ଭାବ ଲକ୍ଷିତ ହେଉଛି । ରେଡିଓ ଆଗରେ ଠିଆ ହୋଇ ସେ ଗମ୍ଭୀର ଭାବରେ ମଥା ହଲାଇ ମନ ଦେଇ ଶୁଣିବାକୁ ଲାଗିଲେ ଏବଂ ଘୋଷଣାଟି ଶେଷ ହୋଇ

ଯାଆନ୍ତେ ସୁଇଚ୍ ଟିପି ରେଡିଓ ବନ୍ଦ କରିଦେଲେ । ନଇଁ ପଡ଼ି ସେ ସଯତ୍ନରେ କାନ୍ଥ ଦେହରୁ ପ୍ଲଗଟା ଖୋଲି ନେଲେ । ଝିଲ୍‌କା ଏ ପବନ ଆସି ଦରଜାଟା ହଲାଇ ଦେଇଗଲା ଏବଂ ଝରକା ବାଟେ ସେ ଦେଖି ପାରିଲେ ଯେ ମେଘଗୁଡ଼ିକ ଏକ୍ଷଣି କଳା, ଧୂମ୍ରାଭ୍ରମାନ ଓ ସ୍ଫୀତ ହୋଇ ଗଲେଣି ।

ଘରେ ପ୍ରବେଶର ସମୟ ପରି ବର୍ତ୍ତମାନ ଆଉ ଗ୍ରେଟ ଘରଟିକୁ ବନ୍ଧ୍ୟା, ବିବର୍ଣ୍ଣ ଓ ଧୂସର ବୋଲି ମନେ ହେଲା ନାହିଁ—ବରଂ ଯେମିତି ପରିଚିତ ଆରାମପ୍ରଦ ଏକ ଆଶ୍ରୟ ସ୍ଥଳୀ । ତାଙ୍କୁ ଯେମିତି ହଠାତ୍ ଗୋଟାଏ କାମର ଭୂତ ମାଡ଼ି ବସିଲା । ସେ ହାଣ୍ଡିଶାଳକୁ ଯାଇ ଦୁଇଟି ତେଲ·ବତୀ ବାହାର କରି ସଯତ୍ନରେ ତାର କାଚ ଧୋଇ ପରିଷ୍କାର କରି ସେଥିରେ ତେଲ ଭରିଲେ । ଦୁଆର ଓ ଝରକା ଗୁଡ଼ିକ ବନ୍ଦ ଅଛି କି ନା ଦେଖିବା ପାଇଁ ସେ ଗ୍ରେଟ ଘରଟିର ଚାରିଆଡ଼େ ବୁଲି ଦେଖିଲେ । ସେ କାଠର ବାକ୍‌ସଟା ଖାଲି କଲେ ଏବଂ କିଛି ଅୟେଲ କ୍ଲଥରେ କାଠଗୁଡ଼ିକୁ ଘୋଡ଼ା ଦେଇ ଅୟେଲ କ୍ଲଥ ଉପରେ ପୁଣି ପଥର ରଖି ଦେଲେ । ତାପରେ ସେ ପୁଣି ଝରକା କଡରେ ଠିଆ ହୋଇ ବାହାର ଆଡ଼କୁ ଅନାଇଲେ । ସଙ୍ଗେ ସଙ୍ଗେ ସେ ତାଙ୍କ ଓଠରେ ସ୍ୱରହୀନ ସଙ୍ଗୀତ-ହୀନ ଶବ୍ଦ କରିବାକୁ ଲାଗିଲେ—ଅବଶ୍ୟ ଠିକ୍ ସୁସୁରି ନୁହେଁ ।

ପ୍ରକୃତରେ ଜାଣିବାକୁ ବସିଲେ ଅବଶ୍ୟ ବୁଝାଯାଏ ଯେ, ପ୍ରାକୃତିକ ଦୁର୍ଯୋଗ ଅନେକ ଦିନ ହେଲା ତାଙ୍କୁ ହତାଶ କରି ଆସୁଛି । ବାୟୁ, ବୃଷ୍ଟି ଓ ତୁଷାରର ଶିଶୁ ସୁଲଭ ବ୍ୟବହାର ଦେଖି ବିସ୍ମିତ ହୋଇ ସେ ଭାବୁଥିଲେ ଯେ ଦୈନିକ ସମ୍ବାଦପତ୍ରରେ ରବିବାର ସଂସ୍କରଣର ପ୍ରବନ୍ଧରେ ପାଣିପାଗ କ୍ରମଶଃ ମୃଦୁତର ହୋଇ ଆସୁଛି ବୋଲି ଯେଉଁସବୁ କଥା ଲେଖା ଯାଇଥାଏ,

ବୋଧହୁଏ ସେଗୁଡ଼ିକ ଠିକ୍ ହୁଏ । ପ୍ରବନ୍ଧଗୁଡ଼ିକ ତାଙ୍କୁ ଉଦ୍‌ବିଗ୍ନ କରି ପକାନ୍ତି । ତାଙ୍କୁ ବିରାଟ ଜନ୍ତୁ ଓ ବିଶାଳ ଗଛ ପଥର ପୃଥିବୀରେ ବଞ୍ଚି ରହିବାକୁ ହେବ—ଏ କଥା ଭାବିଲା କ୍ଷଣି ସେ ଭୟଭୀତ ହୋଇ ଯାଆନ୍ତି । ସେ ଥରେ ଏଚ୍. ଜି. ଓୟେଲ୍‌ସଙ୍କର ଖଣ୍ଡିଏ ବହି ପଢ଼ିଥିଲେ ଏବଂ ସେହି ବହିରେ ଲିଖିତ ପୃଥିବୀର ଶେଷ ଜୀବିତ ବସ୍ତୁର ଅପ୍ରୀତିକର ବର୍ଣ୍ଣନା—ତୈଳାକ୍ତ ନିସ୍ତବ୍ଧ ସମୁଦ୍ର କୂଳରେ ଗୋଟାଏ ବିରାଟ ପଦାର୍ଥର ଆତ୍ମ-ସମ୍ପ୍ରସାରଣ ଏବଂ ଆତ୍ମ-ସଙ୍କୁଚନ ତାଙ୍କ ମନ ଭିତରେ ଏକ ଅବିସ୍ମରଣୀୟ ପ୍ରଭାବ ପକାଇ ଦେଇଛି । ଅବଶ୍ୟ ଏ ସବୁ ଜିନିଷ ଅବିଶ୍ୱାସ୍ୟ, ତଥାପି ତାଙ୍କ ଯୌବନର ଝଡ଼ଗୁଡ଼ିକ ଆଜି କେଉଁଠି ? ପାହାଡ଼ ବକ୍ଷରେ ବହି ଯାଉଥିବା ସେହି ଚମତ୍କାର ନୂତନ—ଅନ୍ଧକାରୀ ତୁଷାର-ଝଡ଼ କେଉଁଠି ? ଆକାଶ ଚିରି ଯେଉଁ ବିଦ୍ୟୁତ୍ ଦେଖା ଦିଏ ଏବଂ ଏଲମ୍ ଗଛ ଛିନ୍ନ ଭିନ୍ନ କରି ପକାଏ, ତାହା ବା କେଉଁଠି ? ଉପତ୍ୟକାରେ ଯେଉଁ ବଜ୍ରର ସୁଦୂର ପ୍ରସାରୀ ପ୍ରତିଧ୍ୱନି ଉଠେ, ତାର ବା ସନ୍ଧାନ କାହିଁ ? ମନେ ହୁଏ, ସେସବୁ ଯେମିତି ଶେଷ ହୋଇ ଯାଇଛି ଏବଂ ମଣିଷ ବି କ୍ରମେ କ୍ରମେ କୋମଳତର ହୋଇ ଯାଉଛି । ଏହି ଚିନ୍ତା ହିଁ ତାଙ୍କୁ ପାହାଡ଼ ଭିତରେ ଘୂରି ବୁଲିବାକୁ ଅନୁପ୍ରାଣିତ କରେ । ସେ ମୁଖ ବନ୍ଦ କରି କଷ୍ଟରେ ନିଶ୍ୱାସ ନେଇ ଆଗକୁ ମାଡ଼ି ଚାଲୁଥିଲେ —କେହି ତାଙ୍କୁ ଗାଡ଼ିରେ ଉଠାଇ ନେବାକୁ ଚାହିଁଲେ ସେ ସ୍ଥିର ଉଜ୍ଜ୍ୱଳ ହସରେ ତାହା ପ୍ରତ୍ୟାଖ୍ୟାନ କରୁଥିଲେ । ସେ ଭାବୁଥିଲେ ଯେ, ଆଗାମୀ ହଜାରେ ବର୍ଷ ପରେ ହୁଏତ ମଣିଷର ଆଉ ପାଦ ରହି ନ ଥିବ ।

ହଠାତ୍ ତାଙ୍କର ଶ୍ୱେତ-ଗୃହ-ନିବାସିନୀ ପ୍ରତିବେଶିନୀ କୁମାରୀ ଆଭି ହାର୍ଟର କଥା ମନେ ପଡ଼ିଗଲା—ହୁଏତ ସେ ଝଡ଼ର ସତର୍କ-

ବାଣୀ ଶୁଣିବାକୁ ପାଇ ନ ଥିବ । ସେ କଷ୍ଟ କରି ତାଙ୍କ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବା ରବରର ବୁଟ ପିନ୍ଧିଲେ ଏବଂ ବର୍ଷାଣ୍ଡଟା କାଢ଼ି ଆଣି ପଦାକୁ ବାହାରି ଗଲେ—ହେମାଳ ପବନ ତାଙ୍କ ମଥାର କେଶ ଭିତର ଦେଇ ବହି ଯିବାକୁ ଲାଗିଲା । ପବନରେ କେମିତି ଗୋଟାଏ ବନ୍ୟତା ଥିଲା । ତାଙ୍କ ସାମନାରେ ବାଦାମୀ ରଙ୍ଗର ପତ୍ରସବୁ ଉଡ଼ି ଯିବାକୁ ଲାଗିଲା ଏବଂ କେତୋଟି ତରୁଣ ମେପ୍‌ଲ ଗଛର ଶାଖା ଇତି ମଧ୍ୟରେ ରାସ୍ତାରେ ବିଚ୍ଛିନ୍ନ ହୋଇ ପଡ଼ିଥିଲା । ଗୋଟାଏ ଅଦ୍‌ଭୁତ ଆଲୋକରେ ଘାସର ଶେଷ ସବୁଜ ରଙ୍ଗ ତୀକ୍ଷ୍ଣ ଭାବରେ ବାହାରି ଆସୁଥିଲା ଏବଂ ବଡ଼ ବଡ଼ କେତେ ଟୋପା ବର୍ଷା ଆସି ଜୋରରେ ତାଙ୍କ ମୁଖ ଉପରେ ଆଘାତ କଲା ।

କୁମାରୀ ହାର୍ଟ ରିଚ୍ଛ ତଳେ ପହଞ୍ଚି ଯାଇ ସେ ଦୁଇଟି କ୍ୟାନଭାସ ଚୌକି ଉଠାଇଲେ ଏବଂ ତାପରେ ଗୋଟିଏ ହାତରେ ସେହି ଦୁଇଟିକୁ ଧରି ଦରଜାର ପିତଳ କଡ଼ାଟା ହଲାଇଲେ ।

ଦୁଆର ଖୋଲିବାକୁ ଯାଇ କୁମାରୀ ହାର୍ଟ କ୍ଷଣକ ପାଇଁ ଭାବିଲେ ଯେ ସେଠାରେ ଦଣ୍ଡାୟମାନ ଅବସ୍ଥାରେ ତାଙ୍କୁ ପ୍ରାୟ ସୁନ୍ଦର ଦେଖା ଯାଉଛି—ପବନରେ ତାଙ୍କର ଧଳା ଘନ କେଶ ଉଡ଼ୁଛି ।

ସେ କହି ପକାଇଲେ—"ଦେଖ, ଦେଖ, ଆମ କପାଳରେ ଝଡ଼ ଆସିଛି । ମୁଁ ତୁମର ଚୌକିଗୁଡ଼ାକ ଭିତରକୁ ବହି ନେଇ ଯାଉଛି ।"

କୁମାରୀ ହାର୍ଟ ଆଗକୁ ଚାଲି ଆସି ଦରଜାର ପର୍ଦାଟା ଢୁଙ୍ଗାଇ ଦେଲେ । "ମୁଁ ଭାବୁଥିଲି, ବର୍ଷା ହେବ," ସେ ମୃଦୁ ଗଳାରେ କହିଲେ—"ଆଜି ଦି'ପହରେ ମୋ ଆଣ୍ଠୁରୁ ପାଣି ଶୁଖି ଯାଇଥିଲା ।"

ମିଷ୍ଟର ଗୁଡ୍‌ସ୍ପୀଡ୍ କୌଣସି ପ୍ରକାରେ ଶୟନ କକ୍ଷରେ ପ୍ରବେଶ କରି ଚୌକିଗୁଡ଼ିକୁ କାନ୍ଥରେ ଡେରି ଦେଲେ । "ବର୍ଷା

ନୁହେଁ !" ସେ ସବିସ୍ମୟରେ କହି ଚଳାଇଲେ—"ଝଡ଼ ଆସିବ । ହୁକୃତ ଝଡ଼ ଆସିବ ! ବେତାର ସତର୍କବାଣୀ ଶୁଣାଇଛି ।"

କ୍ୟାପ୍ଟେନ ହାର୍ଟ ସନ୍ଦେହାନ୍ଧ ଦୃଷ୍ଟିରେ ଝରକା ବାହାରକୁ ଚାହିଁଲେ । "ମୋ ମତରେ ଅବସ୍ଥା ତ ସେତେ ଦୂର ଖରାପ ବୋଲି ମନେ ହେଉ ନାହିଁ ।" ସେ କହିଲେ—"ତା ଛଡ଼ା ଏଟା ତ ଝଡ଼ର ଋତୁ ବି ନୁହେଁ । ତୁଷାରପାତ ଯେ ହେବ, ତାହା ବି ତ ମୋର ମନେ ହେଉ ନାହିଁ ।"

ସେ ଗୋଟିଏ ଶ୍ରେଷ୍ଠ ନାସିକା ଧ୍ୱନି କଲେ—ଭାବିଲେ ଯେ କ୍ୟାପ୍ଟେନ ହାର୍ଟର ଘରକୁ ଆସିଲେ ଘରଟିକୁ ବେଶ୍ ସଂକୀର୍ଣ୍ଣ ବୋଲି ମନେ ହୁଏ—ତାଙ୍କର ପ୍ରତି ପଦକ୍ଷେପରେ ଘରଟା ଯେମିତି କମ୍ପୁଛି । ସେ ଗମ୍ଭୀର ଭାବରେ କହିଲେ—"ମୁଁ ଇତି ପୂର୍ବରୁ ଥରେ ଆକାଶର ଅବସ୍ଥା ଯେପରି ଦେଖିଥିଲି, ଆଜିର ଆକାଶ ଠିକ୍ ସେହିପରି ମନେ ହେଉଛି । ସେତେବେଳେ ମୋର ବୟସ ଦଶ ବର୍ଷ । ତା ଆଗରୁ କିମ୍ବା ପରେ ଆକାଶର ସେପରି ଅବସ୍ଥା ମୁଁ ଆଉ ଦେଖି ନାହିଁ । ଏହା ଠିକ୍ ସାଇକ୍ଲୋନର ଆକାଶ ଏବଂ ତହିଁ ସଙ୍ଗେ ସଙ୍ଗେ ପ୍ରତ୍ୟେକ ଜନପଦ ଉପରେ ସେହି ଚମତ୍କାର ଆଲୁଅଟା ଆସି ପଡ଼ିଛି ।"

କ୍ୟାପ୍ଟେନ ହାର୍ଟ ଶୁଖିଲା ହସ ହସିଲେ । "ମୁଁ ତ କେବେ ହେଲେ ଏ ଅଞ୍ଚଳରେ ସାଇକ୍ଲୋନ କଥା ଶୁଣି ନାହିଁ !"

"ସବୁ ଜିନିଷର ଆରମ୍ଭ ବୋଲି ଗୋଟାଏ କଥା ଅଛି"—ସେ ଆଶାବାଦୀଙ୍କ ପରି ଜବାବ ଦେଲେ । ସେ ତାଙ୍କ ଓଭରକୋଟ୍ଟା ଖୋଲି ଦେଇ ଠିଆ ହୋଇ ରହିଲେ । ସେ କହିଲେ—"ହୁଏତ ଆହୁରି କିଛି ଅଛି । ଝଡ଼ର ଗତିଟା କେଉଁ ଦିଗକୁ ହୁଏତ ଲୋକଟା ତାହା ବି ଆମ୍ଭମାନଙ୍କୁ କହି ପାରେ ।"

କିନ୍ତୁ ଖାଲି ଯନ୍ତ୍ର-ସଙ୍ଗୀତର ମଧୁର ଶବ୍ଦ ଶୁଣାଗଲା ଏବଂ ଯଦିଚ ସେ କେତେ ଥର ରେଡ଼ିଓର ନିର୍ଦ୍ଦେଶକଟି ଏପାଖ ସେପାଖ ଚଳାଇଲେ, ତଥାପି ଝଡ଼ ସମ୍ବନ୍ଧରେ ଆଉ କୌଣସି ସମ୍ବାଦ ମିଳିଲା ନାହିଁ । ପୁଣି ମୁହୂର୍ତ୍ତେ ଚେଷ୍ଟା କରି ସେ ଅନୁତାପ କଲେ—ତାଙ୍କର ମନେ ହେଲା ଯେ ଘୋଷକର ଶେଷ ଜୀବନ୍ତ ସ୍ୱରଟା ଯଦି ତାଙ୍କର ମନେ ଥାଆନ୍ତା । କିନ୍ତୁ ଘର ଭିତରକୁ ଝିଲ୍‌କାଏ ଆକସ୍ମିକ ଉଷ୍ଣ ପବନ ପଶି ଆସି ତାଙ୍କର ଅଶ୍ୱସ୍ତି ଶାନ୍ତ କରିଦେଲା ଏବଂ ସେ କୁମାରୀ ହାର୍ଟଙ୍କୁ ତାର ବତିରେ ତେଲ ଭରିବାକୁ ପ୍ରସ୍ତାବ ଦେଲେ ।

କୁମାରୀ ହାର୍ଟ ତାଙ୍କୁ କହିଲା—"ବ୍ୟସ୍ତ ହେଉନ୍ତୁ ନାହିଁ । ମୋ ପାଖରେ ମହମବତି ଅଛି । କେତେ ବର୍ଷ ତଳେ ମୁଁ ସ୍ଥିତ-ଘରେ ବତିଗୁଡ଼ିକ ରଖି ଦେଇଛି । ବିଜୁଳି ବତିଗୁଡ଼ିକ ଏତେ କମ ସମୟ ପାଇଁ ଲିଭିଯାଏ ଯେ, ଏତେ ଅଳ୍ପ ସମୟ ପାଇଁ ମୁଁ ତେଲ ବତିର ଦୁର୍ଗନ୍ଧ ସହିବାକୁ ଚାହେଁ ନାହିଁ ।"

ବର୍ଷାର ବେଗ ବଢ଼ୁଥିଲା ଏବଂ ଝରକାର କାଚରେ ଜୋରରେ ବର୍ଷା ଆସି ବାଜୁଥିଲା । କିଛି ଦୂରରେ ବଜ୍ରର ଗୁପ୍ତ ଗର୍ଜନ । ମିଷ୍ଟାର ଗୁଡ୍‌ସ୍ପିଡ୍ ମଥା ପଛକୁ ଆଉଜାଇବାକୁ ଲଗିଲେ । "ହେଇ ଝଡ଼ ଆସୁଛି !" ସେ କହି ପକାଇଲେ ।

କୁମାରୀ ହାର୍ଟ ଆବେଦନର ଭଙ୍ଗୀରେ ତାଙ୍କ ଆଡ଼କୁ ଅନାଇଲା ଏବଂ ତାର କର୍ମରତ କରରେ ବୟନ କଣ୍ଟାଟି ହଲାଇବାକୁ ଲଗିଲା । ସେ ଭାବିଲା ଯେ, ବିଚରା ବୁଢ଼ାଟି ଆସି ଖୁବ୍ ଭଲ କରିଛନ୍ତି । ସେ ଜଣେ ଭଲ ପ୍ରତିବେଶୀ । ପ୍ରକୃତରେ ସେ ସଦୟ—ମାତ୍ର ଝଡ଼ ବିରକ୍ତିକର । ତାର ରକ୍ଷାକାରୀର ବ୍ୟାପକ ଦୃଷ୍ଟି ତାକୁ ତାର ମନେ ହେଲା ଯେ ତାଙ୍କ ପାଇଁ କିଛି କରିବା ଉଚିତ । ଠିକଏ ଜୋରରେ ବଜ୍ରର ଗର୍ଜନ ହେବାରୁ ସେ ଟିକଏ କମ୍ପି ଉଠିଲେ ।

"ଭଲ୍ପ ହେଉଛି ?" ସେ ମୃଦୁ ହସି ସହାନଶୀଳ ଭାବରେ ତାଙ୍କୁ ପଚାରିଲା ।

"କଅଁକୁ ଅସ୍ୱସ୍ତି ଲାଗୁଛି," ସେ ସ୍ୱୀକାର କଲେ । "ଯନ୍ତ୍ର ବେଳାରରେ ସତର୍କ-ବାଣୀ ଶୁଣାଇ ଥାଏ, ତାହାହେଲେ ଅବସ୍ଥା ନିଶ୍ଚୟ ଗୁରୁତର ହେବ ।"

ହାଣ୍ଡିଶାଳ ଦୁଆରରେ ଶବ୍ଦ ହେଉଥିଲା । ମିଷ୍ଟାର ଗୁଡ୍‌ଷ୍ଟିଡ୍ ତାଲା ଦେବା ପାଇଁ ଉଠିଗଲେ । ଦୁଆରଟା ବନ୍ଦ କରିଦେବା ପାଇଁ ସେ ନିଜକୁ ପ୍ରସ୍ତୁତ କଲେ । କିନ୍ତୁ ଦୁଆରଟା ସହଜରେ ବନ୍ଦ ହୋଇଗଲା । ପବନଟା ଜୋରରେ ବହୁଥିଲେ ସୁଦ୍ଧା ମୃଦୁ ମନ୍ଦ ଥିବାର ଅନୁଭବ କରି ସେ ବିସ୍ମିତ ହେଲେ । ହାଣ୍ଡିଶାଳଟା ବାଷ୍ପପୂର୍ଣ୍ଣ—ପିଆଜର ଗନ୍ଧ ଏବଂ କଞ୍ଚାର, ରୋଟି ଓ ମସଲାର ସୁଗନ୍ଧରେ ପରିପୂର୍ଣ୍ଣ । ଥାକ ଉପରେ କୁମାଗ୍ର ହାର୍ଟର ବଡ଼ ଆଲାର୍ମ ଘଡ଼ିଟା ଜୋରରେ ଟିକ୍ ଟିକ୍ ଶବ୍ଦ କରୁଥିଲା । ଟେବୁଲ ଉପରେ ଗୋଟାଏ କାଠ ପାତ୍ରରେ ଆପେଲ ଥିଆ ହୋଇଥିଲା । ଷ୍ଟୋଭରେ ସେ ଜ୍ୱଳନ୍ତ କାଠର ଶବ୍ଦ ବି ଶୁଣିବାକୁ ପାଉଥିଲେ । ଝରକାର ଗୋଟାଏ ମଧୁର ପରିବେଶ—ପିଲାମାନଙ୍କ ଆଣ୍ଡି ରେଖା, ଶୁଖାଇବା ଲାଗି ଝୁଲି ରହିଥିବା ହଳେ ମୋଜା ଏବଂ ଗୋଟିଏ ଦୁଧ ବୋତଲ । ତାଙ୍କ ନିଜର ହାଣ୍ଡିଶାଳ ପରିଷ୍କାର, ସ୍ତବ୍ଧ ଓ ଅନ୍ଧକାର ଏବଂ ସେ ଚପ୍, ସିଦ୍ଧ ଆଳୁ ପ୍ରଭୃତି ଯେଉଁସବୁ ଖାଦ୍ୟ ରାନ୍ଧନ୍ତି ତାହା ଯେମିତି ପ୍ରତି ଦିନ ଏକବାଗିଆ ହୋଇ ଯାଉଥିଲା ।

ଏଠାରେ ଗୋଟାଏ ଆରାମ ଓ ଉଷ୍ମତା ଥିଲା । ଶୟନ କକ୍ଷକୁ ଫେରିଯାଇ ସେ ନିଆଁ ଆଡ଼କୁ ପିଠି କରି ଠିଆ ହେଲେ ଏବଂ ତୁରନ୍ତ ନିଜର ହାତ ଦୁଇଟି ଘଷିବାକୁ ଲାଗିଲେ । ଗୁଡ଼ ଦେଇଥିବା କଥାର ଖିଅ ଧରି ସେ କହି ଯିବାକୁ ଲାଗିଲେ, "ମୁଁ ଯେଉଁ କଥା

କହୁଥିଲ, ସେହି ଝଡ଼ ଆଗର ଆକାଶ ପରି ଆକାଶ ତୁମେ କେବେ ହେଲେ ଦେଖି ନାହଁ । ଆଉ ଯେତେବେଳେ ଝଡ଼ ଆସିଲା—ସେ କି ଝଡ଼ ! ତାପରେ ମୋର ବାବା ଝଡ଼ରେ ବିଧ୍ୱସ୍ତ ଦୃଶ୍ୟ ଦେଖାଇବାକୁ ମୋତେ ନେଇ ଯାଇଥିଲେ—ସବୁ ଜାଗାରେ ଗଛଲତା ଉପୁଡ଼ି ପଡ଼ିଥିଲା ଏବଂ ସେତେବେଳେ ବି ବଡ଼ ବଡ଼ ଶିଳାଖଣ୍ଡମାନ ଅଣ୍ଡା ଭଳି ଇତଃସ୍ତତ ବିକ୍ଷିପ୍ତ ହୋଇଥିଲା । ଗୋଟାଏ ଗଛ ଆସି ଆମର ଜଣେ ପ୍ରତିବେଶୀ ଉପରେ ପ୍ରାୟ ପଡ଼ି ଯାଇଥିଲା । ଝଡ଼ କମିଯିବା ଆଗରୁ ଘରେ ପହଞ୍ଚିବା ପାଇଁ ସେ ଧାଇଁ ଆସୁଥିଲା ଏବଂ ଠିକ୍ ତାର ପଛରେ ଗଛ ଉପୁଡ଼ି ପଡ଼ିବାର ଶବ୍ଦ ସେ ଶୁଣିବାକୁ ପାଇଥିଲା । ଆମେ ସେହି ଗଛଟିକୁ ପଡ଼ି ରହିଥିବାର ଦେଖିଥିଲୁ । ମାତ୍ର ତିନ ଫୁଟ ଯୋଗୁଁ ବିଚରା ବଞ୍ଚିଗଲା ।"

"ଭୟଙ୍କର !" କୁମାରୀ ହାର୍ଟ ମୃଦୁ କଣ୍ଠରେ କହିଲା । ସେ ବୟନ-ଯନ୍ତ୍ରଟି ଉଠାଇ ନେଲା ।

• ମିଷ୍ଟାର ଗୁଡ୍‌ଫ୍ରୀଡ୍ ପୁଣି ପବନର ଶବ୍ଦ ଶୁଣିବା ପାଇଁ ପିଠିଟା ପଛ ଆଡ଼କୁ ଆଉଜାଇ ଦେଲେ । ଝଡ଼ କଣ କମି ଯାଉଛି ? ସେ ସ୍ମୃତି ଭିତରେ ବୁଡ଼ିଗଲେ । ସେ ସାଇକ୍ଲୋନର ବଦଖିଆଲ, ବିଦ୍ୟୁତ୍‌ର ବେହେଡ଼ା ଇଚ୍ଛା ପ୍ରଭୃତି କଥା କହିବାକୁ ଲାଗିଲେ—ସେ ଥରକର ଅଣ୍ଡା ତୁଷାର ଝଞ୍ଜା କଥା କହିଲେ—ସେତେବେଳେ ୧୫ ଫୁଟ ଗଭୀର ତୁଷାରପାତ ହୋଇଥିଲା ।

କିଛି କ୍ଷଣ ପରେ କୁମାରୀ ହାର୍ଟ ଉଠି ଝରକା ପାଖକୁ ଗଲା । ସେ କହିଲା—"ଝଡ଼ ଥମି ଯାଉଛି ବୋଲି ବୋଧ ହେଉଛି ।" ସେ ଉଦ୍‌ବିଗ୍ନ ଭାବରେ ଆକାଶ ଆଡ଼କୁ ଚାହିଁଲା । "ଅବଶ୍ୟ ଥମି ଯାଉଛି । ଖାଲି ଟୋପାଏ ଟୋପାଏ ବର୍ଷା ପଡ଼ୁଛି ଏବଂ ଆକାଶ ଯଥେଷ୍ଟ ନୀଳ ଦିଶୁଛି ।"

ମିଷ୍ଟାର ଗୁଡ୍‌ଫ୍ରୀଡ୍ ବି ତତ୍‌କ୍ଷଣାତ୍ ଧାଇଁ ଯାଇ ଝରକା ବାହାରକୁ ଅନାଇଲେ । ଧୀରେ ଧୀରେ ବୃଷ୍ଟି ପଡ଼ୁଥିଲା ଏବଂ ପବନ ଥମି ଯାଇଥିଲା । ପାହାଡ଼ ଉପରେ ଖଣ୍ଡିଏ ସ୍ପଷ୍ଟ ସ୍ୱଚ୍ଛ ନୀଳ ଆକାଶ ଦେଖା ଯାଉଥିଲା । ସେ ଗଳା ପରିଷ୍କାର କରି କହିଲେ—"ହଁ, ଯଦି ଫେରି ନ ଆସେ, ତାହାହେଲେ ଆମେ ଏକ୍ଷଣି ବିପଦମୁକ୍ତ ।" କିନ୍ତୁ ତାଙ୍କ ଗଳାରେ ଆଶାର କୌଣସି ସ୍ପର୍ଶ ନ ଥିଲା ।

ସେ ନଇଁ ପଡ଼ି ତାଙ୍କର ବଡ଼ ରବର ବୁଟ ଆଡ଼କୁ ଅନାଇଲେ ଏବଂ କହିଲେ, "ଏଥର ମୁଁ ଯାଉଛି ।"

କୁମାରୀ ହାର୍ଟ ତାଙ୍କୁ ବର୍ଷାତିରେ ବୋତାମ ଲଗାଇବାର ଦେଖିଲା । ସହସା ତାର ଇଚ୍ଛା ହେଲା, ରାତ୍ର ଭୋଜନ ପାଇଁ ତାଙ୍କୁ ନିମନ୍ତ୍ରଣ କରିବ ଏବଂ ଏକ ଦମ୍ପତିଙ୍କୁ ନିମନ୍ତ୍ରଣ କରି ବ୍ରିଜ୍ ଖେଳର ପ୍ରସ୍ତାବ କରିବ । କିନ୍ତୁ ସେ କଥା ଉଠାଇବା ପୂର୍ବରୁ ସେ ବାହାରି ଯାଇଥିଲେ ।

ସେ ରବର ବୁଟ୍‌ଗୁଡ଼ାକୁ ଟାଣି ଟାଣି ରାସ୍ତାରେ ଚାଲିବାକୁ ଲାଗିଲେ । ରାସ୍ତା ଉପରେ ପତ୍ରସବୁ ସ୍ତୂପାକାରରେ ଜମା ହୋଇଥିଲା । ମେଘଗୁଡ଼ିକ ମିଳାଇ ଯାଉଥିଲେ, ଆଉ ଝଡ଼—ଝଡ଼ର ପୂର୍ବାଭାସ କହିଲେ ବି ଚଳେ — ଶେଷ ହୋଇ ଯାଇଥିଲା ।

ସେ ସମ୍ମୁଖସ୍ଥ ଦୀର୍ଘ ଏକବାଗିଆ ସନ୍ଧ୍ୟା ଓ ଦୀର୍ଘ ଏକବାଗିଆ ମାସଗୁଡ଼ିକର କଥା ଭାବିବାକୁ ଲାଗିଲେ । ରାତି ପରେ ରାତି ଏକାକୀ ବସି, ସାମୟିକ ପତ୍ରିକାର ପୃଷ୍ଠା ଓଲଟାଇ, ପ୍ରାଚୀନ-ପନ୍ଥୀ ହୋଇ ନଭ ନାର୍ଭିଂ ବୋଲି ଯୁଗ ସମ୍ବନ୍ଧ ତାଳ ଦେଇ ଚାଲି, ପବନର ଦୁଃସାହସିକ ଶବ୍ଦ ଶୁଣି ଏବଂ ଘଡ଼ିର କଣ୍ଟାକୁ ନଅ ଦଶ କରି ଆଗେଇ ଯିବାର ଦେଖି ତାଙ୍କର ଦିନ ବିତିବ । ଏହି ସବୁ କଥା

ଭାବ ତାଙ୍କର ଉପ୍ନ ହେଲା ଯେ ସେ କେଉଁଠି ଯେମିତ କଷ୍ଟ ହଜାଇ ଦେଉଛନ୍ତି—ତଥାପି ସେ ନିଜକୁ ବାରମ୍ବାର ଏହା କହି ଆଶ୍ୱାସନା ଦେଉଥିଲେ ଯେ, ଜୀବନର ସାଧାରଣ ଜିନିଷଗୁଡ଼ିକ ହିଁ ହେଉଛି ଶ୍ରେଷ୍ଠ ସମ୍ପଦ ।

— ସୱାଲ ବେନ୍‌ସନ

# ଅନ୍ଧ

ମିଷ୍ଟର ପାର୍ସନ୍ସ ଯେତେବେଳେ ତାଙ୍କ ହୋଟେଲରୁ ବାହାରିଲେ, ସେତେବେଳେ ଜଣେ ଭିକାରୀ ସେହି ରାସ୍ତାରେ ତାଙ୍କ ଆଡ଼କୁ ଆସୁଥିଲା ।

ଭିକାରୀଟି ଅନ୍ଧ । ତାର ଗୋଟିଏ ହାତରେ ଖଣ୍ଡିଏ ଲମ୍ବା ବାଡ଼ି ଥିଲା । ସେ ସେଥିରେ ରାସ୍ତା ବାରି ବୁଲିଚାଲି କରୁଥିଲା । ଲୋକଟି ଟିକିଏ କୁଜା ଭଳି ଦିଶୁଥିଲା । ଦେହରେ ଗୋଟିଏ ପୁରୁଣା ମଇଳା କୋଟ । ଅନ୍ୟ ହାତଟି ହାଉ କାନ୍ଧ ଉପରେ ଗୋଟିଏ ଟ୍ରେଟ ଥଳି ଧରି ରଖିଥିଲା । ସେଥିରେ ବିକ୍ରୀ ପାଇଁ କୌଣସି ଜିନିଷ ଅଛି ବୋଲି ମନେ ହେଉଥିଲା ।

ବସନ୍ତର ସମୀରଣରେ ଥିଲା ଫୁଲକର ମାଧୁର୍ଯ୍ୟ, ଆଉ ସୂର୍ଯ୍ୟଙ୍କର ଆଲୋକରେ ରମଣୀୟ ଉଷ୍ମତା । ମିଷ୍ଟର ପାର୍ସନ୍ସ ହୋଟେଲ ଆଗରେ ଠିଆ ହୋଇ ଭିଡ଼ ଆଗେଇ ଆସୁଥିବା ଅନ୍ଧ ଭିକାରୀର ପଦ-ଶବ୍ଦ ଶୁଣିବାକୁ ଲାଗିଲେ । ସମସ୍ତ ଅନ୍ଧ ପ୍ରାଣୀକୁଳ ପାଇଁ ତାଙ୍କ ମନରେ ସହସା କେମିତି ଏକ କରୁଣା ଜାତ ହେଲା ।

ମିଷ୍ଟର ପାର୍ସନ୍ସ ଭାବିବାକୁ ଲାଗିଲେ, ବାସ୍ତବରେ ସେ ସୁଖୀ ଅଛନ୍ତି । କେତେ ବର୍ଷ ତଳେ ସେ କେବଳ ଜଣେ ସୁଦକ୍ଷ ଶ୍ରମିକ ବଂଶଜାତ ଆଉ କିଛି ନ ଥିଲେ । କିନ୍ତୁ ଆଜି ଜୀବନରେ ସେ

କୃତକାର୍ଯ୍ୟ, ସମ୍ମାନିତ ଓ ପ୍ରଶଂସିତ । ଆଜି ଏହି ଜୀବନର ପଥରେ ସେ ଏକାକୀ ଆଗେଇ ଆସିଛନ୍ତି, ବହୁ ବାଧା ବିଘ୍ନ ଅତିକ୍ରମ କରି, କାହାରି ସାହାଯ୍ୟ ନ ନେଇ ।

ଅନ୍ଧ ଭିକାରୀଟି ତାଙ୍କୁ ଅତିକ୍ରମ କରି ଯିବାରୁ ସେ ବି ପାହୁଣ୍ଡେ, ଦୁଇ ପାହୁଣ୍ଡ ଆଗେଇ ଗଲେ । ହଠାତ୍ ଭିକାରୀଟି ଫେରି ପଡ଼ି ଠିଆ ହୋଇ କହିଲା—ଦୟା କରି ଟିକିଏ ଶୁଣନ୍ତୁ ବାବୁ, ଏଇ ମିନିଟିଏ ।

ମିଷ୍ଟର ପାର୍ସନ୍ସ କହିଲେ—ମୁଁ ବେଶୀ ସମୟ ଠିଆ ହୋଇ ପାରିବି ନାହିଁ । ତୁମେ କ'ଣ କିଛି ଭିକ୍ଷା ଚାହୁଁଛ ?

ଅନ୍ଧ ଲୋକଟି କହିଲା—ମୁଁ ଭିକାରୀ ନୁହେଁ, ବାବୁ । ମୁଁ ଗୋଟିଏ ଜିନିଷ ବିକ୍ରୀ କରିବାକୁ ଚାହେଁ ।

ଅଳ୍ପ କିଛି ଭିତରେ କିଛି ସମୟ ଅଣ୍ଡାଳି ସେ ଗୋଟିଏ ଛୋଟ ଜିନିଷ ଆଣି ମିଷ୍ଟର ପାର୍ସନ୍ସଙ୍କ ହାତରେ ଦେଲା ଏବଂ କହିଲା—ଏଟା ଗୋଟେ ଖୁବ୍ ଭଲ ସିଗାରେଟ ଲାଇଟର ।

ମିଷ୍ଟର ପାର୍ସନ୍ସ ସେଠାରେ ଠିଆ ହୋଇ ସେମିତି କିଛିକ୍ଷଣ ବିବ୍ରତ ଓ ବିରକ୍ତ ବୋଧ କରିବାକୁ ଲାଗିଲେ । ତାଙ୍କର ଚେହେରା ସୁନ୍ଦର ଥିଲା ଏବଂ ସେ ଦାମିକା ଧୂସର ରଙ୍ଗର ପୋଷାକ ଓ ଟୋପି ପିନ୍ଧିଥିଲେ । ତାଙ୍କ ହାତରେ ଖଣ୍ଡିଏ ସୁନ୍ଦର ମାଲକ୍କା ଛଡ଼ି ବି ଥିଲା । ମାତ୍ର ଅନ୍ଧ ଲୋକଟି ତାଙ୍କୁ ଦେଖି ପାରୁ ନ ଥିଲା ।

ମିଷ୍ଟର ପାର୍ସନ୍ସ କହିଲେ—ମୁଁ ତ ଧୂମ୍ରପାନ କରେ ନାହିଁ ।

ଅନ୍ଧଟି ପୁଣି ଅନୁନୟ ସ୍ୱରରେ କହିଲା—ଦେଖନ୍ତୁ, ଆପଣଙ୍କର ନିଶ୍ଚୟ ଅନେକ ପରିଚିତ ଲୋକ ଅଛନ୍ତି, ଯେଉଁମାନେ ଧୂମ୍ରପାନ କରନ୍ତି । ସେମାନଙ୍କ ଭିତରୁ କାହାରିକୁ ହେଲେ

ଆପଣ ଏଟା ଉପହାର ଦେଇ ପାରନ୍ତି । ଜଣେ ଗରିବ ଅନ୍ଧକୁ କ'ଣ ଆପଣ ଏତିକ ମାତ୍ର ସାହାଯ୍ୟ କରି ପାରିବେ ନାହିଁ ?

ମିଷ୍ଟର ପାର୍‌ସନ୍‌ସ ପକେଟରେ ହାତ ପୂରାଇ ଦୁଇଟା ଅଧା-ଡଲାର ବାହାର କଲେ ଏବଂ ତା ପରେ ଅନ୍ଧ ଲୋକଟି ହାତରେ ତାହା ଦେଇ କହିଲେ—ନିଶ୍ଚୟ ସାହାଯ୍ୟ କରିବି । ଲାଇଟାରଟା ମୁଁ ଯେ କୌଣସି ଲୋକକୁ ଦେଇ ପାରିବି ।

ଟିକଏ ଇତସ୍ତତଃ ହୋଇ ନିଜ କୌତୂହଳ ଆଉ ଚାପି ରଖି ନ ପାରି, ମିଷ୍ଟର ପାର୍‌ସନ୍‌ସ ତାକୁ ପଚାରିଲେ—ତୁମେ କ'ଣ ସମ୍ପୂର୍ଣ୍ଣ ଅନ୍ଧ ?

ଲୋକଟି ଅଧା-ଡଲାର ଦୁଇଟି ତା ପକେଟରେ ରଖୁଁ ରଖୁଁ ଜବାବ ଦେଲା— ଚଉଦ ବର୍ଷ ହେଲା, ବାବୁ ! ତାପରେ ଟିକଏ ଗର୍ବର ସ୍ୱରରେ ସେ କହିଲା—ସବୁ କପାଳ, ବାବୁ ! ନ ହେଲେ ମୁଁ ପରା ଓ୍ୱେଷ୍ଟବାୟା ବଂଶର ଜଣେ ଥିଲି ।

ମିଷ୍ଟର ପାର୍‌ସନ୍‌ସ ବିସ୍ମିତ ହୋଇ କହିଲେ—ଓ୍ୱେଷ୍ଟବାୟା !

ଅନ୍ଧଟି କହି ଯିବାକୁ ଲାଗିଲା—ହଁ, ବାବୁ ! କିଛି ଦିନ ତଳେ କେମିକାଲ କମ୍ପାନୀରେ ଯେଉଁ ମସ୍ତ ବଡ଼ ଗୋଟାଏ ବିସ୍ଫୋରଣ ଘଟିଥିଲା, ସେହି ବିଷୟ ଆପଣ ହୁଏତ ଖବର କାଗଜରେ ପଢ଼ିଥିବେ । ଆଜି ସମସ୍ତେ ସେହି କଥା ପାଶୋରି ଦେଲେଣି । ମାତ୍ର ଯେଉଁମାନଙ୍କର କ୍ଷତି ହୋଇଛି, ସେମାନେ କ'ଣ ତାହା ଆଦୌ ଭୁଲି ପାରିବେ !

ମିଷ୍ଟର ପାର୍‌ସନ୍‌ସ ଥରେ କାଶିଲେ । ଅନ୍ଧ ଲୋକଟି ଶ୍ରୋତାର କରୁଣା ଉଦ୍ରେକ କରି ଆଉ କିଛି ଆଦାୟ କରିବା ଅଭିପ୍ରାୟରେ ପୁଣି କହି ଚାଲିଲା—ଥରେ ଭାବନ୍ତୁ ତ କି ଭୟଙ୍କର ସେଟା ! ଶହେ ଆଠ ଜଣ ମରି ଯାଇଥିଲେ ଏବଂ ପ୍ରାୟ ଦୁଇ ଶହ

ଲୋକ ଆହତ ହୋଇଥିଲେ । ପ୍ରାୟ ପଚିଶ ଜଣ ଲୋକ ଅନ୍ଧ ହୋଇ ଯାଇଥିଲେ, ବାହୁଡ଼ି ଭଳି ଏକବାରେ ଅନ୍ଧ । ଟିକଏ ରହିଯାଇ ସେ କହିଲା—ଯୁଦ୍ଧ ବି ଏହା ଠାରୁ ଭୟଙ୍କର ନୁହେଁ, ବାବୁ । ଯଦି ମୁଁ ଯୁଦ୍ଧକୁ ଯାଇ ଅନ୍ଧ ହୋଇ ଥାଆନ୍ତି, ତାହାହେଲେ ବି ସରକାରଙ୍କ ଠାରୁ ସାହାଯ୍ୟ ପାଇ ଥାଆନ୍ତି । କିନ୍ତୁ ମୁଁ କେବଳ ଜଣେ ସାଧାରଣ ଶ୍ରମିକ ଥିଲି, ଆଜ କିଛି ବି ନୁହେଁ !

ମିଷ୍ଟର ପାର୍ସନ୍ସଙ୍କ ନୀରବତାରେ ଉତ୍ସାହିତ ହୋଇ ସେ ପୁଣି କହିଲା—ମୁଁ କେମିତି ଅନ୍ଧ ହେଲି ଆପଣ ଜାଣନ୍ତି ? ଏହା ପୂର୍ବରୁ ଯେଉଁ କାହାଣୀ ବହୁ ବାର ବର୍ଣ୍ଣନା କରି ସେ ଶ୍ରୋତା-ମାନଙ୍କର କରୁଣା ଉଦ୍ରେକ କରିଛି, ସେହି କାହାଣୀଟି ସେ ନିପୁଣ ଭାବରେ କହି ଯିବାକୁ ଲାଗିଲା—ମୁଁ ସେହି କେମିକାଲ କମ୍ପାନୀର 'ସି' ନମ୍ବର ଦୋକାନରେ ଥିଲି । ଯେତେବେଳେ ବିସ୍ଫୋରଣ ଆରମ୍ଭ ହେଲା, ସେତେବେଳେ ସମସ୍ତେ ଦୌଡ଼ାଦୌଡ଼ି କରି ବାହାରକୁ ଚାଲି ଯିବା ପାଇଁ ଚେଷ୍ଟା କଲେ । ମୁଁ ସମସ୍ତଙ୍କ ପଛରେ ପଡ଼ିଗଲି । ଘର ଭିତରେ ଜିନିଷପତ୍ର ସବୁ ଭାଙ୍ଗି ଚୂରି ଚୁନ୍ ଛତର ହୋଇଗଲା । ସମସ୍ତେ ବାହାରିଯିବା ପରେ ମୁଁ ଅତି କଷ୍ଟରେ ହାମୁଡ଼େଇ ହାମୁଡ଼େଇ ଦୁଆର ପାଖକୁ ଆଗେଇ ଗଲି । ହଠାତ୍ ପଛରୁ କିଏ ମୋର ଗୋଡ଼ ଧରି ପକାଇ, ଉତ୍ତେଜିତ କଣ୍ଠରେ କହିଲା—ମୋତେ ଟିକିଏ ଆଗେଇ ଯିବାକୁ ଦିଅ । ଏହା କହି ସେ ମୋତେ ସେହି ଜଞ୍ଜାଳ-ସ୍ତୂପ ମଝିରେ ପକାଇ ଦେଇ ମୋ ଉପରେ ଚଢ଼ି ଦୁଆର ପାର ହୋଇ ବାହାରକୁ ଚାଲିଗଲା । ନାନା ପ୍ରକାର ବିଷାକ୍ତ ତରଳ ପଦାର୍ଥ ମୋ ଦେହ ଉପରେ ପଡ଼ିବାକୁ ଲାଗିଲା । ଗ୍ୟାସରେ ମୋର ଦମ ବନ୍ଦ ହୋଇ ଆସିଲା ।

ଅନ୍ଧ ଲୋକଟି ପାଟି ଭିତରେ ଗୋଟିଏ ଢୋକ ଗିଳି, ଖୋଟାଏ ଅଦ୍ଭୁତ ସ୍ପନ୍ଦନ ଧ୍ୱନି ତା କଣ୍ଠରେ ଚାପି ରଖି, ଠିଆ ହୋଇ ରହିଲା।

ମିଷ୍ଟର ପାର୍ସନ୍ସ କହିଲେ—ଠିକ୍ ତାହା ନୁହେଁ।

ବିସ୍ମିତ ହୋଇ ଅନ୍ଧ କହିଲା—ଠିକ୍ ତାହା ନୁହେ କଣ କହୁଛନ୍ତି, ବାବୁ ?

ମିଷ୍ଟର ପାର୍ସନ୍ସ କହିଲେ—କଥାଟା ଅବଶ୍ୟ ସତ, କିନ୍ତୁ ତୁମେ ତାକୁ ଟିକିଏ ଘୁରାଇ କହୁଛ।

—ଘୁରାଇ କହୁଛି ! ସେ କି କଥା, ବାବୁ ?

ମିଷ୍ଟାର ପାର୍ସନ୍ସ କହିଲେ—'ସି' ନମ୍ବର ଦୋକାନରେ ମୁଁ ଥିଲି। ତୁମେ ପଛରୁ ଆସି ମୋତେ ଠେଲି ଦେଇଥିଲ, ଏବଂ ତାପରେ ମୋ ଉପରେ ଚଢ଼ି ବାହାରି ଯାଇଥିଲ, ମାର୍କଓୟାର୍ଡ଼ !

ମାର୍କଓୟାର୍ଡ଼ ବଜ୍ରାହତ ପରି କିଛି ସମୟ ଠିଆ ହୋଇ ରହିଲା, ଆଉ ତାପରେ କହିଲା—ହାୟ ଭଗବାନ ! ମୋତେ କ୍ଷମା କର, ପାର୍ସନ୍ସ। କିନ୍ତୁ ସେ ଯାହା ହେଉ, ତୁମେ ତ ଦେଖୁଛ, ମୁଁ ଅନ୍ଧ। ମୁଁ ଅନ୍ଧ ହୋଇ ଯାଇଛି। ଆଉ ତୁମେ ମୋ ସାମନାରେ ଠିଆ ହୋଇ ମନେ ମନେ ହସୁଛ। ମୁଁ ଅନ୍ଧ ବୋଲି ମୋତେ ଉପହାସ କରୁଛ। ମାର୍କଓୟାର୍ଡ଼ ଚିତ୍କାର କଲା।

ବାଟୋଇମାନେ ଆଶ୍ଚର୍ଯ୍ୟ ହୋଇ ସେମାନଙ୍କ ଆଡ଼କୁ ଅନାଇଲେ।

—ତୁମେ ରକ୍ଷା ପାଇଛ, ଆଉ ମୁଁ ଅନ୍ଧ ହୋଇ ଯାଇଛି। ଶୁଣି ପାରୁଛ ? ମୁଁ ଅନ୍ଧ ହୋଇ ଯାଇଛି।

ମିଷ୍ଟାର ପାର୍ସନ୍ସ ଶାନ୍ତ କଣ୍ଠରେ କହିଲେ—କାହିଁକି ଅନର୍ଥକ ଚିତ୍କାର କରୁଛ, ମାର୍କଓୟାର୍ଡ଼ ? ମୁଁ ବି ଅନ୍ଧ।

— ମ୍ୟାକିନ୍‌ଲେ କ୍ୟାଣ୍ଟର

# ପ୍ରଥମ ସନ୍ତାନ

ନିଦ ଭାଙ୍ଗିଗଲା । ଆଖି ଖୋଲିଲା କ୍ଷଣି ଟାଣ ଖରା ଆସି ମୁହଁରେ ବାଜିଲା । ତତ୍‌କ୍ଷଣାତ୍ ସେ ଆଖି ମୁଦି ଦେଲା । ଗଭୀର ନିଦ୍ରାର ଅବିଚ୍ଛିନ୍ନ ଶାନ୍ତି ଭିତରେ ସେ ବୁଡ଼ି ଯିବାକୁ ବସିଲା । କିନ୍ତୁ ଆଖି ପତାରେ ତୀବ୍ର ସୂର୍ଯ୍ୟାଲୋକ ପଡ଼ୁ ଥିବାରୁ ନିଆଁ-ଝୁଲର ଯନ୍ତ୍ରଣା ଭଳି ତାକୁ ବୋଧ ହେଲା । ଏଥର ସେ ଆଖି ଖୋଲିଲା । ଶୋଇବାକୁ ମନ ହେଉଥିଲେ ବି ସେ ଆଉ ଆଖି ବୁଜିଲା ନାହିଁ । ବରଂ କାନ ଡେରି ସେ ଯେମିତି ନାନା ପ୍ରକାର ଅଶ୍ରୁତ କୋଳାହଳ ଶୁଣି ପାରିଲା । ସେହି କୋଳାହଳ ଶୁଣୁ ଶୁଣୁ ତାର ସମସ୍ତ ଜଡ଼ତା କଟି ଗଲା । ମନେ ହେଲା, ସକାଳ ହେଲାଣି । ତାର ମନେ ପଡ଼ିଗଲା, ସେ ହେଉଛି ଏହି ଘରେ ସବୁ ଠାରୁ ବଡ଼ ପିଲା । ଛୋଟ ଛୋଟ ଚଞ୍ଚଳ ବେପରବାଏ ହିଂସୁକ ଛଅଟି ପ୍ରାଣୀ ଭିତରେ ସେ ବି ଜଣେ, ଆଉ ସେମାନଙ୍କ ଠାରୁ ବଡ଼ ବୋଲି ତାର ପରିଚୟ । ତାହା ନ ହେଲେ ସେ କେହି ନୁହେଁ ବୋଲି କୁହାଯାଇ ପାରେ । ଏହି ଯାହାରେ ତାର ମୂଲ୍ୟ କିଛି ନୁହେ ।

ତାର ବୟସ ତେର ବର୍ଷ । ସାଧାରଣ ପିଲାଙ୍କ ଠାରୁ ତାର ମଥାଟି ଟିକେ ଲମ୍ବା, ଆଉ ତାର ଶରୀର ରୋଗଣା ଓ ଶ୍ରୀହୀନ । ତାହା ଛଡ଼ା ସେ ଭାରି ଖୁଜୁବୁଜିଆ । ତାର ମୁହଁର ହାଡ଼ଗୁଡ଼ାକ

ଖୁବ୍ ଉଜ୍ଜ୍ୱଳ ଏବଂ ମୁଖର ଭାବଟା ସମ୍ପୂର୍ଣ୍ଣ ବୋକା ଧରଣର । ତାର କର୍କଶ ଓ ଶିରା ବହୁଳ ହାତ ଦୁଇଟି ସବୁବେଳେ ଦୁଷ୍ଟାମୀ କରି ବୁଲୁଥାଏ । ବୁଲୁଥାଏ କହିଲେ ଠିକ୍ ହେବ ନାହିଁ । କହିବାକୁ ହେବ, ସେ ଦୁଷ୍ଟାମୀକୁ ଖୋଜି ବୁଲୁଥାଏ, ତିରସ୍କୃତ ହେବ ବୋଲି ତାକୁ ଖୋଜୁଥାଏ ।

ଭାଇ ଭଉଣୀଙ୍କ ଭିତରେ ସେ ହେଉଛି ସବୁଠୁ ବଡ଼ । ତାର ନାମ ଜିମ୍ । ତା ଠାରୁ ବର୍ଷେ ସାନ ହେଲା ଭଉଣୀ ଜେନ୍ । ତାପରେ ବେନ୍, ନଅ ବର୍ଷ ବୟସର ଭାଇଟିଏ । ତାର ତଳ ଭାଇ କ୍ୟାଲେର ବୟସ ହେଲା ଆଠ ବର୍ଷ । କ୍ୟାଲେର ତଳ ଭଉଣୀ ଲିଜକୁ ଦୁଇ ବର୍ଷ ଏବଂ ପନ୍ଦର ମାସର ଶିଶୁ ପିଟାର୍ ହେଉଛି ଭାଇ ଭଉଣୀଙ୍କ ଭିତରେ ସବୁଠୁ ସାନ ।

ନିଦ ଭାଙ୍ଗି ଯିବାରୁ ଧୀରେ ଧୀରେ ଜିମ୍‌ର ମନେ ପଡ଼ିଲା, ସେମାନେ କେଉଁଠି ଅଛନ୍ତି ଓ କିପରି ଭାବରେ ଅଛନ୍ତି । ତାର ଆହୁରି ମନେ ପଡ଼ିଲା, କି ଶବ୍ଦ ସେ ଶୁଣିବାକୁ ପାଉଛି ଏବଂ ସକାଳର ଏହି ଆଲୋକ କି ରୂପ ଧରି ତା ପାଖକୁ ଆସିଛି ! ଦିନ ଓ ଘଣ୍ଟାର ବିଶେଷ କିଛି ଅର୍ଥ ତା କାଛରେ ନାହିଁ । ଯାହା ବା ଅଛି, ତାହା ହେଲା ଜିନିଷ ବୋଝେଇ ହୋଇଥିବା ସେହି ବଡ଼ ବଡ଼ ଘୋଡ଼ାଗାଡ଼ି ଅଠରଟା । ତାହା ହିଁ ହେଲା ତାର ପୃଥିବୀ । ଏହି ପୃଥିବୀ ଭିତରେ କଳି ତକରାଳ କରି, ଆଦର ଯତ୍ନ କରି, ଶୋଇ ବସି, ନିଦରୁ ଉଠି ତାର ଦିନ କଟି ଯାଉଛି । ଅତୀତ କିମ୍ବା ଭବିଷ୍ୟତର କୌଣସି ପ୍ରଶ୍ନ ତାହା ନିକଟରେ ନାହିଁ । ହୁଏତ କେବେ କେବେ ଖାଲି କ୍ଷଣକ ପାଇଁ ତାର ମନେ ପଡ଼ିଯାଏ, ସେମାନେ କେଉଁଠି ଥିଲେ ଏବଂ ଆଜି କୁଆଡ଼େ ଚାଲିଛନ୍ତି । ସେମାନେ କୁଆଡ଼େ ଯାଉଛନ୍ତି, ସେହି ବିଷୟରେ ଆଜି ଯାଏ ତାର କୌଣସି ସ୍ପଷ୍ଟ ଧାରଣା ନାହିଁ ।

ତାର ମନେ ନାହିଁ, ସେଟା ଅଠର ଶହ କି ଆସ୍ତର ସାଲ୍‌ । ସାମନାରେ ବହୁତ ଦୂରରେ, ଯେଉଁଠି ଆକାଶର ରଙ୍ଗ ଦିଗନ୍ତ ଜଗତର ନଳିଗ୍ରଢ଼ ଗାଢ଼ ନୀଳ ହୋଇ ଯାଇଛି, ସେଟା ଯେ ଆକାଶଚୁମ୍ବୀ ଓ ପ୍ରସ୍ତରମୟ ପର୍ବତମାଳା, ତା ନିକଟରେ ଏ କଥାର ବି କୌଣସି ବିଶେଷ ଅର୍ଥ ନାହିଁ । ଏହି ଯେ ଅଠରଟି ଗାଡ଼, ଏହା ହିଁ ହେଉଛି ତାର ପୃଥିବୀ । ଯାର ଭିତରେ ସେ ନିଜକୁ ହଜାଇ ଦେଇଥିଲା ।

ଏହିପରି ଭାବରେ ତାର ନିଦ ଭାଙ୍ଗି ଗଲା । ତା ଆଗରୁ ସମସ୍ତ ଆଳସ୍ୟ ଅପସରି ଯାଇ ଫୁଟି ଉଠିଲା ସୂର୍ଯ୍ୟାଲୋକର ପ୍ରଖରତା ଓ ରନ୍ଧନର ଗନ୍ଧ । ଜେନର କୃପାରେ ସେ ସଚେତନ ହୋଇ ଉଠିଲା । ତାର ପଞ୍ଜରା ଆସି ଯାର ହାତର କହୁଣୀକୁ ଚୁପି ଧରିଛି । ମୂହୂର୍ତ୍ତେ ମାତ୍ର । ତାପରେ ସେ ତା କହୁଣୀରେ ଜୋରରେ ତା ଉଜଣୀକୁ ଗୋଟାଏ ଧକ୍‌କା ମାରିଲା । ଏହି ଧକ୍‌କାରେ ଜେନର ନିଦ ପତଳା ହୋଇଗଲା । ଆଉ ଗୋଟାଏ ଧକ୍‌କା ଦେବା କ୍ଷଣି ସେ ହଠାତ୍‌ କାନ୍ଦି ପକାଇଲା । —ଉଠି ଯା ଏଠୁ କହୁଛି ।

ଜିମ ଉଠି ପଡ଼ିଲା । ତାର ରୌଦ୍ର-ତପ୍ତ ପତଳା ମୁହଁଟିରେ ଗୋଟାଏ ଦୁଷ୍ଟାମୀର ଛାୟା ଭାସି ଉଠିଲା । ଦୁଇ ଓଠ ଫୁଲାଇ ସେ ସୁସୁର ମାରି ଗାଇବାକୁ ଆରମ୍ଭ କଲା—ଆହା, ସୁସାନ୍ନା, ସୁନା ଝିଅଟା ପରି, ମୋ ଲାଗି ଆଉ କାନ୍ଦ ନା ।

ଜେନ ଗୋଡ଼ ଛିଞ୍ଚାଡ଼ିବାକୁ ଲାଗିଲା । ଜିମ୍‌ ତାକୁ ମାଡ଼ି ବସିଲା ଏବଂ ସୁସୁର ମାରି ସେହି ଗୀତଟା ଗାଇବାକୁ ଲାଗିଲା । ହଠାତ୍‌ କାହାର ପଦ ଧ୍ୱନିରେ ସେ ଚମକି ପଡ଼ିଲା । ମଥା ଟେକି ସେ ଦେଖିଲା, ତାର ମାଆ ଆସୁଛି । ତା ମାଆର ଲମ୍ବା ଚଉଡ଼ା ମସ୍ତ ବଡ଼ ଦେହେଗା ତାର କୋଳରେ ଛୋଟ ଶିଶୁଟିଏ । ତାର ଗମନ ଭଙ୍ଗୀ ଅଦ୍ଭୁତ । କୁହା ଯାଇପାରେ, ସେ ପ୍ରାୟ ନଇଁ ପଡ଼ି ଚାଲୁଛି । ମାଆର ଏହି

ଅଦ୍ଭୁତ ଗମନ ଭଙ୍ଗୀ ପଛରେ ଇତିହାସ ଅଛି । ସେହି ସବୁ କଥା ଜିମ୍‌ର ମନେ ପଡ଼ିଲା । ଏହି ଅଠର ଖଣ୍ଡ ଗୋଡ଼ ବିଶିଷ୍ଟ ପୃଥିବୀର କଥା ତାର ମନେ ପଡ଼ିଲା । ଏହି ପୃଥିବୀଟି ସମାନ ଗତିରେ ଆଗକୁ ଗଡ଼ି ଚାଲିଥିଲା । ଆଜି ହଠାତ୍ ତାର ଗତି ନିଶ୍ଚଳ ହୋଇ ଯାଇଛି । ସେମାନେ ଗୋଟାଏ ପ୍ରାଚୀର ରଚନା କରି ଠିଆ ହୋଇଯାଇଛନ୍ତି । ସେହି ପ୍ରାଚୀର ତଳେ ଖାଇ ଖୋଳା ଯାଇଛି । ସେହି ଖନିତ ଖାଇର ଆଶ୍ରୟରେ ସେମାନେ ଆତ୍ମରକ୍ଷା କରୁଛନ୍ତି ଏବଂ ଶତ୍ରୁର ଆକ୍ରମଣକୁ ପ୍ରତିହତ କରୁଛନ୍ତି । ଜିମ୍ ଥରେ ଶତ୍ରୁର ରୂପଟା ମନେ ମନେ ଠିକ୍ କରିନେଲା । ତାର ଆଖି ଆଗରେ ଭାସିଗଲା କେତେଗୁଡ଼ାଏ ବାଦାମୀ ରଙ୍ଗର ଚେହେରା, ସେମାନଙ୍କର ବିଚିତ୍ର ଚହଣି । ଆଉ ମନେ ହେଲା, ସାମନାରେ ଧୂସର ମାଟିରେ କେତେଗୁଡ଼ାଏ ଛାଇ ଆସି ବସିଛି । ଗତି ଶୂନ୍ୟ ହେଲେ ସୁଦ୍ଧା ସେହି ଛାଇର ପ୍ରତିହତ ବେଗର ସ୍ପନ୍ଦନ ଏବେ ବି ମିଳାଇ ଯାଇ ନାହିଁ—ଥର ଥର ହୋଇ କମ୍ପୁଛି । ଶତ୍ରୁକୁ ପରାସ୍ତ କରିବାର କଳ୍ପନାଟା ତାର ଭଉଣୀକୁ ହସାଇ ବସିଥିବାର ଚିନ୍ତାରେ ମିଶିଗଲା । ଫଳରେ ସବୁ କଥା ଭୁଲି ଯାଇ ସେ ଆନମନା ହୋଇ ପୁଣି ସୁସୁରି ମାରିବାକୁ ଲାଗିଲା—ଆହା, ହୁସାନ୍ଧା, ସୁନା ଝିଅଟା ପରା, ମୋ ଲାଗି ଆଉ କାନ୍ଦ ନା ।

—ମାଆ, ଫେର୍ ମୋତେ ସେ ମାରୁଛି । କୌଣସି ପ୍ରତିବାଦ ନ କରି ଜିମ୍ ପୂର୍ବ ପରି ସୁସୁରି ମାରିବାକୁ ଲାଗିଲା । ମାଆ ଧମକାଇଲା—ଏ, ସୁସୁରି ବନ୍ଦ କର । ତାପରେ ତାର ସାନ ଭାଇଟାକୁ ସେ କୋଳରୁ ଓହ୍ଲାଇ ଦେଲା । ଏହି ତ ଅଳ୍ପ କ୍ଷଣ ହେଲା ସକାଳ ହୋଇଛି । ଏହା ଭିତରେ ମାଆର ମୁଖରେ ଓ ଆଖିରେ କପରି ଏତେ କ୍ଲାନ୍ତି ଫୁଟି ଉଠିଲା ?

ଜେନ ପୁଣି ଅଭିଯୋଗ କଲା— ସେ ମୋତେ ମାରୁଛି ।

—ମିଥ୍ୟା ! ସଜୋରରେ ପ୍ରତିବାଦ ଜଣାଇ ଜମ ନୀରବ ହୋଇଗଲା । ତାର ମୁହଁରେ ବୋକାମୀର ଭାବ ଫୁଟି ଉଠିଲା । ତାହା ଦେଖିଲେ ଲୋକ ଅନାୟାସରେ ବୁଝି ପାରିବ, କିଏ ମିଛ କଥା କହୁଛି । ଏଥର ସମସ୍ତେ ତାକୁ ବକିବେ । ଏମିତି ବ ଘଟେ, ହୁଏତ ସେ ସତରେ ମାରି ନାହିଁ, କିନ୍ତୁ ଜେନ ଏମିତି ଭାବରେ ଆତଙ୍କ କରିବ ଯେ ଶେଷକୁ ତାକୁ ନ ମାରିଲେ ଜମ୍‌ର ପରିତ୍ରାଣ ରହିବ ନାହିଁ । କେଉଁଥି ପାଇଁ ସେ ଏମିତି କଲା, କାହିଁକି ସେ ଏମିତି କଲା, ଏ କଥା କେହି ଭାବିବେ ନାହିଁ କି ଚିନ୍ତିବେ ନାହିଁ । ସମସ୍ତେ କହିବେ, ସବୁ ଦୋଷ ତାର । କାହିଁକି ନା ସେ ତ ସବୁଠୁଁ ବଡ଼ । ତେଣୁ ଏହି ତେର ବର୍ଷର ଲମ୍ବା ଦେହଟା ଆଡ଼କୁ ଅନାଇ ସମସ୍ତେ କଥା କହନ୍ତି । କାହିଁ, ତାର ପ୍ରାପ୍ୟ ସମ୍ମାନ ବା ଆସନର ମର୍ଯ୍ୟାଦା ଦେବା ବେଳକୁ ତ କାହାରି ସେ କଥା ମନେ ରହେ ନାହିଁ ? ସେଥିପାଇଁ ସେ ସମସ୍ତଙ୍କୁ ଘୃଣା କରେ, ଆଉ ସେମାନଙ୍କର ଆଦେଶ ମଧ୍ୟା ପାଳି ପାଳନ କରିପାରେ ନାହିଁ ।

ମାଆ ଚିତ୍କାର କଲା—ଜମ ! ଚିତ୍କାର ତ ନୁହେଁ, ଆର୍ତ୍ତନାଦ । —ଆରେ, କାହାକୁ ମିଛୁଆ କହି ତୁ ନିଜେ ମିଛୁଆ ହ ନା । ଫେର୍ ଯଦି ଏମିତି କଥା ଶୁଣେ, ତୋ ପିଠିରୁ ଛାଲ ଉତାରି ଦେବି । ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ମାଆ ଭୂଇଁରେ ଶୋଇ ପଡ଼ିଲା । ଲମ୍ବାରେ ମାଆ ଖୁବ୍ ବଡ଼ । ତେଣୁ ଏହି ଖାଇ ଭିତରେ ତାର ଦେହ ସମ୍ପୂର୍ଣ୍ଣ ଭାବରେ ପ୍ରସାରିତ ହୋଇପାରେ ନାହିଁ । ଦିନ ସାରା କୌଣସି ପ୍ରକାରେ କୁଞ୍ଚିକାଞ୍ଚି ହୋଇ ଦେହଟାକୁ ଆଲୋକର ଅନ୍ତରାଳରେ ରଖି ତାକୁ ବୁଲଚଲ କରିବାକୁ ହୁଏ ।

—ଦେଖ ମାଆ, ଏଇଟି ମୋତେ ମାରୁଛି । ସେତେବେଳ ଯାଏ ଜେନର ଅଭିଯୋଗ ଶେଷ ହୋଇ ନ ଥିଲା । ଅନ୍ୟ ଭାଇ

ଭଉଣୀମାନେ ଜେନର ଅଭିଯୋଗକୁ ସମର୍ଥନ କଲେ । ବେନ୍ କହିଲା—ମୁଁ ଦେଖିଛି, ସେ ମାରିଛି । ଜିମ୍ ଇତି ମଧ୍ୟରେ ପୁଣି ସୁସୁରି ବଜାଇବା ଆରମ୍ଭ କରି ଦେଲଣି । ମାଆ ତା ଗାଲରେ ଜୋରରେ ଗୋଟାଏ ଚାପୁଡ଼ା ବସାଇ ଦେଇ କହିଲା—ଚୁପ୍ ।

ଜିମ ବିଛଣାରୁ କୁଦି ପଡ଼ିଲା । ତାପରେ ସିଧା ବାହାରି ଗଲା । ତା ଦେହରେ ଜାମାପଟା ଠିକ୍ ଥିଲା । ମାତ୍ର ଗୋଡ଼ ଖାଲି । ଚାପୁଡ଼ା ଖାଇ ତାର ଟିକିଏ ମାତ୍ର ଦୁଃଖ ହେଲା ନାହିଁ । ବରଂ ମନେ ମନେ ସେ ବଞ୍ଚିଗଲା । ଆଉ ମୁହଁ ଗୋଡ଼ ହାତ ଧୋଇବାକୁ ହେବ ନାହିଁ । ଜାମାପଟା ବି ପାଲଟିବାକୁ ହେବ ନାହିଁ । ଚାପୁଡ଼ାଟା ଖୁବ୍ ଜୋରରେ ବସିଥିଲା । ସେତେବେଳ ଯାଏ ତା ଗାଲ ପୋଡ଼ୁଥିଲା । ସେ ମନେ ମନେ ଠିକ୍ କଲା, 'ବେନ୍‌କୁ ଚାପୁଡ଼େ ଦେଇ ବୁଝାଇ ଦେବାକୁ ହେବ ତାର ହାତରେ କେତେ ଜୋର ଅଛି । ମାଆ ପଛରୁ ପାଟି କଲା — ମଥା ତଳକୁ କର ।

ଜେନ ତାର ବୋକାମୀ ଦେଖି ହସି ପକାଇଲା ।

ମାଆର କଥା ଉଡ଼ାଇ ଦେଇ ସେ ସମ୍ପୂର୍ଣ୍ଣ ଭାବରେ ସିଧା ହୋଇ ଠିଆ ହେଲା । ବୟସ ଅନୁପାତରେ ତାର ମଥାଟା ଖୁବ୍ ବେଶୀ ଲମ୍ବା । ତାର ମଥାଟା ଖାଇରି ଉପରା ଟପି ଟିକିଏ ଉପରକୁ ଉଠିଗଲା । ଏହି ଖାଇ ଭିତରେ ମଥା ନୁଆଁଇ ରଖି ଆଜିକି ଦୁଇ ଦିନ ହେଲା ଅବଶ୍ୟ ସେମାନଙ୍କର ଆତ୍ମ ରକ୍ଷାର ଉଦ୍ଭାବନ୍ତୁ ଚାଲିଛି । ମଥା ଟେକି ଦେବା ଯୋଗୁଁ ତାର ଆଖି ଆଗରୁ ଆଉ କିଛି ଜିନିଷ ଅଛପା ରହିଲା ନାହିଁ । ସେ ପରିଷ୍କାର ଭାବରେ ଦେଖି ପାରିଲା, ନୂଆ ପାଞ୍ଚଶ ଡାଳ ଖାଇର ବନ୍ଧକୁ ଅନ୍ଧାରି ଭଳିଆ କରି ହୋଇଛି । ଖାଇ ପାଖରେ ଅଠରଟା ଗାଡ଼ିକୁ

ଲୁହା ଜଞ୍ଜିରରେ ପରସ୍ପର ସହିତ ବାନ୍ଧି ତା ଉପରେ କେରପାଲ ଢାଙ୍କି ଦିଆ ଯାଇଛି । ସେହି ସବୁ ଗାଡ଼ିର ଚକ ପଛରେ ବନ୍ଧୁକ ଧରି ଜଣେ ଜଣେ ଲୋକ ଶୋଇ ରହିଛନ୍ତି ।

ମାଆ ପାଟି କରିବାକୁ ଲାଗିଲା—ଜମ, ନୁଆଁଇ ଦେ, ଜଲ୍ଦି ମଥା ନୁଆଁଇ ଦେ କହୁଛି ।

ଜେନ ମୁହଁ ମୋଡ଼ି ଦେଇ କହିଲା—ଖୁବ୍ ବଡ଼ ହୋଇ ଯାଇଛି ନା, ସେଇଥି ପାଇଁ ନିଜର ଭଲ ବି ସେ ଜାଣି ପାରୁ ନାହିଁ । ନୁହେଁ ନା ମାଆ ?

—ଜମ୍, ଏଠିକି ଫେରି ଆ ।

ମାଆର ଆଦେଶ ଶୁଣି ସୁଦ୍ଧା ସେ ଇତସ୍ତତଃ କରିବାକୁ ଲାଗିଲା । ସେ କଣ କରିବ ? ତାର ମୁହଁ ଆଖି ଲାଲ ହୋଇ ଯିବାକୁ ଲାଗିଲା । ସେ ପରିଷ୍କାର ବୁଝି ପାରିଲା, ଅନ୍ୟାନ୍ୟ ପରିବାରର ଲୋକମାନେ ସେମାନଙ୍କ ଖାଇ ଭିତରୁ ଏହି ବ୍ୟାପାରଟି ଦେଖି ହସୁଛନ୍ତି ଏବଂ ସେମାନଙ୍କୁ ଘୃଣା କରୁଛନ୍ତି ।

ମାଆ ପୁଣି ଡାକିଲା—ଜମ୍ !

ସେ ଆସ୍ତେ ଆସ୍ତେ ଫେରିଗଲା । ନୂଆ ପାଉଁଶର ଗଦା ତାର ପାଦ ଆଙ୍ଗୁଳିର ଉପରେ ଲାଗି ଯିବାକୁ ଲାଗିଲା । ମଥା ନୁଆଁଇ ସେ ଆସି ଠିଆ ହେଲା । ଜେନ ମୁଖ ଟିପି ହସିଲା । ଲଜ୍ଜା କଣ ନ ଜାଣି ସୁଦ୍ଧା ଏମିତି ମୁଖର ଭାବ କଲା, ଯେମିତି ତାର ଆଉ କିଛି ଜାଣିବାକୁ ବାକି ନାହିଁ ।

—ତୋ ପରି ପିଲା ମୁଁ ଆଉ କେଉଁଠି ଦେଖି ନାହିଁ । ହଁରେ, ମାଆକୁ କଣ ଏମିତି ଭାବରେ ଯନ୍ତ୍ରଣା ଦେବାକୁ ହୁଏ ?

ମାଆ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇଲା ।

କଣ କରୁଛୁ କି ମୁଁ ?—ଜିମ୍ ଯେମିତି ହଠାତ୍ ଜଳି ଉଠିଲା ।

ଜେନ ଆଖି ଟେକି କହିଲା—ଶୁଣ ମାଆ, ଶୁଣ ତୁମ ପୁଅର କଥା । କଣ କରୁଛି, ସେ ନିଜେ ଜାଣେ ନାହିଁ ।

ଚୁପ୍—ଜିମ୍ ଚିତ୍କାର କଲା । ସଙ୍ଗେ ସଙ୍ଗେ ତା ମୁହଁ ଉପରେ ତା ମାଆର ହାତର ଆଉ ଗୋଟାଏ ଚାପୁଡ଼ା ଆସି ସଶବ୍ଦରେ ବସିଲା । ତାପରେ ତା ଆଡ଼କୁ ଗୋଟାଏ କଳସୀ ବଢ଼ାଇ ଦେଇ ମାଆ ତାକୁ ସାବଧାନ କରିଦେଇ କହିଲେ – ଦେଖ୍, ଜଳ ଯେମିତି ଢାଳି ନ ଯାଏ ।

କଳସୀଟା ଧରି ଖାଇ ଟପି ସେ ଉପରକୁ ଉଠିଗଲା । ମଥା ସିଧା କରି ଗ୍ଭରି ପଟେ ଆଖି ବୁଲାଇ ବୁଲାଇ ସେ ଗ୍ଭଲିଲା । ଗମନ-ଭଙ୍ଗୀରେ ତାର ଯେମିତି ବେପରୁଆ ଭାବ, ସେମିତି ଗ୍ଭରି ପଟେ କଣ ହେଉଛି ଦେଖିବାରେ ତାର ସବୁଠାରୁ ଆଗ୍ରହ ରହିଛି । ପ୍ରଥମେ ତାର ଦୃଷ୍ଟି ପଡ଼ିଲା ଜଞ୍ଜିରରେ ବନ୍ଧା ହୋଇ ଗୋଲାକାରରେ ସଜା ହୋଇଥିବା ଗାଡ଼ିଗୁଡ଼ାକ ଉପରେ । ତା ତଳେ ହାତରେ ବନ୍ଧୁକ ଧରି ଝାଳନାଳ ହୋଇ ଯାଇଥିବା ସତର୍କ ପ୍ରହରୀର ଦଳ । ତାରି ବାହାର ପାଖରୁ ଆରମ୍ଭ ହୋଇଛି ହଳଦିଆ ମାଟିର ଡେଉଁ ଖେଳା ସ୍ତୂପ । ଦିଗନ୍ତ ବକ୍ଷରେ ଟେସିହ ପ୍ରାନ୍ତର ଗ୍ଭଲି ଯାଇଛି ସେହି ସ୍ଥାନକୁ, ଯେଉଁଠି ସେହି ଅପୂର୍ବ ଘନ କଳା-ନୀଳ ରଙ୍ଗ ଜକଜକ ଦିଶୁଛି । ସେହି ରହସ୍ୟାବୃତ ନୀଳ ଯବନିକାର ଅନ୍ତରାଳରେ କାଳେ ଶତ୍ରୁମାନେ ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି । ହଠାତ୍ ତାର ମନେ ହେଲା, କଳସୀଟା ଫିଙ୍ଗି ଦେଇ ଗୋଟାଏ ବନ୍ଧୁକ ଟାଣି ଆଣି ସେହି ଗାଡ଼ି ତଳେ ପ୍ରହରୀଙ୍କ ଦଳରେ ସେ

ଯାଇ ଶୋଇ ପଡ଼ନ୍ତା । ତା ପରେ ଯଦି ସେ ଆହତ ହୁଏ ? ତାହାହେଲେ ତ ଲୋକେ ତାକୁ ବୀର ବୋଲି ଜାଣିବେ ।

ତାର ସମସ୍ତ କଳ୍ପନା ଚୂରମାର୍ ହୋଇଗଲା, ମାଆର ଚତ୍କାର ଶୁଣି—ଜମ୍, ଜମ୍, ମଥା ନୁଆଇଁ ଯା ।

ସବୁ ଗାଡ଼ ଓ ଖାଇଗୁଡ଼ାକର ଠିକ୍ କେନ୍ଦ୍ର ସ୍ଥଳରେ କେରପାଲରେ ଜଳ ଭଣ୍ଡାରଟି ଢଙ୍କା ହୋଇ ରହିଛି । ସବୁ ମୋଟେ ଆଠ ପିପା ଜଳ । ସବୁ ଖାଇରୁ ପିଲାମାନେ କଳସୀ ଧରି ଆସି ଠିଆ ହୋଇଛନ୍ତି । ସମସ୍ତେ କିଶୋର ବୟସ୍କ । ସେମାନଙ୍କର କିଛି କାମ ନାହିଁ । ମାଆମାନଙ୍କର ଆଦେଶ ମାନି ସେମାନେ ଜଳ ନେବାକୁ ଆସିଛନ୍ତି । କଡ଼ ଫେରାଇବାର କୌଣସି ଉପାୟ ନାହିଁ, କାରଣ ମାଆମାନଙ୍କର ଭୟ ହେଉଛି, ଯେ କୌଣସି ମୁହୂର୍ତ୍ତରେ ଜଳର ମାତ୍ରା କମାଇ ଦିଆ ଯାଇପାରେ ।

ଜନସନ୍ ଜଳ ଦେଉଥିଲା । ତାର ଗୋଟାଏ ହାତ ଜଳର ପିପା ଉପରେ ରହିଥିଲା । ତାର ଅତି ବଡ଼ ନିଶ ଯୋଡ଼ାକ ଯେମିତି ମୁହଁ ଉପରେ ଛପ୍ପା ପକାଇଥିଲା । ଗୋଟାଏ ବଡ଼ ହାତରେ ସେ ମାପି ମାପି ଜଳ ବାହାର କରୁଥିଲା । ଏହି ହାତରେ ପ୍ରତି ଲୋକ ପିଛୁ ଦୈନିକ ଦୁଇ ହତା କରି ଜଳ ଦିଆଯାଏ । ଆଜି ଯାଏ ଜନସନ୍ ବୋଧହୁଏ ହଜାରେ ଥର ପ୍ରତି ପରିବାରରେ କେତେ ଲୋକ ଅଛନ୍ତି ତାହା ଗଣନା କରି ସାରିଛି । ତେବେ ସୁଦ୍ଧା ତାର ସତର୍କତାର ଶେଷ ନାହିଁ । ପ୍ରତି ହତା ଜଳ ଦେବା ସମୟରେ କୃପଣ ପରି ତାର ହାତ କମ୍ପେ ।

ପିଲାମାନେ ତାକୁ ଘେରି ଠିଆ ହୋଇଥିଲେ । ପରସ୍ପରର ଉପରେ ଝୁଙ୍କି ପଡ଼ି ସେମାନେ ନାନା ପ୍ରକାର କଥା କହୁଥିଲେ

ଏବଂ ଢେର୍ କଥା ତାଙ୍କୁ ପଚାରୁଥିଲେ । ଟାଇର ଅସମତଳ ଗାତରେ ସିଧା ହୋଇ ଠିଆ ହେବା ପ୍ରାୟ ଅସମ୍ଭବ । ତେଣୁ ସିଧା ହୋଇ ଠିଆ ହୋଇ ନ ପାରିଲେ ସୁଦ୍ଧା ସେମାନେ ଏମିତ ଭାବ ଦେଖାଉ-ଥିଲେ ଯେ ସେମାନଙ୍କର ଯେମିତ କୌଣସି ଭୟ ନାହିଁ—ସୁଯୋଗ ପାଇଲେ ସେମାନେ ମଥା ଉଞ୍ଚା କରି ଗ୍ରୀତ ଫୁଲାଇ ଠିଆ ହୋଇ ପାରିବେ ।

—ଜ୍ୟାକ, ଫେର୍ କଣ ଶୀଘ୍ର ଆକ୍ରମଣ ହେବ ?

—ଆଚ୍ଛା, ଯଦି ଆକ୍ରମଣରେ ଆମର ଲୋକମାନେ ଆହତ ହୁଅନ୍ତି ?

ଜନସନ୍ ଅତିଶୟ ସଂଯତ ଭାବରେ ଜଳ ଦେଉଥିଲା ।

ଜଣେ ମାଗିଲା—ଟିକିଏ ଜଳ ଦେଲୁ ଜ୍ୟାକ୍, ପିଇବି ।

କଣ ଯୋଡ଼ାକ ଟେକ ଦେଇ ଜନସନ୍ ତା ଆଡ଼କୁ ଗୋଟାଏ ଘୃଣା ମିଶା ଦୃଷ୍ଟିହାଣି ନିକ୍ଷେପ କଲା । ତାପରେ ଯେମିତ ମାପି ମାପି ଜଳ ଦେଉଥିଲା, ସେମିତ ସେ ଦେବାକୁ ଲାଗିଲା ।

—ସେମାନେ ସମସ୍ତେ ଘୋଡ଼ସବାର ନା ? ଆଚ୍ଛା, ସେମାନେ କିପରି ଭାବରେ ଆସନ୍ତି ?

ଜନସନ୍ ବୋଧହୁଏ ଏଥର ରାଗିଗଲା । ସେ ପଚାରିଲା—ତୁମେ ସବୁ ଏତେ ବାଜେ କଥା କେଉଁଠୁ ଶୁଣିବାକୁ ପାଉଛ ?

ଜମ୍‌ର ପାଳି ପଡ଼ିଲା । ସେ ଗମ୍ଭୀର କଣ୍ଠରେ କହିଲା—ସାତ । ସଙ୍ଗେ ସଙ୍ଗେ ସେ ମୁଖଟିକୁ ଖୁବ୍ ଭାରି କରିଦେଲା । କାରଣ, ସେମାନଙ୍କର ପରିବାର ଖୁବ୍ ବଡ଼ । ଖୁବ୍ କମ ପରିବାର ସାତ ଜଣଙ୍କ ପାଇଁ ଜଳ ଭୁକ୍ତି ପାରେ ।

ଜନସନ୍ ଧୀରେ ଧୀରେ ଜଳ ମାପି ଦେଲା ।

ଜମ୍ ଟିକିଏ ଇତସ୍ତତଃ କରି କହିଲା—କି ସୁନ୍ଦର ଜଳ ! ଭରି ଥିଲା । ପିଇବା ଲାଗି ମୋତେ ଟିକିଏ ଜଳ ଦେବ ନାହିଁ ?

ପିଇ ପାର, ମାତ୍ର ସେଥିପାଇଁ ପିଇବାଟା ଶ୍ରେୟ ହେବ—ଜନସନ୍ ଉତ୍ତର ଦେଲା ।

ଗାଡ଼ି ତଳେ ଯେଉଁ ଲୋକମାନେ ହାତରେ ବନ୍ଧୁକ ଧରି ଶୋଇଥିଲେ, ସେମାନଙ୍କୁ ଦେଖାଇ ଜମ୍ କହିଲା—ସେମାନେ ଯେତେବେଳେ ଇଚ୍ଛା ସେତେବେଳେ ତ ଜଳ ପିଉଛନ୍ତି ।

—ସେମାନଙ୍କ ଭଳି ତୁମେ ଗାଡ଼ି ତଳେ ଶୋଇ ରହି ପାରିବ ?

—ବୋଧହୁଏ ପାରିବି ।

ଥୁଃ—ଜନସନ୍ ଘୃଣାରେ ଛେପ ପକାଇଲା । ଜମ୍‌ର ମନେ ହେଲା, ନିଆଁର ହୁଲ ଲାଗି ତାର କାନ ଦୁଇଟା ସତେ କି ପୋଡ଼ିଗଲା । ସେ ପଛକୁ ଫେରି ପଡ଼ି ଦୁଇ ହାତରେ ଘଣ୍ଟି କଳସୀଟା ଧରି ପକାଇଲା । ଜନସନ୍ ତାକୁ ଡାକି କହିଲା—ସାବଧାନ, ଜଳ ଯେମିତି ତୁମ ମାଆ ପାଖରେ ପଡ଼ୁନଥିଏ ।

• ଜନସନ୍‌ର ନିଶ ଯୋଡ଼ାକ ଦ୍ୱାରା ଆବୃତ ମୁଖର ଘୃଣା ମିଶ୍ରିତ ଗୁହାଣୀ, ପିଲାମାନଙ୍କର ହସ, ଟାଣ ଖରା, ଧୂଳି ଓ ନିକଟରେ ଅଠରଟି ପରିବାରର କୌତୂହଳୀ ଦୃଷ୍ଟି ତାକୁ ଜର୍ଜରିତ କରି ପକାଇବାକୁ ଲାଗିଲା । ତା ଛୋଟ ଭଉଣୀ ଜେନି ତା ଆଡ଼କୁ ଦୌଡ଼ି ଆସିଲା ଏବଂ ଚିତ୍କାର କରି କହିଲା—ଦେଖ, ଦେଖ, ଜଳ ଉଚ୍ଛୁଳି ପଡ଼ି ଯାଉଛି । ସଙ୍ଗେ ସଙ୍ଗେ ସେ ଜମ୍‌ର ସ୍ୱର ପଛେ କୁଦିବାକୁ ଲାଗିଲା ।

ଜମ୍ ପାଟି କଲା—ହୁଅ ଯା, ହାତ ଖସିଯିବ ।

ମାଆ ସତର୍କ କରିଦେଲା—ଜମ୍, ସାବଧାନ !

ମାଆର କଥା ତା କାନରେ ଆସି ବାଜିବା ଆଗରୁ ସେ ପଡ଼ିଗଲା । ବାଦାମୀ ରଙ୍ଗର ମାଟିରେ କାଦୁଅ ତିଆରି କରି ଜଳ

ଗଡ଼ିଗଲା । ସେ ଓଦା ହୋଇଗଲା, ଜେନ ବି ଭିଜିଗଲା । କେତୋଟି ମୁହୂର୍ତ୍ତ ମାତ୍ର । ତାପରେ ସେ ଉଦ୍‌ବେଗରେ ଉଠି ଠିଆ ହେଲା । ତାର ସମସ୍ତ ଦେହଟା ଯେମିତି ପୋଡ଼ି ଯାଉଥିଲା । ସେ ବୁଝି ପାରୁଥିଲା, ସବୁ ଝାଇରୁ ପ୍ରତ୍ୟେକ ଚକ୍ଷୁ ଯେମିତି ସବିସ୍ମୟରେ ତା ଆଡ଼କୁ ଅନାଇ ରହିଛନ୍ତି । ସେ ଶୂନ୍ୟ କଳସୀଟା ଉଠାଇ ନେଲା ଏବଂ ଥରେ ଏପାଖ ସେପାଖ ଲେଉଟାଇ ଦେଖିଲା । ଏତିକ ବେଳେ ତାର ମାଆ ଆସି ଆଗରେ ଠିଆ ହୋଇଗଲା ।

ତାର କୌଣସି କୈଫିୟତ ଦେବାକୁ ନ ଥିଲା । ପଥର ପରି ନିଶ୍ଚଳ ହୋଇ କଳସୀଟା ହାତରେ ଧରି, ମଥା ତଳକୁ ପୋତି ସେ ଠିଆ ହୋଇ ରହିଲା । ମାଆର କଥାରେ ମୁହଁ ଉଠାଇଲା । ଶୁଣିଲା, ମାଆ କହୁଛି—ସାତ ଜଣଙ୍କର ଜଳ । ମାଆର ଗଳାର ସ୍ୱର ଅତି କ୍ଷୀଣ, କହିବାକୁ ଗଲେ ପ୍ରାୟ ଶୁଣାଯାଉ ନ ଥିଲା ।

ସେ ଜାଣେ, ପ୍ରତି ଝାଇରୁ ପ୍ରତ୍ୟେକ ଚକ୍ଷୁ ତା ଆଡ଼କୁ ଅନାଇ ରହିଛି । ସେ ଆହୁରି ଜାଣେ, ମାଆ ତା ଆଗରେ ଠିଆ ହୋଇଛି । ତଥାପି ତାର ମନେ ହେଲା, କେହି ନାହାନ୍ତି । ଏହି ସୂର୍ଯ୍ୟତପ୍ତ ବିଶାଳ ପ୍ରାନ୍ତରରେ ସେ ନିରାଶ୍ରୟ । ସେ ସମ୍ପୂର୍ଣ୍ଣ ଏକାକୀ । ସେ ନିଜକୁ ଆଉ ଶାନ୍ତ କରି ରଖି ପାରିଲା ନାହିଁ । ତାର ହାତ ଗୋଡ଼ ଓ କାନ ପୋଡ଼ି ଯାଉଥିଲା, କିନ୍ତୁ ସେ କିଛି କରି ପାରୁ ନ ଥିଲା ।

ମାଆ ଆଉ ଥରେ ଯେମିତି ନିଜକୁ ଶୁଣାଇ କହିଲା—ସାରା ଦିନଟାର ଜଳ ।

—ମୁଁ ଏକ୍ଷଣି ଜନସନ୍ ପାଖକୁ ଯାଉଛି, ଯଦି ସେ —

—ନା, ତୋତେ ଆଉ ଯିବାକୁ ହେବ ନାହିଁ । ଆଜି ଆମେ ଜଳ ନ ପିଇ ଦିନ ଟା କଟାଇଦେବା ।

ମାଆର ମୁହଁ ଆଡ଼କୁ ଅନାଇ ହଠାତ୍ ତାର ମନେ ହେଲା, ତାର ତଣ୍ଟିରେ ଯେମିତି କଣ ଅଟକି ଯାଉଛି । ତାର ଇଚ୍ଛା ହେଲା, ସେ ପାଟି କରି କାନ୍ଦି ପକାଇବ । କିନ୍ତୁ ଢେର୍ ଚେଷ୍ଟା କଲେ ସୁଦ୍ଧା ସେ କାନ୍ଦି ପାରିଲା ନାହିଁ । ହଠାତ୍ ସେ ପଛକୁ ବୁଲି ପଡ଼ି ଖାଇ ପାରି ହୋଇ ଚାଲିଗଲା । ସେ ଜାଣେ, ସମସ୍ତେ ତା ଆଡ଼କୁ ଚାହିଁଛନ୍ତି । କିନ୍ତୁ ସେ କାହାରି ଆଡ଼କୁ ନ ଚାହିଁ ଦ୍ରୁତ ବେଗରେ ସମସ୍ତଙ୍କୁ ଟପି ଚାଲିଗଲା । ଜନସନ୍ ଓ ଜଲର ଟିପାଗୁଡ଼ାକ ପାଖ ଦେଇ ଅଗ୍ରସର ହୋଇ ସେ କାଠ-ଚକ୍ରିତ ତଟନୀଟି କବର ଅତିକ୍ରମ କରିଗଲା । ତା ପରେ ଆହୁରି ଆଗକୁ ଯାଇ ଯେଉଁଠି କେରପାଲିର ତମ୍ବୁ ତଳେ ସାତ ଜଣ ଆହତ ଲୋକ ପଡ଼ିଥିଲେ ସେମାନଙ୍କୁ ବି ଟପି ସେ ଚାଲିଗଲା ।

ଖାଇ ଖୋଳି କାହାରକୁ ଯେଉଁ ମାଟି ଫୋପାଡି ଦିଆ ଯାଇଥିଲା, ସେହି ମାଟିର ଗଦା ଉପରେ ତା ପିଠି ଭରା ଦେଇ ସେ କେତେ ବେଳ ଯାଏ ବସି ରହିଲା, ତାର ଠିକଣା ନାହିଁ । ଆଣ୍ଠୁ ଦୁଇଟା ଟେକି ଦି ହାତରେ ବେଢ଼ାଇ ଖାଲି ପାଦ ଦୁଇଟା ସେହି ଜମା ହୋଇଥିବା ମାଟି ଭିତରେ ପୂରାଇ ନିସ୍ତବ୍ଧ ଭାବରେ ସେ ବସିଥିଲା । ପଛରୁ ପ୍ରଖର ରୌଦ୍ର ଆସି ତା କାନ୍ଧ ଉପରେ ପଡ଼ୁଥିଲା—ଫଳରେ ସମସ୍ତ କାନ୍ଧଟାରେ ଯେମିତି ରକ୍ତ ଜମି ଯାଇ ଗାଢ଼ ଲାଲ ହୋଇ ଯାଇଥିଲା । ସେହି ଅଠରଟା ଗାଡ଼ର ଓ ଖାଇର ପୃଥିବୀ ବୋଧହୁଏ ତା କଥା ଏକବାରେ ଭୁଲି ଗଲା । ସୂର୍ଯ୍ୟ ଆହୁରି ମଥା ଉପରକୁ ଉଠି ଆସିଲେ; ବେଳ ବଢ଼ିବାକୁ ଲାଗିଲା । ସକାଳ ବେଳର ଖାଦ୍ୟ ତିଆରି ହେଲା । ଏକ ସମୟରେ ଖାଇବା ମଧ୍ୟ ଶେଷ ହେଲା । ସମସ୍ତେ ପାଣି ପିଇଲେ । ସେତେବେଳକୁ ତାର

ଓଠ ଦୁଇଟା ଶୁଖି ଗଲାଣି — ଫାଟି ଯାଉଛି, ଗଳାରେ ବିନ୍ଦୁ ମାତ୍ର ସରସତା ନାହିଁ, ସବୁ କିଛି ଜଳି ଯାଉଛି । ତାର ମନେ ହେଲା, ଯାହା ହେଲେ ଗୋଟାଏ କିଛି ଘଟୁ । ଯଦି ସେ ଆକ୍ରାନ୍ତ ହୁଏ, ତାହା ବି ହେଉ । ଏହି ଆକ୍ରମଣରୁ ଯଦି କେହି ତାକୁ ରକ୍ଷା କରି ପାରନ୍ତି ତ ଭଲ, ଆଉ ତାହା ନ ହେଲେ ଯୁଦ୍ଧ କରିବାକୁ ଯାଇ ସେ ଯେମିତି ପ୍ରାଣ ହରାଉ । ନିଜ ପାଇଁ ତାର ଦୁଃଖ ବୋଧ ହେବାକୁ ଲାଗିଲା । କରୁଣାରେ ନିଜକୁ ସେ ଆହୁରି ଭଲ ବୋଲି ମନେ କଲା । ସେହି କାରଣରୁ ଭାଇ ଭଉଣୀଙ୍କ ଉପରେ ତାର ବିଦ୍ୱେଷ ଆହୁରି ବଢ଼ିଗଲା ।

ସେ ମୁହଁ ଟେକି ଦେଖିଲା, ମାଆ ତା ଆଡ଼କୁ ଆସୁଛି । ସେହି ଅର୍ଦ୍ଧନତ ଭଙ୍ଗୀରେ ନଇଁ ପଡ଼ି ସେ ଚଳେଇ ଚଳେଇ ଆସୁଛି । ତାର ହାତରେ ଗୋଟାଏ ଥାଳିଆରେ ସିଝା ଖାନ୍ ଓ କପେ ପାଣି । ଆସ୍ତେ ଆସ୍ତେ ଆଗକୁ ଆସି ସେ ପାଣିର କପ୍‌ଟା ତାର ମୁହଁ ପାଖରେ ଧରିଲା ।

—ମୋତେ ଶୋଷ ଲାଗୁ ନାହିଁ ।

ହଉ, ଖା—ମାଆର କଣ୍ଠସ୍ୱର ଖୁବ୍ ମିଠା ।

ସେ ଜିଭ ବୁଲାଇ ଶୁଖିଲା ଓଠ ଭିଜାଇ ନେଲା । ତା ପରେ ଗୁନୁଗୁନୁ ମାରି ଗାଇବାକୁ ଆରମ୍ଭ କଲା—ଆହା ସୁସାନ୍ନା, ସୁନା ଝିଅଟା ପରା, ମୋ ଲାଗି ଆଉ କାନ୍ଦ ନା ।

କେଳେ କେଳେ କୁଆଁ ଯେମିତି ଦପ୍ କରି ଜଳି ଉଠେ, ମାଆ ସେମିତି କଣ କହିବାକୁ ଯାଉଥିଲା । କଥାଗୁଡ଼ାକ ଅବଶ୍ୟ ନୂଆ କିଛି ହୋଇ ନ ଥାନ୍ତା । ସେହି ପୂର୍ବ ପରିଚିତ ତିରସ୍କାରର ସ୍ରୋତ ବହି ଯାଇଥାନ୍ତା । କିନ୍ତୁ ନା, ଆକସ୍ମାତ ନିର୍ବାକ ହୋଇ

ମାଆ ତାର ମୁହଁ ଆଡ଼କୁ ଅନାଇ ରହିଲା । ମନେ ହେଲା, ତାର ଏହି ଉଜ୍ଜ୍ୱଳ ଜୀବନ ଯାପନ ଭିତରେ ଆଜ ଯେମିତି ସବୁ ପ୍ରଥମେ ସେ କଣ ଖୋଜ ପାଇଛି । ତାର ମନେ ହେଲା, ବାହାରକୁ ସେ ଯେମିତି ଦେଖାଯାଏ, ସେ ଅନ୍ତରରେ ସେମିତି ନୁହେଁ । ମାଆର ଆଖିର ଦୃଷ୍ଟି ବଦଳିଗଲା, କୋଠାଏ ପରିତୃପ୍ତିର ଆଲୋକ ଯେମିତି ନୂତନ ଆଶ୍ୱାସ ଭରା ଦୀପ୍ତିରେ ଉଦ୍‌ଭାସିତ ହୋଇ ଉଠେ ।

ନିଜ ମନକୁ ମନ ମଥା ନୁଆଁଇ ଭୂଇଁରେ ସେହି ଗାନ୍ଧର ଥାଳିଆଟା ଓ ପାଣି କପ୍‌ଟା ଥୋଇ ଦେଇ ସେ ଚାଲିଗଲା । ଚାଲି ଯାଉଁ ଯାଉଁ ତା କାନରେ ଆସି ବାଜିଲା, କିମ୍ ସୁସୁର ମାର ଗାଉଛି—ମୋ ଛାତି ଉପରେ ବ୍ୟାଙ୍ଗୋ ଚାପି ଧରି ମୁଁ ଆଲବାମାରୁ ଆସିଛି ।

ସମସ୍ତ ଗଡ଼ ଯିବାକୁ ଚାହେ ନା । ମଥା ଉପରୁ ବି ଖରା ହଟିଯାଉ ନାହିଁ । ସିଝା ଗାନ୍ଧର ରସ ଶୁଖିଯାଇ, ଗରମରେ ଦେହଗୁଡ଼ାକ ଫାଟିଗଲା । ଧୂଳି ପଡ଼ି ପଡ଼ି କପ୍‌ରେ ଜଳର ରଙ୍ଗ ବି ବଦଳି ଗଲା । ସବୁ ଖାଇର ଚାଞ୍ଚଲ୍ୟ ଏକା ସମସ୍ତରେ ନିସ୍ତେଜ ହୋଇଗଲା । ସାନ ସାନ ପୁଅ-ଝିଅମାନେ ଖାଇ ଭିତରେ ନୀରବ ହୋଇ ଆକ୍ରମଣର ଆଶଙ୍କାରେ ବସି ରହିଲେ । ଏହି ଭାବରେ ଗତ ଦୁଇ ଦିନ ହେଲା ସେମାନେ ବସି ରହିଛନ୍ତି, ଗାଡ଼ର ଆଢ଼ୁଆଳରେ ଗାତ ଭିତରେ । ଥରେ ବିଜୁଳି ବେଗରେ ଆକ୍ରମଣ ହୋଇଥିଲା । ଫଳରେ ତିନି ଜଣ ମାରା ପଡ଼ିଛନ୍ତି ଏବଂ ସାତ ଜଣ ଆହତ ହୋଇଛନ୍ତି । ସେହି ଦିନରୁ ଆକ୍ରମଣକୁ ଲୋକେ ପ୍ରତୀକ୍ଷା କରି ବସିଛନ୍ତି । ମଝିରେ ମଝିରେ ମନ ଭିତରେ ଆଶା ଉଠୁଛି, ସାହାଯ୍ୟ ଆସିବ ଆଉ ମୁକ୍ତି ମିଳିବ । ତାପରେ ସେ ଆଶା ମିଳେଇ ଯାଉଛି ।

ମନେ ହେଉଛି, ଏଠାରୁ ଯିବା ପାଇଁ ସେମାନଙ୍କୁ ମରଣ ଛଡ଼ା ଆଉ କେହି ଗୃଡ଼ପତ୍ର ଦେଇ ପାରିବେ ନାହିଁ । କିନ୍ତୁ ସୂର୍ଯ୍ୟ ସମାନ ଭାବରେ ଜ୍ୱାଳାମୟୀ ରୌଦ୍ର ଢାଳି ଦେଉଛନ୍ତି । ତାଙ୍କର ଯେମିତି ଅନ୍ୟ କୌଣସି ଗତି ନାହିଁ । ଏମାନଙ୍କ ଭଳି ଆଉ କେଉଁଠାକୁ ଯିବାର ରାସ୍ତା ନାହିଁ ।

ତାକୁ ପ୍ରବଳ ଶୋକ ଲାଗିଲା, ଆଉ ଶୋକରୁ ବି ଖୁବ୍ ଶୋଷ ହେଲା, ଖୁବ୍ ବେଶୀ । ସେ ବାରମ୍ବାର ସେହି ବନ୍ ଓ ଜଳ ଆଡ଼କୁ ଗୁହିଁ ଦେଖିଲା । ସୁସୁର ମାରୁ ମାରୁ ଶେଷକୁ ଯେତେବେଳେ ତା ଗଳାରୁ ଆଉ କଣ୍ଠ ସ୍ୱର ବାହାରିଲା ନାହିଁ, ସେତେବେଳେ ସେ ଓଠକୁ ଅନ୍ୟ ଓଠରେ ଚାପି ଧରି ଚୁପ୍ ହୋଇ ବସି ରହିଲା ।

ସୂର୍ଯ୍ୟ ପଶ୍ଚିମ ଦିଗରେ ଢଳି ପଡ଼ିଲେ । କ୍ଷୁଦ୍ର ଗୁମ୍ଫା ଦୀର୍ଘରୁ ଦୀର୍ଘତର ହେବାକୁ ଲାଗିଲା । ପ୍ରତୀକ୍ଷା-କାତର ଶ୍ରାନ୍ତ ଲୋକମାନେ ଖାଇ ଭିତରେ ନିଶ୍ଚଳ ହୋଇ ଶୋଇ ରହିଲେ । ସେହି ଅଖଣ୍ଡ ସ୍ତବ୍ଧତା ଖାଲି ମଝିରେ ମଝିରେ ଆହତମାନଙ୍କର ଆର୍ତ୍ତନାଦରେ କିମ୍ବା ମୃତମାନଙ୍କ ପରିଜନଙ୍କ କ୍ରନ୍ଦନରେ ଭାଙ୍ଗି ପଡ଼ିବାକୁ ଲାଗିଲା ।

ବେନ୍ ଥରେ ହାମୁଡ଼େଇ ତା ପାଖକୁ ଆସିଥିଲା । ଜିମ୍ ତା ଆଡ଼କୁ ଥରେ ବି ଫେରି ଗୁହିଁଲା ନାହିଁ ।

ବେନ୍‌ର କଥା ହିଁ ତାର ମନେ କରାଇ ଦେଲା—ସାତ ଜଣଙ୍କ ଜଳ ନଷ୍ଟ କରୁଛୁ ।

ଜିମ୍ ଓଠ ଉପରେ ଜିଭ ବୁଲାଇ ନେଲା । ତାର ଇଚ୍ଛା ହେଲା, ପୁଣି ସୁସୁର ମାରିବାକୁ ଆରମ୍ଭ କରିବ ।

—ସାତ ଜଣଙ୍କ ଜଳ ।

ସୟତାନ !—ଜିମ୍‌ର ଗଳାରୁ ସବୁ କଥାଟା ବାହାରିଲା ନାହିଁ । ତାର ଗଳାଟା ଶୁଖି ଯାଇଥିଲା, ଆଉ ତା ଛଡ଼ା ଘୃଣାଟା ଯେମିତି ତା ଭିତରେ ଆହୁରି ମର୍ମାନ୍ତକ ହୋଇ ଉଠିଥିଲା ।

ବେନ୍‌ର ମୁହଁ ହସରେ ଭରିଗଲା । ସେ ଫେରି କହିଲା—ସାତ ଜଣଙ୍କ ଜଳ । ତାପରେ ଯେମିତି ସତର୍କତାରେ ସେ ଆସିଥିଲା, ଠିକ୍ ସେହିପରି ଭାବରେ ସେ ଫେରିଗଲା ।

ଦୁଆଏ ମାଛି କେଉଁଠୁ ଆସି ଖାନ୍‌ଗୁଡ଼ାକ ଉପରେ ବସି- ଗଲେ । ଦେଖାଗଲା, ପିମ୍ପୁଡ଼ିଗୁଡ଼ାକ ବି ଦଳ ବାନ୍ଧି ଆସୁଛନ୍ତି । ହଠାତ୍ ଜିମ୍‌ର ପେଟ କାମୁଡ଼ି ଦେଲା, ଭୀଷଣ କ୍ଷୁଧାରେ ତାର ଅନ୍ତ ନାଡ଼ିଗୁଡ଼ାକ ଛିଡ଼ି ଯାଉଥିଲା ।

ଯେତେବେଳେ ସେ ଜଳର ପାତ୍ରଟା ଉଠାଇ ନେଲା, ସେତେବେଳକୁ ରୁଟି ଅନେକ ଧାର୍ଦ୍ଧତର ହୋଇ ଯାଇଛି । ଅତି ସାବଧାନରେ ସେ ପାତ୍ରଟା ଧରି ଚାଲିଲା । ପ୍ରହରୀର ଖାଲିର ଜଙ୍ଘା ମାଡ଼ି ପାର ହୋଇ ଅତି ଧୀରେ ଧୀରେ ପ୍ରାପ୍ୟ ସ୍ଥାନରେ ଦୁଷ୍କର ଘୂଷୁରି ସେ ଚାଲିବାକୁ ଲାଗିଲା । କିନ୍ତୁ ସବୁବେଳେ ତାର ସଜାଗ ଦୃଷ୍ଟି ସେହି ଜଳର ପାତ୍ରଟା ଉପରେ ରହିଥିଲା । ଆସ୍ତେ ଆସ୍ତେ ସେ ଘୋଡ଼ା ଓ ବଳଦଙ୍କ ଆଶ୍ରୟ ସ୍ଥଳ ଅତିକ୍ରମ କରି ଛୁଅଟା କି ସାତଟା ଗାଡ଼ି ପରେ ତାର ବାବାକୁ ଦେଖିବାକୁ ପାଇଲା ।

ସେ ତାର ବାବାକୁ କେବେ ହେଲେ ପସନ୍ଦ କରୁ ନ ଥିଲା । କିପରି ଭାବରେ କରିବ ? ବାବା ହେଲା କାମିକା ମଣିଷ । ସବୁବେଳେ ସେ କାମରେ ବ୍ୟସ୍ତ । ଯେତେବେଳେ ହାତରେ ଗୃହ କାମ ନାହିଁ, ସେତେବେଳେ ସେ କାଠ ଚିରା କାମ ଆରମ୍ଭ କରିଦିଏ । ତାପରେ ସେ କୋଡ଼ର ବେଣ୍ଟ ତିଆରି କରିବାକୁ ଲାଗେ । ତାର

କାମର ଧାରା ଏହି ଭାବରେ ବନ୍ଧା ଯାଇଛି । କାମ ଶେଷ ହୋଇଗଲେ ସେ ଟେବୁଲରେ ବସି ଘରବରେ ପ୍ରଚୁର ପରିମାଣରେ ଖାଦ୍ୟ ଖାଏ । ସେ ମିଠା କଥା କହିବା କମ୍ବା ଆଦର କରିବା ଜାଣେ ନାହିଁ । ବିଶାଳ ଚେହେରା—କେତେବେଳେ ଲଙ୍ଗଳ ଜୋଚୁଛି ତ କେତେବେଳେ ଘୋଡ଼ାର ମୁହଁରେ ଲଗାମ ପିନ୍ଧାଉଛି । ଭାଇ ଭଉଣୀଙ୍କ ବିରୁଦ୍ଧରେ ଜିମ୍‌ର ଯେମିତି ଅସନ୍ତୋଷ ଥିଲା, ସେମିତି ବାବାଙ୍କୁ ବି ସେ ଭଲ ପାଉ ନ ଥିଲା । ଏମସ୍ତ ସମୟରେ ତାର ମନେ ହେଉଥିଲା, ବଡ଼ ପୁଅ ଭାବରେ ବାବା ତାକୁ ପାଇ ଖୁସି ହୋଇ ପାରି ନାହାନ୍ତି । ହୁଏତ ସେହି କାରଣ ଯୋଗୁଁ ସ୍ୱଳ୍ପଭାଷୀ ମଣିଷଟି ଯେତେବେଳେ ପାରେ ସେତେବେଳେ କଥା ବଦଳରେ ବିଧାଟେ ଗୁମ୍ଫୁଡ଼ାଟେ ଜିମ୍ ଉପରେ ବସାଇ ଦେବାକୁ ଅଧିକ ପସନ୍ଦ କରୁଥିଲା ।

ଏ ହେଲା ତାର ବାବା । ସେହି ବାବା ପାଖକୁ କାହିଁକ ଯେ ସେ ଏହି ଭାବରେ ଜଳ ନେଇ ଯାଉଛି, ଏ କଥା ଭାବିଲେ ତାକୁ ଆଶ୍ଚର୍ଯ୍ୟ ଲାଗୁଥିଲା ।

ବାବା ପାଖକୁ ଯାଇ ସେ ଦେଖିଲା, ସେହି ପରିଚିତ ବାବା କେଉଁଠି ଯେମିତି ମିଳାଇ ଯାଇଛି । ଗାଡ଼ିର ଗୁଇ ତଳେ ଚକର ଫାଙ୍କରେ ବନ୍ଧୁକର ମୁହଁଟା ବାହାର କରି ଦେଇ ଯେ ନିସ୍ପନ୍ଦ ଭାବରେ ପଡ଼ି ରହିଥିଲା, ସେ ଅନ୍ୟ ଜଗତର ମଣିଷ । ଜିମ୍ ଜଳର ପାତ୍ରଟା ଆଣି ତାର ନାକ ପାଖରେ ଧରିଲା । ଗୋଟାଏ ଧୂଳି ମିଶା ତିକ୍ତ ଗନ୍ଧରେ ତାର ମଥା ଭରିଗଲା । ହଠାତ୍ ତାର ମନେ ହେଲା, ବାବାଙ୍କ ଠାରୁ ତାର ଢେର୍ କଥା ଜାଣିବାକୁ ଅଛି । କାହିଁକ ନା, ଆଜି ଅକସ୍ମାତ୍ ସେ ଯେମିତି ଏଠାକୁ ଆସି ବୁଝି ପାରିଛି, କ ରହସ୍ୟମୟ ବନ୍ଧନରେ ଏହି ଲୋକଟି ସହିତ ସେ ଛନ୍ଦା ହୋଇଛି ।

ମଣିଷ ସବୁର କେଉଁଠି ତାର ସଂଯୋଗ ? କାହିଁକି ବା ତାର ଭାଇ ଭଉଣୀମାନେ ଆସିଛନ୍ତି ? କାହିଁକି ସେମାନେ ଆଜ ପର୍ଯ୍ୟନ୍ତ ମାଉମୁଖରେ ଏହି ବିପଦସଙ୍କୁଳ ଯାତ୍ରାରେ ବାହାରିଛନ୍ତି ? ଆଉ ଯେଉଁମାନଙ୍କୁ ସେ ଖୁବ୍ ଘୃଣା କରେ, ସେମାନେ ବା ତାର ଭାଇ ଭଉଣୀ ହେଲେ କାହିଁକି ?

ସେତେବେଳେ ବି ରୌଦ୍ରର ତାପ ପ୍ରଖର । କିନ୍ତୁ ସେ ଆଡ଼କୁ ତାର ଦୃଷ୍ଟି ନାହିଁ । ସେତେବେଳେ ସେ ନିଜର ଏହି ଅବସ୍ଥାର ଭିତରେ ବୁଡ଼ି ଯାଇଥିଲା । ସେ କ୍ଷୁଧା ତୃଷ୍ଣାର କଥା ଭୁଲି ଯାଇଥିଲା, ଆଉ ଭୁଲି ଯାଇଥିଲା ଯେ ସାରା ସଂସାର ନିକଟରେ ସେ ଅପାଙ୍କ୍ତେୟ ।

ଏହି ମୁହୂର୍ତ୍ତରେ ସେ ଏକ ନୂତନ ରହସ୍ୟମୟ ରାଜ୍ୟର ସିଂହଦ୍ୱାର ଉନ୍ମୋଚନ କରୁଛି । ଯେମିତି ପରମାତ୍ମୀୟମାନଙ୍କୁ ଖୋଜି ଖୋଜି ସେ ନିଜ ବକ୍ଷରେ ବୋହି ନେଇ ଯାଉଛି । ଠିଆ ହୋଇ ରହି ସେ ବାବାର ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲା । ଦେଖିଲା, ବାବା ଗ୍ଲୁଡ ଚକ୍ରୁ ବାଁ ହାତଟା ଉଠାଇ ନେଲା । ତାପରେ ଅତି ସାବଧାନରେ ସେ ଅଚଳ ଡାହାଣ ପାଦଟା ଟାଣି ସିଧା କଲା । ପାଦ ସିଧା ହେବାରୁ ସମସ୍ତ ଦେହଟାକୁ ସିଧା ଶୁଆଇ ଦେଲା । ଅନ୍ୟ ଲୋକ-ମାନେ ମଝିରେ ମଝିରେ କଥା କହୁଥିଲେ । କିନ୍ତୁ ତାର ବାବା ନୀରବ—ବନ୍ଧୁକଟା ହାତରେ ଧରି ସେ ନିଃଶବ୍ଦରେ ଶୋଇ ରହିଥିଲା ।

ସେ ହାମୁଡ଼େଇ ହାମୁଡ଼େଇ ତାର ବାବା ପାଖକୁ ଯିବାକୁ ଚାହିଁଲା । କିନ୍ତୁ ନା, କେଉଁ ଆଡ଼ୁ ଗୋଟାଏ ଦୁରନ୍ତମୟ ବାଧା ଆସି ତାକୁ ଗତିହୀନ କରିଦେଲା । ସେତେବେଳେ ତାର ମାଆ ବନ୍ ଓ ଜଳ ଦେବାକୁ ଆସିଥିଲା , ସେତେବେଳେ ଠିକ୍ ଏମିତି

ବାଧା ଆସିଥିଲା । ତାର ଏହି ତେର ବର୍ଷ ଭିତରେ ଆଜ ସବ ପ୍ରଥମେ ସେ ଯେମିତି ତାର ବାବା ଓ ମା.ଆର ଦୁଃଖ ବୁଝିପାରିଲା ।

ହଠାତ୍ ତାର ଆଖିରେ ପଡ଼ିଲା, ଦୂରରେ ଧଳଧଳିଆ ମାଟି ଫୁଟାଇ ଦଳେ ଦଳେ ଲୋକ ବାହାରି ଆସୁଛନ୍ତି । ସେ ବୁଝି ପାରିଲା, ସେହିମାନଙ୍କ ପାଇଁ ଏହି ସ୍ୱତନ୍ତ୍ର ପହରର ବ୍ୟବସ୍ଥା ହୋଇଛି । ସେ ଦୌଡ଼ାଦୌଡ଼ି କଲା ନାହିଁ କି ଉଠିଗଲା ନାହିଁ । ଜଳର ପାତ୍ରଟା ଗୁଡ଼ି ପାଖରେ ଜାକ ଧରି ସେ ଭୂଇଁରେ ଶୋଇ ପଡ଼ିଲା । ସେ ଶୋଇ ରହି ଦେଖିଲା, ସେହି ଲୋକଗୁଡ଼ାକ ଘୋଡ଼ାରେ ଚଢ଼ି ଚନ୍ଦ୍ରାକାରରେ ସଜ୍ଜିତ ଅଠର ଖଣ୍ଡ ଗାଡ଼ି ଆଡ଼କୁ ସବେଗରେ ଆଗେଇ ଆସିଲେ । ବାଲୁକା ରାଶି ଉପରେ ଯେମିତି ଉଦ୍ଦାମ ତରଙ୍ଗ ବେପରୁଆ ଭାବରେ କୁଦି ପଡ଼େ, ଠିକ୍ ସେମିତି ଭାବରେ ସେହି ଘୋଡ଼ସବାରମାନେ ବନ୍ଧୁକର ଦୁର୍ଭେଦ୍ୟ ବାଧା ଅଗ୍ରାହ୍ୟ କରି ଆକ୍ରମଣ ଆରମ୍ଭ କରିଦେଲେ ।

କେତେବେଳ ଯାଏ ଲଢ଼ାଇ ଚାଲିଲା, ସେ କଥା ତାର ମନେ ନାହିଁ । କେତେ ମିନିଟ ହୋଇପାରେ, କେତେ ଘଣ୍ଟା ବି ହୋଇପାରେ । ତାର କିଛି ହେଲେ ମନେ ନାହିଁ । ସେହି ସମୟରେ ବୋଧହୁଏ ତାର ଚେତନା ନ ଥିଲା, ତାର ଜୀବନର ସ୍ପନ୍ଦନ ଯେମିତି ବନ୍ଦ ହୋଇ ଯାଇଥିଲା । ବାବା ସାଙ୍ଗରେ ଏକ ହୋଇ ଯାଇ ସେ ଶୋଇ ରହିବାର ଭଙ୍ଗୀ ବଦଳାଇଥିଲା ଏବଂ ନିଶାଣ ଠଉରାଇ ବାରମ୍ବାର ଗୁଳି ଫୁଟାଇ ଥିଲା । ତାର ବାବା ପରି ସେ ବି ଭାଇ ଭଉଣୀଙ୍କ ପାଇଁ ଗଭୀର ଆଶଙ୍କାରେ କମ୍ପି ଉଠିଥିଲା ଏବଂ ଉଦ୍‌ବେଗରେ ଅଭିଭୂତ ହୋଇ ପଡ଼ିଥିଲା । ଆକ୍ରମଣକାରୀମାନେ ବାରମ୍ବାର ଗାଡ଼ି ପାଖକୁ ପ୍ରାୟ

ଆଗେଇ ଆସିଲେ । ବାବାର କର୍ମଠ କର୍କଶ ହାତରୁ ବାରମ୍ବାର ସେମାନଙ୍କୁ ଲକ୍ଷ୍ୟ କରି ତାର ବନ୍ଧୁକ ଗର୍ଜି ଉଠିବାକୁ ଲାଗିଲା । ଆକ୍ରମଣକାରୀମାନେ ଛତ୍ରଭଙ୍ଗ ଦେଇ ପଳାଇଗଲେ ଏବଂ ତାପରେ ପୁଣି ଆସିଲେ । ଭୀଷଣ ହୁଙ୍କାର ନିନାଦରେ ଆକାଶ ପବନ କମ୍ପିଗଲା । ଅସଂଖ୍ୟ ଗ୍ରୋଟ ଗ୍ରୋଟ ତୁଣ୍ଡ-ମୁଖା ବର୍ଚ୍ଛା ନିକ୍ଷିପ୍ତ ହେଲା ମଝିରେ ମଝିରେ ଗୁଳି ଆସି ତାର ଆଖ ପାଖରେ ଭୂଇଁରେ ବାଜି କାଦୁଅ ତାଙ୍କ ଉପରକୁ ଫୋପାଡ଼ିବାକୁ ଲାଗିଲା । ଥରେ ଗୋଟାଏ ତୀର ଆସି ତାର ଡାହାଣ ହାତର କହୁଣୀ ପାଖରେ ମାଟିରେ ପଶି ଯାଇ ଥର ଥର ହୋଇ କମ୍ପିବାକୁ ଲାଗିଲା । ଆଉ ଏକ ଇଞ୍ଚ ଦୂର୍ଖ ଆସିଥିଲେ ସେଟା ମାଟି ବଦଳରେ ତାର ହାତରେ ଗଳି ଯାଇଥାନ୍ତା ।

ଯେତେବେଳେ ଗୋଟା ଆସି ତା ବାବାର କାନ୍ଧ ତଳେ ଗଳିଗଲା, ସେତେବେଳେ ସେ ସମ୍ପୂର୍ଣ୍ଣ ସଜାଗ ଥିଲା । ଠିକ୍ କାନ୍ଧ ଉପରେ ତୀରଟା ଗଳିଯିବା ସଙ୍ଗେ ସଙ୍ଗେ ତାର ମନେ ହେଲା—ବାବାର କାନ୍ଧ ନୁହେଁ, ତାର ନିଜ ଦେହରେ ସେହି ତୀକ୍ଷ୍ଣ ଶାଣିତ ଫଳକଟା ଆସି ଯେମିତି ତତ୍‌କ୍ଷଣାତ୍ ଗଳିଗଲା ଏବଂ ସେହି ଅଗ୍ନିର ଉତ୍ତାପ ସେ ମର୍ମେ ମର୍ମେ ଅନୁଭବ କରୁଥିଲା ।

ତ୍ବରିତରେ ଘୁଷୁରି ଘୁଷୁରି ସେ ସାମନାକୁ ଆଗେଇ ଗଲା । ତାର ହାତରେ ଜଳର ପାତ୍ର । ଧୂଳି ପଡ଼ି ପଡ଼ି ଜଳ ହଳଦିଆ ହୋଇ ଯାଇଛି । ପାତ୍ର ତଳେ ବାଲି ବସି ଯାଇଛି—ଜଳ ଉପରେ ଗୋଟାଏ ଧୂଳିର ସର ଭାସୁଛି ।

ବାବା ସେତେବେଳେ ଅବସ୍ଥାରୁ ଚିତ୍ ହୋଇ ଯାଇଥିଲା । କମ୍ବଳ ଖାଲି ପାଦରେ ବନ୍ଧୁକର ନଳଟା ବାଜିବାରୁ ସେ ଶିହରି

ଉଠିଲା । ନଳଟା ଏବେ ବି ଗରମ ଲାଗିଲା ସେ ମନେ ମନେ ଭାବିଲା, କି ଆଶ୍ଚର୍ଯ୍ୟ, ଏଣଣି ବି ସେ ଏମିତି କଥା ମନେ କରି ପାରୁଛି !

ତାକୁ ଦେଖି ବାବା ଏକବାରେ ବିସ୍ମିତ ଓ କ୍ଷୁବ୍ଧ ହୋଇଗଲେ । କୌଣସି ପ୍ରକାରେ ସେ କହି ପାରିଲେ—ଏ କଣ ଜିମ୍, ତୁ ଏଠାକୁ କାହିଁକି ଆସିଲୁ ?

ବାବାର ମୁହଁ ଆଡ଼କୁ ଥରେ ମାତ୍ର ଚାହିଁ ଦେଇ ସେ ବୁଝି ପାରିଲା, ମୃତ୍ୟୁର କଳା ଛାଇ ସେହି ମୁଖ ଉପରେ ପର୍ଦ୍ଦା ଟାଣି ଦେଲଣି । ତଥାପି ତାର ଯେମିତି କ'ଣ ହୋଇ ଗଲା । ପଚାରିବାକୁ ଓ କହିବାକୁ ତଥାପି ତାର ଯେଉଁ ଲକ୍ଷ ଲକ୍ଷ କଥା ଥିଲା, ସେସବୁ ତୁଣ୍ଡରେ ନ ଧରି ସେ ଆସ୍ତେ ଆସ୍ତେ କହିଲା—ମୁଁ ତୁମ ପାଇଁ ଜଳ ଆଣିଥିଲି ।

—ଏଠାକୁ ! ଛି, ଛି, ଜିମ୍, ଏଠାକୁ ଏହି ଲଢ଼ାଇ ଭିତରେ ଆସିବା କଣ ତୋର ଉଚିତ ହୋଇଛି ?

କି ଆଶ୍ଚର୍ଯ୍ୟ ! ଜିମ୍ କାନ୍ଦି ପାରିଲା ନାହିଁ । କାହିଁକି ସେ ଜାଣେ ନା । କିନ୍ତୁ ମନେ ମନେ ସେ ବୁଝି ପାରିଥିଲା । ଏ ଜୀବନରେ ଆଉ କେବେ ହେଲେ ସେ କାନ୍ଦିବ ନାହିଁ । ବାବାର ଅଭିଯୋଗର ଉତ୍ତର ଦେବାକୁ ଯାଇ ସେ ସ୍ମିତ କଣ୍ଠରେ କହିଲା—ମୋତେ ମାଲୁମ ହେଉଛି, ତୁମକୁ ଶୋଷ ଲାଗୁଛି, ବାବା !

—ଶୋଷ ?

—ମୋ ପାଖରେ କପେ ଜଳ ଅଛି, ତୁମେ ପିଇଦିଅ ।

ଅତି ସାବଧାନରେ ଧୀରେ ଧୀରେ ସେ ଜଳର ପାତ୍ରଟା ତଳେ ରଖିଲା । ତାର ଆଖି ଆଗରେ ସକାଳର ସେହି ଘଟଣା ଭାସିଗଲା । ସାତ ଜଣଙ୍କ ଜଳ ସେ ନଷ୍ଟ କରିଛି । କାନ୍ଧ ତଳେ

ଗୋଟାଏ ହାତ ଗଳାଇ ସେ ତା ବାବାକୁ **ଟିକଏ** ଟେକି ଉଠାଇ ଦେଲା । ସଙ୍ଗେ ସଙ୍ଗେ ତାର **ଆଖିରେ** ପଡ଼ିଗଲା, ଯନ୍ତ୍ରଣାରେ ବାବାର ମୁଖ କଳା ହୋଇ ଯାଇଛି ।

—ଖୁବ୍ କଷ୍ଟ ହେଉଛି, ବାବା ?

—ସେ କିଛି ନୁହେଁ, ଜିମ୍ । ବାବା ଆସ୍ତେ ଆସ୍ତେ ମଥା ବୁଲାଇ ଗାଡ଼ିଗୁଡ଼ାକର ବାହାରକୁ ଚାହିଁ ଦେଖିଲେ । ତାର ଆଖିରେ ପଡ଼ିଲା, ଲଢ଼ାଇ ଶେଷ ହୋଇ ଯାଇଛି, ଆକ୍ରମଣକାରୀମାନେ ପଳାଇଲେଣି । ପ୍ରାନ୍ତର ଉପରେ କେତେଗୁଡ଼ାଏ ସବାରହୀନ ଘୋଡ଼ା ଘୂରି ବୁଲୁଥିଲେ ଏବଂ କେତେ ଜଣ ମଣିଷ ଗଡ଼ା ଗଡ଼ି ହେଉଥିଲେ ।

ସେ କିଛି ନୁହେଁ, ଜିମ୍—ବାବା ନିଜ ମନେ ମନେ କଥା ଗୁଡ଼ାକ **ଆଉ** ଥରେ କହିଲେ ।

—ମୁଁ ସେ ଜଳ ଆଣିଛି, ବାବା ।

ବାବାର ମୁଖ ପୁଣି ଯନ୍ତ୍ରଣାରେ ବିକୃତ ହୋଇଗଲା । ସେ ଅସ୍ପଷ୍ଟ ସ୍ୱରରେ କହିଲା—ହଉ, ଟିକିଏ ଜଳ ଦେ ।

ବାବାର ଓଠ ପାଖକୁ ଜଳର ପାତ୍ରଟା ନେବା ମାତ୍ରେ ବାବାର ଲମ୍ବ ଦାଢ଼ୀ ତାର ଆଙ୍ଗୁଳିରେ ବାଜିଲା । ତତ୍‌କ୍ଷଣାତ୍ ଗୋଟାଏ ଅଦ୍‌ଭୁତ ଶିହରଣରେ ତାର ଦେହ କମ୍ପିଗଲା । ତାର ମନେ ହେଲା, ଏହି ତାର ବାବା ।

—ଜଳଟା ହରି ମିଠା, ଜିମ୍ ।

—ସବୁତକ ପିଇ ଦିଅ ।

—ଟିକଏ କଷ୍ଟ ହେଉଛି, ଜିମ୍ । ଯେମିତି ଶୀତ ଲାଗୁଛି ।

—ସେ କିଛି ନୁହେଁ । ତୁମେ ଭଲ ହୋଇଯିବ, ବାବା ।

—ନା, ନା, ତୋତେ ଭାବିବାକୁ ହେବ ନାହିଁ, ଜିମ୍ !

—ନା, ବାବା, ମୁଁ ଆଦୌ ଭାବୁ ନାହିଁ ।

—ଆଉ ଟିକିଏ ଜଳ ଦେବୁ ?

ପାତ୍ରରେ ଆଉ ଜଳ ନ ଥିଲା । ଜିମ୍ ବାବାର ମୁହଁ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲା । ମୁହଁର ରେଖା ଗୁଡ଼ିକ ଆହୁରି ସ୍ପଷ୍ଟ ଓ ଆହୁରି ଗଭୀର ହୋଇ ଫୁଟି ଉଠିଥିଲା । ତାର ଅପଲକ ଚକ୍ଷୁର ଚାହାଣୀ ଲକ୍ଷ୍ୟହୀନ । ସେ ଧୀରେ ଧୀରେ ବାବାର ନରମ ଲମ୍ବା ଦାଢ଼ୀ ଓ ଶୁଖିଲା ଓଠ ଉପରେ ଆଙ୍ଗୁଳି ବୁଲାଇ ଦେଲା ।

—ଜିମ୍ !

ମୁହଁ ଟେକି ସେ ଦେଖିଲା, ସମସ୍ତେ ତାଙ୍କୁ ଘେରି ଠିଆ ହୋଇଛନ୍ତି । କିଏ ଜାଣେ, କେତେ ବେଳୁ ଆସି ସେମାନେ ଠିଆ ହୋଇଛନ୍ତି । କିନ୍ତୁ ସେମାନଙ୍କର ଉପସ୍ଥିତି ତାକୁ ଆଦୌ ଭଲ ଲାଗିଲା ନାହିଁ । ମନେ ହେଲା, ସେମାନେ ଯେମିତି ଅନଧିକାର ପ୍ରବେଶ କରିଛନ୍ତି ।

—ଜିମ୍, ତୁ ଚାଲିଗଲେ ଭଲ ହୁଅନ୍ତା ।

ଜିମ୍ ମଥା ହଲାଇଲା : ନା । ତାର ମନ କହିଲା, ଯାହାହେଲେ ହେଉ ପଛକେ, ଏଠାରେ ବାବା ପାଖରେ ରହିବା ତାର ଏକ୍ଷଣି ଉଚିତ ।

—ଚାଲି ଯା, ଜିମ୍ !

—ନା, ମୁଁ ଏଠି ଅଛି, ଆପଣମାନେ ଯାଆନ୍ତୁ ମାଆକୁ ଡାକି ଆଣିବେ ।

ସେମାନଙ୍କ ଚକ୍ଷୁର ନୀରବ ଚାହାଣୀ ଯେ କଣ ଜଣାଇଲା, ତାହା ସେ ବୁଝି ପାରିଲା ନାହିଁ ।

ଆଜ କୌଣସି ବାଦ ପ୍ରତିବାଦ ନ କରି ସେ ଉଠି ଠିଆ ହେଲା । ସେତେବେଳ ଯାଏ ସେ ମନେ ମନେ ଅବଶ୍ୟ ସ୍ଥିର କରିପାରୁ ନ ଥିଲା, ପିବ କି ନାହିଁ । ବୁଢ଼ା କ୍ୟାପ୍‌ଟେନ ବ୍ଲାଣ୍ଡ ଆଗକୁ ବଢ଼ି ଆସି ତାକୁ ଝିଙ୍କି ନେଇ ଚାଲିଗଲା ।

ଖାଇର ବାହାରେ ଚଟ୍ଟାଣରେ ମାଆ ଶୋଇଥିଲା—ତାର ସର୍ବାଙ୍ଗ କମ୍ବଳରେ ଆବୃତ । ସେମାନେ କମ୍ବଳଟା କାଢ଼ି ନେଲେ । ମାଆର ମୁହଁ ଆଡ଼କୁ ଅନାଇଁ ସେ ଦେଖିଲା, ତାର ମୁଖଟି ଗମ୍ଭୀର ଶାନ୍ତିରେ ସୁନ୍ଦର ହୋଇ ରହିଛି । ଆଖି ଦୁଇଟି ଅର୍ଦ୍ଧମୀଳିତ ଏବଂ ମୁହଁ ଉପରୁ ସେହି କ୍ଲାନ୍ତ ରେଖା ସବୁ ଲୋପ ହୋଇ ଯାଇଛି । ବାବାର ମୁଖ ସହିତ ଏହାର କୌଣସି ତୁଳନା ହୁଏ ନାହିଁ । ଓଠ ଦୁଇଟି ଟିକିଏ ହେଲେ ଶୁଖି ଯାଇ ନାହିଁ । ସେ ମନେ ମନେ ଭାବିଲା, କାହିଁ କେଉଁ ଦିନ ହେଲେ ଏହି ଓଠ ଦୁଇଟି କଣ ତାକୁ କିଛି କଠିନ କଥା କହିଛି ? ସେ ଆସ୍ତେ ଆସ୍ତେ ଆଙ୍ଗୁଳିର ଅଗରେ ଓଠ ଦୁଇଟିକୁ ସ୍ପର୍ଶ କଲା । ଓଠ ଦୁଇଟି କି ଥଣ୍ଡା ! ସେହି ଶୀତଳତା ତାର ଦେହ ସାରା ଚରିଗଲା—ସେ ଯେମିତି ଭୟରେ କାଠ ହୋଇଗଲା । ନା, ମାଆ ମରି ଯାଇଛି ବୋଲି ସେ ଡରିଗଲା ନାହିଁ । ତାର ଭୟ ହେଲା ଅନ୍ୟ ଜାଗାରେ, ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର । ଏକ୍ଷଣି ସେ ବୁଝି ପାରିଲା, ମାଆ ବାବା ସେମାନଙ୍କ ପାଖରେ କ'ଣ ଥିଲେ । କିପରି ଭାବରେ ଦୁଃଖ ବେଦନା ଓ କଷ୍ଟ ଭିତରେ ଜନ୍ମ ହେଲାଠୁଁ ସେମାନେ ଏମାନଙ୍କୁ ଲାଳନ ପାଳନ କରି ଆସୁଥିଲେ ଏବଂ ଏମାନଙ୍କୁ ଦୁଃଖର କାଳ ରାତି ପାର କରାଇ ପଶ୍ଚିମରେ ପହଞ୍ଚି ସୁନେଲି ସୂର୍ଯ୍ୟୋଦୟର ସୁଖ ଆଣି ଦେବାକୁ ଚାହିଁଥିଲେ ।

ମୋତେ ଖୋଜିବା ଲାଗି ସେ ଖାଇର ବାହାରକୁ ଆସିଥିଲା—ଜିମ୍ ଅସ୍ପଷ୍ଟ ସ୍ୱରରେ କହି ପକାଇଲା ।

କ୍ୟାପ୍‌ଟେନ କ୍ଲାର୍କ କହିଲା – କାନ୍ଦିବାରେ କିଛି ଫଳ ନାହିଁ, ଜିମ୍ ।

ଜିମ୍‌ର ଆଖି ଆଗରେ ଖଣ୍ଡିଏ ଛବି ଭାସିଗଲା । ସେହି ଛବିଟି ଗୁମ୍ଫା ଭଳି ଅସ୍ପଷ୍ଟ । ସେମାନେ—ଜେନ, ବେନ୍, କ୍ୟାଲେ, ଲିଜ, ସମସ୍ତେ ରହିଛନ୍ତି—ଚାରି ଭାଇ ଭଉଣୀମାନେ । ସେମାନଙ୍କ ଶିରା ପ୍ରଶିରାରେ ଏକା ରକ୍ତ ପ୍ରବାହିତ, ଏକ ଗର୍ଭରୁ ସେମାନଙ୍କର ଜନ୍ମ । ସେମାନେ ଏକ ବୃକ୍ଷର ଫଳ, ଏକ ଚନ୍ଦାର ଧାରା । ସେମାନଙ୍କ ଜୀବନରେ ଏକ ଈର୍ଷା, ଏକ କୁଟିଳତା ମୂର୍ତ୍ତିମନ୍ତ ହୋଇ ଉଠିଛି ।

ନା, ମୁଁ କାନ୍ଦୁ ନାହିଁ – ଜିମ୍‌ର ଗଳାର ସ୍ୱର ଅତି ଗମ୍ଭୀର । ବୟସ ଅନୁପାତରେ ଅତିଶୟ କଠିନ । ଭାଇ ଭଉଣୀଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇ ସେ ହୁକୁମ ଦେଲା—ଏଠୁ ସମସ୍ତେ ପଳାଉଛ ନା !

ସନ୍ଧ୍ୟାର ଘୋର ଗୁମ୍ଫା ନଇଁ ଆସିଲା । ବିଳମ୍ବମାନ ଆଲୋକରେ ଗାଡ଼ିଗୁଡ଼ାକ ଅସ୍ପଷ୍ଟ ଦିଶିଲା । ରୌଦ୍ର-ଦଗ୍ଧ ପ୍ରାନ୍ତର ବକ୍ଷରେ ପବନ ମୃଦୁ ମୃଦୁ ବହିବାକୁ ଲାଗିଲା ।

ଭାଇ ଭଉଣୀଙ୍କ ମୁଖରେ ବିସ୍ମୟ ଫୁଟି ଉଠିଲା । ତାପରେ ସେମାନେ ମଥା ତଳକୁ ପୋତି ଧୀରେ ଧୀରେ ଅପସରି ଗଲେ । ଭୁଲିଯିବା ବେଳେ ଜେନ କାନ୍ଦିବାକୁ ଲାଗିଲା, ବେନ୍ ଡରିଯାଇ ଚୁପ୍ ହୋଇ ରହିଲା ଏବଂ କ୍ୟାଲେ ଖାଲି ବାରମ୍ବାର ପଛକୁ ଫେରି ମାଆର ମୁଖ ଆଡ଼କୁ ଅନାଇବାକୁ ଲାଗିଲା । ସେହି ମୁଖଟି ନିର୍ବାକ, ନିଶ୍ଚଳ ।

କ୍ୟାପ୍‌ଟେନ ବାର୍ଡ କଥା କହିବାକୁ ଆରମ୍ଭ କଲା – ସେଠାରେ ଠିଆ ହୋଇ କୌଣସି ଫଳ ନାହିଁ, ଜିମ୍ ! ମଣିଷ ପରି

ତୋତେ ସବୁ ସହିବାକୁ ପଡ଼ିବ । ହଁ, ମଣିଷ ପରି ସବୁ, ସବୁ ସହିବାକୁ ହେବ । ଦେଖ, ଆମେ କେବେ ଭାବି ନ ଥିଲୁ ଯେ ଏମିତି ଘଟି ପାରେ । କୌଣସି ନୂଆ ଜାଗାରେ ନୂଆ ଘରଦ୍ୱାର ତିଆରି କରିବା ପାଇଁ ଆମେ ବାହାରିଥିଲୁ । ଆମେ ନୂଆ ଘରର ସ୍ୱପ୍ନ ଦେଖୁଥିଲୁ । ମୋର ମନେ ହୁଏ, ଆମ ଭିତରୁ କେହି ହେଲେ ଏମିତି କିଛି ପ୍ରତ୍ୟାଶା କରି ନାହିଁ । କିନ୍ତୁ ଆମେ ଯାହା ବି ଭାବି ପାରି ନାହୁଁ, ତାହା ଘଟିଛି । ହଁ, ତାହା ଘଟିଛି । ଦେଖ, ଯେତେ-ବେଳେ ଏମିତି ପ୍ରଚଣ୍ଡ ହୁଏ, ସହସା ଦୁଃଖର ଦିନ ଆସେ, ସେତେବେଳେ ତାକୁ ସହି ଯିବାକୁ ହୁଏ, ହସ ହସ ମୁଖରେ ତା ଆଡ଼କୁ ଚାହିଁ ଦେଖିବାକୁ ହୁଏ । ତାହା ନ ହେଲେ ସେହି ଦୁଃଖର ହାତରୁ ତୋର ଆଦୌ ପରିତ୍ରାଣ ନାହିଁ । ସେ ତୋତେ ଭାଙ୍ଗି ପିଟି ନିଃଶେଷ କରିଦେଇ ଯିବ ।

ଜିମ୍ ନିଜର ମନ ଭିତରେ କହିବାକୁ ଲାଗିଲା—ମାଆ ମୋତେ ଖୋଜିବା ପାଇଁ ବାହାରକୁ ଆସିଥିଲା । ମାଆ ଜାଣିଥିଲା, ମୁଁ ବାହାରେ ବସିଛି । ତେଣୁ ସେ ମୋତେ ନେବା ପାଇଁ ଆସିଥିଲା । ଆଜି ସକାଳେ ମୁଁ ସାତ ଜଣଙ୍କର ଜଳ ନଷ୍ଟ କରି ଦେଇଥିଲି । ତେବେ ସୁଦ୍ଧା, ମୁଁ ଜାଣେ ନାହିଁ, ମୋ ପାଇଁ ସେ କେଉଁଠୁ କପେ ଜଳ ଆଣିଥିଲା ।

ଭାରି ନିଶ୍ୱାସ ଛାଡ଼ିବାକୁ ଯାଇ ସେ ନିଜେ ଥମିଗଲା । ବାବାର କଥା ତାର ମନେ ପଡ଼ିଲା । ମୁହଁ ତଳକୁ ପୋତି ସେ କହି ଯିବାକୁ ଲାଗିଲା—କପେ ଜଳ ଦେବା ପାଇଁ ମୁଁ ତାଙ୍କ ପାଖକୁ ଯାଇଥିଲି । ଜୀବନରେ କେବେ ହେଲେ ମୁଁ ଏମିତି କାମ କରି ନାହିଁ । କେଉଁ ଦିନ ମୁଁ ତାଙ୍କ ପାଇଁ କିଛି କରି ନାହିଁ । ଅନ୍ତତଃ ଆଜି ଯେମିତି

ଜଳ ନେଇ ଯାଇଥିଲ, ସେମିତି କିଛି । ଜଳ ନେଇ ଯାଇଥିଲେ ସୁଦ୍ଧା ତାଙ୍କୁ ଦେବା ପାଇଁ ମୋର ସାହସ କୁଳାଇଲା ନାହିଁ । ମୋତେ ଡର ମାଡୁଥିଲା, କାଳେ ସେ ମୋତେ ବକିବେ, କହିବେ କାହିଁକି ମୁଁ ଝାଡ଼ିରେ ବାହାରକୁ ଆସିଛି । ମୁଁ ବଡ଼ ଡରୁଆ କି ନା !

କ୍ୟାପ୍‌ଟେନ ବାଧା ଦେଇ କହିଲ—ଶୁଣ, ଜମ୍ । ସେମାନେ ବର୍ତ୍ତମାନ ଚିର ଶାନ୍ତିରେ ଶୋଇ ପଡ଼ିଛନ୍ତି । କେହି ଆଉ ସେମାନଙ୍କୁ ଉଠାଇ ପାରିବ ନାହିଁ ଓ ସେମାନଙ୍କ ଶାନ୍ତି ଭଙ୍ଗ କରି ପାରିବ ନାହିଁ । କିନ୍ତୁ ଦେଖ, ଆମମାନଙ୍କର କାମ ଶେଷ ହୋଇ ନାହିଁ । ଆମର ଖାଦ୍ୟ କମି ଆସିଲଣି ଓ ଜଳ ବି ଶେଷ ହେବା ଉପରେ । ହୁଏତ ପୁଣି ଆକ୍ରମଣ ହୋଇପାରେ, ଫେର୍ ନ ହୋଇ ବି ପାରେ । ମୋର ମନେ ହେଉଛି, ଏହି ଲଢ଼ାଇଟା ସେମାନଙ୍କୁ ସକାଳ ଯାଏ ଅଣ୍ଡାରେ ରଖିବ । ସ୍ମିଥ୍, କଲ୍ ଏଠାରୁ ପ୍ରାୟ ଚାଳିଶ ମାଇଲ ଦୂର । ଆମେ ଆଜି ରାତି ସାରା ସେହି ଆଡ଼କୁ ଯିବାକୁ ବସିଛୁ । ହୁଏତ ଭୋର ହେଲା ବେଳକୁ ଆମେ ସେଠାରେ ପହଞ୍ଚି ଯାଇଥିବୁ, କି ହୁଏତ ପହଞ୍ଚି ବି ନ ପାରୁ । କିନ୍ତୁ ଆମର ଯାତ୍ରା ବନ୍ଦ ହେବ ନାହିଁ । ତୋତେ ଏକ୍ଷଣି ଡେର୍ କିଛି ଭାବିବାକୁ ହେବ । ଆମେ ସ୍ଥିର କରିଛୁ, ତୋର ଭାଇ ଭଉଣୀଙ୍କର ଭାର କେତେ ଜଣଙ୍କ ଉପରେ ଦେଇ ଦେବୁ । ପ୍ରତି ଗାଡ଼ିରେ ତୁମ୍ଭମାନଙ୍କୁ ଜଣେ କି ଦୁଇ ଜଣ ଲେଖାଏଁ ବସାଇ ଦେବୁ ।

—ଆମର କେବଳ ତ ଗୋଟାଏ ଗାଡ଼ି ଅଛି !

—ଠିକ୍ କଥା । ମାତ୍ର ଅସଲ କଥାଟା କଣ ଜାଣୁ ? ଆମକୁ ଅନେକ ଦୂର ଯିବାକୁ ହେବ । ଭାବି ଦେଖ ଜମ୍, ଅନେକ ଦୂର ।

—ନା, ମୋ ପକ୍ଷରେ ତାହା ସେମିତି କିଛି ବେଶୀ ବାଟ ନୁହେଁ ।

—ଜନ୍, ବର୍ତ୍ତମାନ ପାଗଳାମୀର ବେଳ ନୁହେଁ ।

—ପାଗଳାମୀ ! ହୋଇପାରେ, ମୁଁ ପାଗଳାମୀ କରୁଛି । କିନ୍ତୁ କ୍ୟାପ୍‌ଟେନ, ଆମେ ଭାଇ ଭଉଣୀ ସବୁ କଦାପି ଛଡ଼ାଛଡ଼ି ହେବୁ ନାହିଁ । ଆମର ଗାଡ଼ି ଅଛି ଓ ଆମର ଘୋଡ଼ା ବି ଅଛନ୍ତି । ଆମେ ଆମ ଗାଡ଼ିରେ ଚଢ଼ି ଯିବୁ ।

—ସାନ ପିଲାଟାକୁ କଣ କରିବ ?

—ମୋର ମନେ ହେଉଛି, ଜେନ ତାକୁ ଦେଖାଶୁଣା କରି ପାରିବ ।

—ଆଃ ଜନ୍, ଆରେ ବୋକା । ଆଃ, ଆଉ କାହାକୁ ବା କହିବ ! ତୁ ତ ଦୁଧଖିଆ ପିଲାଟା ।

—ହଁ, ମୁଁ ତ ଦୁଧଖିଆ ପିଲା । ସେଇଥି ପାଇଁ ତ ମୋ ମାଆ ମୋତେ ନେଇଯିବା ପାଇଁ ଖାଇର ବାହାରକୁ ଆସିଥିଲା । ସେ ଆସିଥିଲା ବୋଲି ସିନା ମୁଁ ଆଜି ତାକୁ ହରାଇଲି । ମାଆ ଜାଣିଥିଲା, ସେ ନିଶ୍ଚେ ମରିବ । ତଥାପି ସେ ବାହାରକୁ ଆସିଥିଲା ।

—ମୂର୍ଖ, ବୋକା କେଉଁଠିକାର !

—ଠିକ୍ କଥା, କ୍ୟାପ୍‌ଟେନ । ମାତ୍ର ମୋ ଭାଇ ଭଉଣୀ-ମାନଙ୍କୁ ମୁଁ ଆଉ କେଉଁଠାକୁ ଯିବାକୁ ଦେବି ନାହିଁ ।

—ମୂର୍ଖ ! ବୋକା । ହଉ, ସେପ୍ପା ହେଉ । ଯା, ଗାଡ଼ିରେ ଘୋଡ଼ା ଜୁଡ଼ିଦେବୁ ଯା ।

ଆଶ୍ରୟର ଖାଇଟାକୁ ପଛରେ ପକାଇ ଦେଇ ଯେତେବେଳେ ସେହି ଅଠର ଖଣ୍ଡ ଗାଡ଼ି ଯାତ୍ରା ଆରମ୍ଭ କଲେ, ସେତେବେଳକୁ ପ୍ରାନ୍ତରର ବକ୍ଷରେ ଅନ୍ଧକାର ଘନ ହୋଇ ଗଲାଣି । ଗାଡ଼ି ସବୁ ଧାଡ଼ି ଧାଡ଼ି ହୋଇ ଚାଲିଛନ୍ତି । ଜନ୍‌ର ଗାଡ଼ିର ସଂଖ୍ୟା ହେଉଛି

ଷଷ୍ଠ । ତାର ହାତରେ ଗୁଡ଼ିଏ ଘୋଡ଼ାର ଲଗାମ ଭିଡ଼ିଛି । ସେହି ଘନାୟମାନ ଅନ୍ଧକାର ଭିତରେ ବି ତାର କୁଞ୍ଚିତ ଓ ରୌଦ୍ରତପ୍ତ ଅଭିଭୂତ ଚେହେରା ପାର୍ଶ୍ୱାକାର ଧରି ସମ୍ମୁନ୍ନତ ଭଙ୍ଗୀରେ ସଜାଗ ହୋଇ ଯାଇଛି । ହାତରେ ଲଗାମ ଧରି ଆନନ୍ଦ ଓ ସନ୍ଦେହରେ ଗଢ଼ ପରି ଦୃଢ଼ ଓ ଗମ୍ଭୀର ହୋଇ ସେ ଗାଡ଼ି ଉପରେ ବସି ରହିଛି । ସେ ମନ ପ୍ରାଣରେ ଜାଣେ ଯେ ଗାଡ଼ିର ପାଞ୍ଚଟି ଅସହାୟ, ସନ୍ତ୍ରସ୍ତ ଅଥଚ ସନ୍ଦେହାକୁଳ ଜୀବନର ଏକମାତ୍ର ରକ୍ଷାକର୍ତ୍ତା ହେଉଛି ସେ । ସେ ହିଁ ସେମାନଙ୍କର ଏକମାତ୍ର ପରିଚାଳକ ।

ଘୋଡ଼ାର ଖୁରାର ଶବ୍ଦ ସାଙ୍ଗରେ ଗାଡ଼ି ଚକର ଘଡ଼ ଘଡ଼ ଆବାଜ ଶୁଣିଲା କ୍ଷଣି, ସେ ସବୁ ଦୁଃଖ ଓ ଶୋକ ପୋଛି ପକାଇବାକୁ ବସିଲା । ସବୁ ଆଶଙ୍କାକୁ ଦୁଇ ପାଦରେ ଦଳି ଦେଇ ସେ ଆଗକୁ ଯିବାକୁ ଚାହିଁଲା । ହଁ, ତାକୁ ଦୁଃଖ, ଶୋକ ଓ ଆଶଙ୍କାକୁ ଜୟ କରିବାକୁ ହେବ । ଭବିଷ୍ୟତରେ ଆଉ କେଉଁ ଦିନ ସେମାନେ ଯେମିତି ତାର ଜୀବନରେ ସ୍ଥାନ ନ ପାଆନ୍ତି । ଆଜି ଭାଇ ଭଉଣୀ-ମାନଙ୍କ ଭିତରେ ସେ ଆଉ କେହି ନୁହେଁ—ସେମାନଙ୍କ ଦଳରୁ ବାହାରି ଯାଇ ସେ ଆଜି ଅନ୍ୟ ମଣିଷ । ସେ ଶୁଖିଲା ଓଠ ଉପରେ ଥରେ ଜିଭ ବୁଲାଇ ନେଲା । ତାପରେ ଘୋଡ଼ାର ଲଗାମ ଟାଣି ଦେଇ ମୃଦୁସ୍ୱରରେ ମାତ୍ର ସେ କହି ଉଠିଲା—ଆହା, ସୁସାନ୍ନା, ସୁନା ଝିଅଟା ପରା, ମୋ ଲାଗି ଆଉ କାନ୍ଦିବୁ ନାହିଁ ।

— ହାଓ୍ୱାର୍ଡ଼ ଫାଷ୍ଟ

# ଭୂତବର

ବହୁ ବର୍ଷ ପୂର୍ବେ ଜର୍ମାନୀରେ ମେନ୍ ଓ ରାଇନ ନଦୀର ସଙ୍ଗମ ସ୍ଥଳରେ ଅଡ଼େନୱାଲ୍ଡ଼ ପର୍ବତ ଶ୍ରେଣୀର ଶିଖର ଦେଶରେ ଏକ ବନ୍ୟ ଓ ରମଣୀୟ ସ୍ଥାନରେ ବ୍ୟାରନ ଭନ୍ ଲ୍ୟାଣ୍ଡ୍ରସର୍ଟ ଯେଉଁ ଦୁର୍ଗ ନିର୍ମାଣ କରିଥିଲେ, ତାହା ଅଦ୍ୟାପି ଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ରହି ଅତୀତର ଉଜ୍ଜ୍ୱଳ ଓ ମହିମାମୟ ଦିନଗୁଡ଼ିକର ସାକ୍ଷ୍ୟ ପ୍ରଦାନ କରୁଅଛି ।

ସେତେବେଳେ ଜର୍ମାନୀରେ ଯୁଦ୍ଧର ଅବସାନ ଘଟି ଶାନ୍ତିର ସମାବେଶ ହେଉଥିଲା । ଅଧିକାଂଶ ଜମିଦାରମାନେ ଇଗଲ ପକ୍ଷୀର ବସା ପରି ପାର୍ବତ୍ୟ ଦୁର୍ଗ ପରିତ୍ୟାଗ କରି ସମତଳ ଭୂମିରେ ମନୋରମ ପ୍ରାସାଦ ନିର୍ମାଣ କରି ବାସ କରୁଥିଲେ ସୁଦ୍ଧା, ବ୍ୟାରନ ଲ୍ୟାଣ୍ଡ୍ରସର୍ଟ ଆପଣାର ସେହି ପାର୍ବତ୍ୟ ଦୁର୍ଗରେ ବାସ କରୁଥିଲେ । ନାନା କାରଣରୁ ଜ୍ଞାତି ବନ୍ଧୁମାନଙ୍କର ତାଙ୍କ ସହିତ ବିବାଦ ଥିବାରୁ, ସେ ନିର୍ଜ୍ଜନରେ ବାସ କରିବାକୁ ଅଧିକ ପସନ୍ଦ କରୁଥିଲେ । ସେ ଜଣେ ଅତିଶୟ ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ ।

କିନ୍ତୁ ତାଙ୍କର ଏକମାତ୍ର ସନ୍ତତି, ଅର୍ଥାତ୍ ଏକମାତ୍ର କନ୍ୟା ଛଡ଼ା ସଂସାରରେ ଅନ୍ୟ କୌଣସି ଆତ୍ମୀୟ ସ୍ୱଜନ ନ ଥିଲେ ।

ଧନୀ ଜମିଦାରର ଏକମାତ୍ର ସନ୍ତାନ ବୋଲି ହେଉ କିମ୍ବା ଅନ୍ୟ କୌଣସି କାରଣ ହେତୁ ହେଉ, ବିଧାତା ତାଙ୍କ କନ୍ୟାକୁ ଅତୁଳନୀୟ ରୂପ ବୈଭବରେ ସୌଭାଗ୍ୟବତୀ କରିଥିଲେ । ଯେ କେହି ତାକୁ ଥରେ ଦେଖୁଥିଲା, ସହସା ସେ ତା ଉପରୁ ଆଖି ଫେରାଇ ନେଇ ପାରୁ ନ ଥିଲା । ଲୋକେ ମଧ୍ୟ କୁହାକୋହି ହେଉଥିଲେ, ଏପରି ଅନନ୍ୟ ସୁନ୍ଦରୀ ବାଳିକା ସମଗ୍ର ଜର୍ମାନୀରେ ବିରଳ ।

ନିଜର କନ୍ୟାକୁ ଉପଯୁକ୍ତ ଶିକ୍ଷାଦାନ କରିବା ପାଇଁ ବ୍ୟାରନ ଦୁଇ ଜଣ ସୁଶିକ୍ଷିତା ତରୁଣୀ ଶିକ୍ଷୟିତ୍ରୀ ନିଯୁକ୍ତ କଲେ । ସେମାନେ ବାଳିକାକୁ ନାନା ବିଦ୍ୟାରେ ପାରଙ୍ଗମ କରିବାକୁ ଲାଗିଲେ । ସେହି ସମୟରେ ଜର୍ମାନୀରେ ନାରୀ-ଶିକ୍ଷାର ଯଥେଷ୍ଟ ପ୍ରଚଳନ ନ ଥିଲା । ତେଣୁ ଯେତେବେଳେ ବ୍ୟାରନଙ୍କ କନ୍ୟା ନିଜର ନାମ ନିର୍ଭୁଲ ଭାବରେ ସ୍ୱାକ୍ଷର କରି ପାରିଲା, ସେତେବେଳେ ତାର ଶିକ୍ଷା ସମ୍ପୂର୍ଣ୍ଣ ହୋଇଛି ବୋଲି ଘୋଷିତ ହେଲା । ଅଠର ବର୍ଷ ବୟସରେ ନିଜର ନାମ ସ୍ୱାକ୍ଷର କରିବା ଛଡ଼ା ବାଳିକାଟି ସୂଚୀ କର୍ମ ଓ ନୃତ୍ୟ ବିଦ୍ୟାରେ ମଧ୍ୟ ପାରଦର୍ଶିତା ଲାଭ କଲା । ତେଣୁ ବ୍ୟାରନ ନିଜ କନ୍ୟାକୁ ଜଣେ ମନୋମତ ପାତ୍ର ହାତରେ ସମର୍ପଣ କରିବା ପାଇଁ ଉଦ୍‌ବିଗ୍ନ ହୋଇ ପଡ଼ିଲେ ।

ଅବଶେଷରେ ବ୍ୟାରନ ବାଭେରିଆ ପ୍ରଦେଶର ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିର ପୁତ୍ର ସହିତ କନ୍ୟାର ପାଣି ଗ୍ରହଣ ବିଷୟ ସ୍ଥିର କଲେ ଏବଂ ବିବାହର ଏକ ନିର୍ଦ୍ଦିଷ୍ଟ ଶୁଭ ଲଗ୍ନ ଧାର୍ଯ୍ୟ ହେଲା । ସେତେବେଳେ ଜର୍ମାନୀରେ ପାତ୍ର ଓ ପାତ୍ରୀମାନେ ପରସ୍ପରକୁ ଦେଖି ପସନ୍ଦ କରୁଥିଲେ ଏବଂ ନିଜର ଅଭିଭାବକମାନଙ୍କ ଦ୍ୱାରା ସେମାନଙ୍କର ଭବିଷ୍ୟତ ନିର୍ଦ୍ଧାରିତ ହେବାର ବ୍ୟବସ୍ଥା ପ୍ରଚଳିତ ଥିଲା ।

ବିବାହ ଉପଲକ୍ଷରେ ସାମାଜିକ ରୀତି ଅନୁଯାୟୀ ଏକ ବୃହତ୍ ଭୋଜିର ଆୟୋଜନ କରି ବ୍ୟାରନ ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ଓ ବନ୍ଧୁ ବାନ୍ଧବଙ୍କୁ ନିମନ୍ତ୍ରଣ କରିଥିଲେ । ତେଣେ ତରୁଣ କାଉଣ୍ଟ ଭନ ଆଲଟେନବର୍ଗ ମଧ୍ୟ ସୈନ୍ୟ ବାହିନୀରୁ ଛୁଟି ନେଇ ଘୋଡ଼ାରେ ଚଢ଼ି ଶ୍ୱଶୁରାଳୟ ଅଭିମୁଖରେ ଯଥା ସମୟରେ ଯାତ୍ରା କଲା ।

ଜାମାତାକୁ ମହା ସମାରୋହରେ ଅଭ୍ୟର୍ଥନା ଜଣାଇବା ପାଇଁ ବ୍ୟାରନ ମୁକ୍ତ ହସ୍ତରେ ବ୍ୟୟ କଲେ ଏବଂ ସେଥିରେ ତିଳେ ମାତ୍ର କାର୍ପଣ୍ୟ ପ୍ରଦର୍ଶନ କଲେ ନାହିଁ । ସୁନ୍ଦରୀ କନ୍ୟାକୁ ଉପଯୁକ୍ତ ମୂଲ୍ୟବାନ ବେଶ ଭୂଷାରେ ସଜାଇବା ପାଇଁ ପରିଚାରିକାଙ୍କ ଭିତରେ ତୁମୂଳ ଆନ୍ଦୋଳନ ଲାଗିଲା । କିନ୍ତୁ ସେମାନଙ୍କ ଯୁକ୍ତିତର୍କ ଭିତରେ ଅବସର ପାଇ, ବାଳିକା ନିଜର ମନୋମତ ଅଳଙ୍କାର ପରିଚ୍ଛଦରେ ବିଭୂଷିତ ହୋଇ ଅପରୂପ ଶୋଭା ସମ୍ପଦରେ ସମସ୍ତଙ୍କର ନୟନ-ମନ ମୁଗ୍ଧ କଲା ।

ବ୍ୟାରନ ଏକ ବିରାଟ ଭୋଜିର ଆୟୋଜନରେ ବ୍ୟସ୍ତ ରହିଲେ । ସେପରି ବିରାଟ ଭୋଜି ସେହି ଅଞ୍ଚଳରେ କେବେ ଦେଖାଯାଇ ନ ଥିଲା । ସେଥିପାଇଁ କେତେ ଜୀବ ଜନ୍ତୁ ଯେ ପ୍ରାଣ ହରାଇଲେ, ତାର ସୀମା ନାହିଁ ।

ଇତି ମଧ୍ୟରେ ଆହାରର ସମସ୍ତ ସମାଗତ ହେଲା । କିନ୍ତୁ ସେତେବେଳ ଯାଏ ବ୍ୟାରନଙ୍କର ଜାମାତା ଉପସ୍ଥିତ ହୋଇ ନ ଥିଲା । ସୁତରାଂ ନିମନ୍ତ୍ରିତ ଅତିଥିମାନଙ୍କୁ ଅଳ୍ପ ସମୟ ଅପେକ୍ଷା କରିବା ପାଇଁ ସେ ଅନୁରୋଧ ଜଣାଇଲେ । ଦେଖୁଁ ଦେଖୁଁ ଗୋଟିଏ ଘଣ୍ଟା ଅତିବାହିତ ହୋଇଗଲା । ତଥାପି ସୁଦ୍ଧା କାଉଣ୍ଟ ଭନ ଆଲଟେନବର୍ଗଙ୍କର ଦେଖା ମିଳିଲା ନାହିଁ । ଶେଷକୁ ବ୍ୟାରନ

ଅନନ୍ୟୋପାୟ ହୋଇ ଚନ୍ତାକୁଳ ଚିତ୍ତରେ ନିଜ ଦୁର୍ଗର ଗମ୍ବୁଜର ସର୍ବୋଚ୍ଚ ଶିଖରକୁ ଚଢ଼ି, ପାହାଡ଼ର ବକ୍ଷ ଭେଦ ଯେଉଁ ପଥ ଅପର ପାର୍ଶ୍ୱରେ ବହୁ ଦୂରକୁ ଚାଲି ଯାଇଥିଲା ନିର୍ନିମେଷ ନୟନରେ ସେହି ଆଡ଼କୁ ଚାହିଁ ରହିଲେ । କିନ୍ତୁ କାହାରି ପତ୍ତା ମିଳିଲା ନାହିଁ । ଥରେ ତାଙ୍କର ମନେ ହେଲା, ସେ ଦେଖି ପାରିଲେ ଯେପରି ଦଳେ ଲୋକ ଘୋଡ଼ାରେ ଚଢ଼ି ଖୁବ୍ ଦୂରରେ ଉପତ୍ୟକା ଆଡ଼ୁ ସଧୀରେ ଆସୁଛନ୍ତି ଏବଂ ବାଦ୍ୟ ନାଦ ଭାସି ଆସୁଛି । କିନ୍ତୁ ପର୍ବତର ପାଦ ଦେଶରେ ପହଞ୍ଚିଲା କ୍ଷଣି ସେମାନେ ସହସା ଅନ୍ୟ ଦିଗ ଅଭିମୁଖରେ ଗମନ କଲେ । ସୂର୍ଯ୍ୟଙ୍କର ଶେଷ ରଶ୍ମି ଲିଭିଗଲା । ଅନ୍ଧକାର ମାଡ଼ି ଆସିଲା । କ୍ରମେ କ୍ରମେ ପଥ ଅଦୃଶ୍ୟ ହୋଇଗଲା ଏବଂ ଶେଷରେ ଆଉ କିଛି ଦେଖାଗଲା ନାହିଁ ।

ଅକାରଣ ବିଳମ୍ବରେ ବ୍ୟାରନ୍, ତାଙ୍କର ଅତିଥିଗଣ, ଆତ୍ମୀୟ ସ୍ୱଜନ ଓ ଭୃତ୍ୟମାନେ ସମସ୍ତେ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ସମୟ ଅଯଥା ଅତିବାହିତ ହେବାକୁ ଲାଗିଲା ଏବଂ ଦିନ ପରେ ରାତି ମାଡ଼ି ଆସିଲା । ତଥାପି ବର ଆସିଲା ନାହିଁ । ଏହା ଦେଖି ସମଗ୍ର ପ୍ରାସାଦଟିରେ ଅନାଗତ ବିପଦର ଛାୟା ଘୋଟିଗଲା । ଦିନ ସାରା ଅଭୁକ୍ତ ଥିବାରୁ ଅତିଥିମାନେ କ୍ଷୁଧାରେ ଅତିଷ୍ଠ ହୋଇଗଲେ, କିନ୍ତୁ ସୌଜନ୍ୟ ବଶତଃ ମୁଖରେ କିଛି ପ୍ରକାଶ କରି ପାରିଲେ ନାହିଁ ।

ବ୍ୟାରନ ମଧ୍ୟ ଅତି ମାତ୍ରାରେ ହତାଶ ହୋଇ ପଡ଼ିଲେ । ଜୀବନ୍ତ ସୁବର୍ଣ୍ଣ ପ୍ରତିମା ପରି କନ୍ୟାର ଅପରିସୀମ ରୂପ ଲାବଣ୍ୟମୟ ମ୍ଳାନ ମୁଖ ମଣ୍ଡଳ ଉପରେ ବ୍ୟାରନଙ୍କର ଦୃଷ୍ଟି ଥରେ ପଡ଼ିବା ମାତ୍ରେ, ତାଙ୍କର ଅନ୍ତରାତ୍ମା କାନ୍ଦି ଉଠିଲା । ବରର ଆଗମନ ଲକ୍ଷ୍ୟ

କରି, ଶେଷରେ ବ୍ୟାରନ ଭୋଜନ ପାଇଁ ଆଦେଶ ଦେଲେ । ଅତିଥିମାନେ ଭୋଜନ ଟେବୁଲରେ ଯାଇ ବସିଲେ ଏବଂ ପରିଚାରକ-ଗଣ ନାନା ପ୍ରକାର ରୁଚିକର ଖାଦ୍ୟ ସାମଗ୍ରୀ ପରିବେଷଣ କରିବାକୁ ଲାଗିଲେ । କିନ୍ତୁ ବ୍ୟାରନଙ୍କ ମନରେ ଦୁଃଖର ଅନ୍ତ ରହିଲା ନାହିଁ ।

ଏଣେ ଯେତେବେଳେ ନିମନ୍ତ୍ରିତ ଅତିଥିମାନେ ବ୍ୟାରନଙ୍କର ଭାବୀ ଜାମାତା କାଉଣ୍ଟ ଭନ ଆଲଟେନବର୍ଗଙ୍କ ପାଇଁ ଅଧୀର ଆଗ୍ରହରେ ଅପେକ୍ଷା କରି ବସି ରହିଥିଲେ, ତେଣେ ମନର ଆନନ୍ଦରେ ଉତ୍ତମ ବେଶ ଭୂଷାରେ ସଜ୍ଜିତ ହୋଇ କାଉଣ୍ଟ ଘୋଡ଼ାରେ ଚଢ଼ି ଶ୍ୱଶୁରାଳୟ ଅଭିମୁଖରେ ଯାତ୍ରା କରିଥିଲା । କିନ୍ତୁ ଭର୍ଜବାର୍ଗରେ ପହଞ୍ଚି, ସେ ତାର ଜଣେ ସୈନିକ ବନ୍ଧୁକୁ ଦେଖିବାକୁ ପାଇଲା । ବହୁତ ଦିନ ପରେ ବନ୍ଧୁ ସହିତ ସାକ୍ଷାତ ହେବାରୁ, କାଉଣ୍ଟର ଆନନ୍ଦର ସୀମା ରହିଲା ନାହିଁ । ବନ୍ଧୁଟି ଛୁଟି ନେଇ ନିଜ ଘରକୁ ଯାଉଥିଲା । କାଉଣ୍ଟ ଜାଣି ପାରିଲା, ସେ କାଳେ ତା ଶ୍ୱଶୁରର ଦୂର ସମ୍ପର୍କୀୟ ଆତ୍ମୀୟ ଏବଂ ତାର ପିତା ପାର୍ବତ୍ୟ ଦୁର୍ଗ ତ୍ୟାଗ କରି ସମତଳ ଭୂମିରେ ପ୍ରାସାଦ ନିର୍ମାଣ କରି ବର୍ତ୍ତମାନ ବାସ କରୁଛନ୍ତି ।

ଦୁଇ ବନ୍ଧୁ ନାନା ମଧୁମୟ ଅତୀତ ସ୍ମୃତିର ଆଲୋଚନା କରୁଁ କରୁଁ ଅଗ୍ରସର ହେବାକୁ ଲାଗିଲେ । ସେମାନଙ୍କ ସମ୍ମୁଖରେ ସୁଦୀର୍ଘ ବନଭୂମି ପଡ଼ି ରହିଥିଲା । ବନଭୂମି ଅତିକ୍ରମ କଲା ପରେ ବ୍ୟାରନ-ଙ୍କର ପାର୍ବତ୍ୟ ଦୁର୍ଗ ପଡ଼ିବ ।

ଦୁଇ ବନ୍ଧୁ ଉଭୟ ଯୁବକ, ବୀର ଓ ଯୋଦ୍ଧା । ସେମାନେ କୌଣସି କଥାକୁ ଭ୍ରୂକ୍ଷେପ ନ କରି ବନ ଭିତରେ ପ୍ରବେଶ କଲେ ଏବଂ ଦ୍ରୁତ ଗତିରେ ଘୋଡ଼ା ଦଉଡ଼ାଇ ପଥ ଅତିକ୍ରମ କରିବାକୁ ଲାଗିଲେ । ସେମାନଙ୍କ ପଛେ ପଛେ ଟିକିଏ ଦୂରରେ ଶସ୍ତ୍ର-

ରକ୍ଷୀମାନେ ଆସୁଥିଲେ । ସେ ଯେଉଁ ସୁନ୍ଦରୀ କନ୍ୟାକୁ ବିବାହ କରିବାକୁ ଯାଉଛି ତାର ସମକକ୍ଷ କେହି ସମଗ୍ର ଜର୍ମାନୀରେ ନାହିଁ, ଏହି କଥା କାଉଣ୍ଟ ତାର ବନ୍ଧୁ ନିକଟରେ ବାରମ୍ବାର ପ୍ରକାଶ କରିବାକୁ ଲଗିଲ ।

କ୍ରମେ କ୍ରମେ ସେମାନେ ଅଡେନୱୋଲ୍ଡର ଗଭୀର ବନରେ ପ୍ରବେଶ କଲେ । ସେଠାରେ ଦ୍ରୁତ ଗତିରେ ଗମନ ଘୋଡ଼ା ପକ୍ଷରେ ଏକାନ୍ତ ଅସମ୍ଭବ । ତେଣୁ ଘୋଡ଼ା ଦୁଇଟି ଧୀରେ ଧୀରେ ଚାଲିବାକୁ ଲଗିଲେ । କାହାରିକୁ ଅବିଦିତ ନାହିଁ ଯେ ଜର୍ମାନୀର ସଦା ବେଳେ ଦୁର୍ଗସବୁ ଯେପରି ଭୂତ ପ୍ରେତମାନଙ୍କର ନିବାସ ସ୍ଥଳୀ ଅରଣ୍ୟ ମଧ୍ୟ ସେପରି ଚୋର ଓ ଡକାୟତମାନଙ୍କର ଆଶ୍ରୟ ସ୍ଥଳୀ ।

ସେତେବେଳେ ଶାନ୍ତିର ସମୟ । ଯୁଦ୍ଧର ଅବସାନ ଯୋଗୁଁ ବହୁ ସୈନିକଙ୍କର ଚାକିରୀ ଚାଲି ଯାଇଥିଲ ଏବଂ ସେମାନେ ଲୁଟ ତରାଜ ଦ୍ୱାରା ନିଜ ନିଜର ପରିବାର ପୋଷଣ କରୁଥିଲେ । ଏପରି ଏକ ଡକାୟତ ଦଳ ବଣ ମଝିରେ ଦୁଇ ବନ୍ଧୁଙ୍କୁ ଆକ୍ରମଣ କଲେ । ଉଭୟ ନିପୁଣ ଯୋଦ୍ଧା । ସୁତରାଂ ସେମାନେ ପ୍ରାଣ ପଣେ ସଂଗ୍ରାମ ଚଳାଇଲେ । ଶରୀର ରକ୍ଷୀମାନେ ପଛରେ ପଡ଼ି ଯାଇଥିଲେ । ସଂଗ୍ରାମ ଭିତରେ ସହସା ଜଣେ ଦସ୍ୟୁ କାଉଣ୍ଟ ଉପରେ ଏକ ଗୁରୁତର ଆଘାତ ହାଣିଲ ଏବଂ ସେ ଘୋଡ଼ାରୁ ପଡ଼ିଗଲ । ତାପରେ ଦସ୍ୟୁଗଣ ପୈଶାଚିକ ଉଲ୍ଲାସରେ ଚିତ୍କାର କରି ତାର ବନ୍ଧୁକୁ ଆକ୍ରମଣ କଲେ । ଏହି ସମୟରେ ଶରୀର-ରକ୍ଷୀମାନେ ଆସି ପହଞ୍ଚିଗଲେ ଏବଂ ସେମାନଙ୍କୁ ଦେଖି ଦସ୍ୟୁଗଣ ଊର୍ଦ୍ଧ୍ୱ ଶ୍ୱାସରେ ପଳାୟନ କଲେ । କାଉଣ୍ଟକୁ ଧରାଧରି କରି ତାର ବନ୍ଧୁ ଓ ଶରୀର-ରକ୍ଷୀମାନେ ଅତି କଷ୍ଟରେ ଘୋଡ଼ାରେ ବସାଇଲେ ଏବଂ ପୁଣି

ତାକୁ ଉର୍ଜବାର୍ଗକୁ ନେଇଗଲେ । ସେଠାରେ ଗୋଟିଏ ଡାକ୍ତର-ଖାନାରେ କାଉଣ୍ଟର ଚିକିତ୍ସାର ବ୍ୟବସ୍ଥା କରାଗଲା । କିନ୍ତୁ କାଉଣ୍ଟର ଝାଡ଼ୁଦିଏ ଅଧେ ଭାଙ୍ଗି ଯାଇଥିଲା ଏବଂ ତାର ମରଣ ନିକଟ ହୋଇ ଆସୁଥିଲା ।

ମୃତ୍ୟୁ ଶଯ୍ୟାରେ ସେ ତା ବନ୍ଧୁକୁ ଅନୁରୋଧ କରି କହିଲା, "ଭାଇ, ମୋ ପାଇଁ ବ୍ୟାରନ ଓ ତାଙ୍କ ଝିଅ ଅପେକ୍ଷା କରି ବସି ରହିଥିବେ । ମୋର ଏକାନ୍ତ ଅନୁରୋଧ, ତୁମେ ଏକ୍ଷଣି ସେଠାକୁ ଯାଇ ମୋର ଏହି ଆକସ୍ମିକ ବିପଦ ବିଷୟ ତୁରନ୍ତ ସେମାନଙ୍କୁ ଜଣାଇ ଦିଅ । କାରଣ ମୋର ବିଳମ୍ବ ଓ ଅନୁପସ୍ଥିତି ଯୋଗୁଁ ସେମାନେ ମୋତେ ଦାୟିତ୍ୱହୀନ ବ୍ୟକ୍ତି ବୋଲି ଭାବି ନେଇ ପାରନ୍ତି । ଏହା ନ ହେଲେ, ମୁଁ କବର ଭିତରେ ମଧ୍ୟ ଶାନ୍ତିରେ ଶୋଇ ପାରିବ ନାହିଁ !" ବନ୍ଧୁ ଷ୍ଟାରକେନଫଷ୍ଟ ତାକୁ ଯଥା ଶକ୍ତି ଆଶ୍ୱାସନା ଦେଇ କହିଲା—"ତୁମେ ଶାନ୍ତ ହୁଅ । ମୁଁ ନିଶ୍ଚୟ ତୁମର ଆଦେଶ ପାଳନ କରିବି ।" ସହସା କାଉଣ୍ଟର ଶେଷ ନିଶ୍ୱାସ ନିର୍ଗତ ହେଲା ଏବଂ ତାର ସବୁ ଆଶା, ଉଦ୍‌ବେଗ ଓ ବାସନାର ଅବସାନ ଘଟିଲା ।

ବନ୍ଧୁର ମୃତ ଦେହକୁ କବର ଦେବାର ବ୍ୟବସ୍ଥା କରି ସାରି ଷ୍ଟାରକେନଫଷ୍ଟ ତାର ଅନୁରୋଧ ପାଳନ ନିମନ୍ତେ ସଚେଷ୍ଟ ହୋଇ ପଡ଼ିଲା ।

ଏଣେ ରାତି ହୋଇଗଲା ! କିନ୍ତୁ ପ୍ରଧାନ ଅତିଥିର ଦେଖା ମିଳିଲା ନାହିଁ । ବ୍ୟାରନ ନିରାଶ ହୋଇ ଗମ୍ବୁଜରୁ ଓହ୍ଲାଇ ଆସିଲେ ଏବଂ ବାଧ୍ୟ ହୋଇ ପ୍ରଧାନ ଅତିଥିର ଅନୁପସ୍ଥିତି ସତ୍ତ୍ୱେ ଭୋଜି ପାଇଁ ଆଦେଶ ଦେଲେ । ସମସ୍ତେ ଆସି ଟେବୁଲରେ ବସିଗଲେ ଏବଂ

ଖାଦ୍ୟ ସାମଗ୍ରୀ ଲାଗିଲା । ଏତିକି ବେଳେ ପ୍ରାସାଦର ଫାଟକ ବାହାରେ ଗୋଟିଏ ଶିଙ୍ଗା ବାଜିଲା । ଏହା ଶୁଣିବା ମାତ୍ରେ ବ୍ୟାରନଙ୍କର ନିରାନନ୍ଦ ମୁଖ ସହସା ଉଜ୍ଜ୍ୱଳ ହୋଇଗଲା ଏବଂ ଭାବୀ ଜାମାତାଙ୍କୁ ଅଭ୍ୟର୍ଥନା କରିବା ପାଇଁ ସେ ଦ୍ରୁତ ପଦରେ ଫାଟକ ଆଡ଼କୁ ଧାଇଁଗଲେ ।

ସେ ଅନତି ବିଳମ୍ବରେ ଦେଖି ପାରିଲେ, ପ୍ରାସାଦର ପରିଖାର ଅପର ପାର୍ଶ୍ୱରେ ଗୋଟିଏ କଳା ଘୋଡ଼ା ଉପରେ ଚଢ଼ି ଜଣେ ଯୁବକ ଠିଆ ହୋଇଛନ୍ତି । ତତ୍‌କ୍ଷଣାତ୍ ସେ ଉଲ୍ଲସିତ ଚିତ୍ତରେ ସେତୁ ପକାଇ ଦେବା ପାଇଁ ପ୍ରହରୀଙ୍କୁ ଆଦେଶ ଦେଲେ । ସେତୁ ଅବନମିତ ହୁଅନ୍ତେ, ଯୁବକ ମୁହୂର୍ତ୍ତକ ଭିତରେ ତାହା ଅତିକ୍ରମ କରି ଫାଟକ ଆଗରେ ଆସି ଠିଆ ହୋଇଗଲେ । ସେନ୍ବ ପାର୍ଶ୍ୱକାମ୍ୟ ବୀର ପୁଙ୍ଗବଙ୍କୁ ଏଭି ମହତ୍ ଉତ୍ସବରେ ଅନାଡ଼ମ୍ବର ବେଶରେ ଆସିବାର ଦେଖି, ସେ ଦୁଃଖିତ ହେଲେ ଏବଂ ପର ମୁହୂର୍ତ୍ତରେ ଏହାକୁ ଏକ ଯୁବକ ସୁଲଭ ଚପଳତା ମନେ କରି ନିଜକୁ ସାନ୍ତ୍ୱନା ଦେଲେ ।

ଘୋଡ଼ାରୁ ଓହ୍ଲାଇ ପଡ଼ି, ଅପରିଚିତ ଯୁବକଟି ବ୍ୟାରନଙ୍କୁ ଅଭିବାଦନ କଲେ ଏବଂ କହିଲେ—"ଏପରି ଏକ ଅସମୟରେ ଆସି ପହଞ୍ଚିବା ଯୋଗୁଁ ମୁଁ ଆନ୍ତରିକ ଦୁଃଖିତ ।"

ବ୍ୟାରନ ଯୁବକଟିଙ୍କୁ ଆଉ କିଛି କଥା କହିବାକୁ ଆଉ ସୁଯୋଗ ନ ଦେଇ କହିଲେ—"ଅସମୟ ! ଦୁଃଖିତ ! ତୁମେ ଜାଣ ନାହିଁ କାରଣ, ତୁମ ପାଇଁ ଆମେ କିପରି ମର୍ମାନ୍ତିକ ଯନ୍ତ୍ରଣାରେ ଛଟପଟ ହେଉଥିଲୁ । ତୁମେ ଆସି ଯିବାରୁ ଆମ ମନ ଭିତରୁ ଗୋଟାଏ ପାଷାଣର ବୋଝ ଖସିଗଲା । ତୁମେ ସେ କଥା ବୁଝି ପାରିବ ନାହିଁ । ଏକମାତ୍ର ଭଗବାନଙ୍କୁ ହିଁ ତାହା ଗୋଚର । ଚାଲ, ଭିତରକୁ

ଗଲା।” ଯୁବକ ଥରେ ଦୁଇ ଥର ତା କଥା କହିଦେବା ପାଇଁ ଚେଷ୍ଟା କଲା। କିନ୍ତୁ ସେ ତାହା ଉଚ୍ଚାରଣ କରୁ ନ କରୁଣୁ, ବ୍ୟାରନ ବ୍ୟସ୍ତ ହୋଇ ତାକୁ କୌଣସି କଥା କହିବାକୁ ସୁଯୋଗ ଦେଲେ ନାହିଁ ଏବଂ ତାର ହାତ ଧରି ତାକୁ ଭୋଜନ କକ୍ଷକୁ ନେଇଗଲେ। ନିମନ୍ତ୍ରିତ ଅତିଥିମାନେ ତାକୁ ଦେଖି ଉଚ୍ଚ ସ୍ୱରରେ ଆନନ୍ଦ ଧ୍ୱନି କରିବାକୁ ଲାଗିଲେ।

ବ୍ୟାରନ ସମାଗତ ମହିଳାମାନଙ୍କ ସହିତ ସଂକ୍ଷେପରେ ଯୁବକର ପରିଚୟ କରାଇଦେଲେ ଏବଂ ନିଜ କନ୍ୟା ଆଡ଼କୁ ଚାହିଁ ତାକୁ କହିଲେ—“ଭଗବାନଙ୍କୁ ଅଶେଷ ଧନ୍ୟବାଦ। ଯାହା ହେଉ, ତୁମେ ଆସିଲ ବାଟରେ ନିଶ୍ଚୟ ତୁମର କୌଣସି ବିପଦ ଘଟିଥିଲା। ଭୋଜନ ପରେ ଆମେ ସେହି ବିଷୟ ଶୁଣିବୁ। ଚାଲ, ଭୋଜନ କରିବ।”

ସ୍ତ୍ରୀ ଲୋକମାନେ ସୁସଜ୍ଜିତା ଦେବୀ ପ୍ରତିମା ପରି କନ୍ୟା ପାଖରେ ବରକୁ ଆଣି ବସାଇ ଦେଲେ। ଭୋଜନରେ ବସିବା ପୂର୍ବରୁ ଯୁବକ ପୁଣି କିଛି କହିବାକୁ ଉପକ୍ରମ କରୁଥିଲା। କିନ୍ତୁ ସମସ୍ତେ ଏକ ସ୍ୱରରେ ତାକୁ ବାଧା ଦେଇ କହିଲେ—“ବର୍ତ୍ତମାନ କିଛି କଥା ନୁହେଁ। ଆଗେ ଆପଣ ଭୋଜନ କରି ଟିକିଏ ଶାନ୍ତ ହୁଅନ୍ତୁ। ତା ପରେ ଆମେ ଆଳାପ ଆଲୋଚନା କରିବା।”

ଷ୍ଟାରକେନଫଷ୍ଟ ନିଜର ବନ୍ଧୁ ମୁହଁରୁ ବ୍ୟାରନଙ୍କ କନ୍ୟା ସମ୍ବନ୍ଧରେ ଯେଉଁ ଅଜସ୍ର ପ୍ରଶଂସା ଶୁଣିଥିଲା, ନିଜ ଆଖିରେ କନ୍ୟାକୁ ଦେଖିବା ବେଳୁ ତାର ଦୃଢ଼ ଧାରଣା ହେଲା ଯେ ସେଥିରେ ତିଳେ ମାତ୍ର ବାହୁଲ୍ୟ ନାହିଁ। ପ୍ରକୃତରେ ଏପରି ଅପୂର୍ବ ସୁନ୍ଦରୀ, ସୁଶ୍ରୀ ବାଳିକା ସମଗ୍ର ଜର୍ମାନୀରେ ଅଦ୍ୱିତୀୟା, ଏଥିରେ କିଛି ସନ୍ଦେହ

ରହିଲା ନାହିଁ । ଯୁବକ ନମ୍ର ସ୍ୱରରେ ବ୍ୟାରନଙ୍କ ଝିଅ ସହିତ କଥାବାର୍ତ୍ତା କରିବାକୁ ଲାଗିଲା । କାରଣ ପ୍ରେମର ଭାଷା କଦାପି ଉଚ୍ଚ କଣ୍ଠରେ ଉଚ୍ଚାରିତ ହୁଏ ନାହିଁ ।

ଆନନ୍ଦ ହିଲ୍ଲୋଳ ଭିତରେ ଭୋଜି ଚାଲିଲା । ଅତିଥିମାନେ ପରମ ଆନନ୍ଦରେ ନାନା ପ୍ରକାର ସୁସ୍ୱାଦୁ ଖାଦ୍ୟ ଭୋଜନ କରିବାକୁ ଲାଗିଲେ ଏବଂ ବ୍ୟାରନ ଆନନ୍ଦାତିଶଯ୍ୟରେ ଅତି କୌଶଳରେ ତାଙ୍କର ଉତ୍କୃଷ୍ଟ ଯୁଦ୍ଧ କାହାଣୀଗୁଡ଼ିକ ଶୁଣାଇବାକୁ ଲାଗିଲେ ।

କିନ୍ତୁ ଏହି ଆନନ୍ଦ ମୁଖର ଉତ୍ସବ ଭିତରେ ଯୁବକର ଗମ୍ଭୀର ଓ ବିଷଣ୍ଣ ଭାବ ଦେଖି, ନିମନ୍ତ୍ରିତ ଅତିଥିମାନେ ଅତିଶୟ ବିସ୍ମିତ ହୋଇଗଲେ । କାରଣ ପ୍ରକୃତ ସମୟରେ ଯାହାର ବିବାହ ହେବ ସେହି ବ୍ୟକ୍ତି କାହିଁକି ଏପରି ବିମର୍ଷ ଦିଶୁଛି, କେହି ତାହା ଅନୁମାନ କରି ପାରିଲେ ନାହିଁ । ସୁତରାଂ ସେମାନେ ନିମ୍ନ ସ୍ୱରରେ ପରସ୍ପରକୁ ତାର କାରଣ ଅନୁସନ୍ଧାନ ପାଇଁ ପରାମର୍ଶ ଦେବାକୁ ଲାଗିଲେ ।

କିନ୍ତୁ ଯୁବକର ଯେ ସେଥି ପ୍ରତି ତିଳେ ହେଲେ ଧ୍ୟାନ ଅଛି, ତାହା ତାର ନିର୍ବିକାର ଭାବ ଦେଖି କେହି ବୁଝି ପାରିଲେ ନାହିଁ । ସେତେବେଳେ ଜର୍ମାନୀ ଦେଶର ସାମାଜିକ ନିୟମାନୁସାରେ ଭୋଜନ ସମୟରେ ଗୃହକର୍ତ୍ତାଙ୍କୁ ନାନା ବିଧ ରହସ୍ୟମୟ କାହାଣୀ ବର୍ଣ୍ଣନା କରି ଅତିଥିମାନଙ୍କର ମନୋରଞ୍ଜନ କରିବାକୁ ହେଉଥିଲା । ବିଶେଷତଃ, ଅଧିକାଂଶ କ୍ଷେତ୍ରରେ ଭୂତ ପ୍ରେତ ପ୍ରଭୃତିଙ୍କର ଗପ ପ୍ରଚଳନ ଥିଲା । ସେହି ସମୟରେ ଜର୍ମାନୀରେ ଭୂତର ଉପଦ୍ରବ ଓ ଭୂତ ଉପରେ ବିଶ୍ୱାସ ସମସ୍ତଙ୍କର ଏପରି ବିଶେଷ ଭାବରେ ସମାନ ଥିଲା ଯେ ସକଳ ଶ୍ରେଣୀର ଲୋକଙ୍କର ଧାରଣା ଥିଲା, ପ୍ରତ୍ୟେକ

ପୁରାତନ ପ୍ରାସାଦରେ ଭୂତ ଅଛି । ଯାହା ହେଉ, ବର୍ତ୍ତମାନ କ୍ଷେତ୍ରରେ ବ୍ୟାରନ ଖୁବ୍ ସୁନ୍ଦର ଭାବରେ ନାନା ପ୍ରକାର ଭୂତ ଗପ କହି ଅତିଥି ଅଭ୍ୟାଗତମାନଙ୍କ ମନୋରଞ୍ଜନ କରିବାକୁ ଲାଗିଲେ । କ୍ରମେ କ୍ରମେ ସମସ୍ତଙ୍କ ମୁହଁରୁ ହସ ଉଭାଇଗଲା ଏବଂ ବିଷାଦର ରେଖା ଦିଶିଲା । ସ୍ତ୍ରୀ ଲୋକମାନେ ଭୟଭୀତ ହୋଇଗଲେ । ଗୋଟିଏ ଗପ ଶୁଣି ଶ୍ରୋତାମାନଙ୍କର ରୋମ ଟାଙ୍କୁରି ଉଠିଲା । ସେଟା ଗୋଟାଏ ଭୟଙ୍କର ରୋମାଞ୍ଚକର କାହାଣୀ ହେଲେ ସୁଦ୍ଧା ସେଥିରେ ସତ୍ୟତା ଥିଲା—ଗୋଟିଏ ଭୂତ ଅଶ୍ୱାରୋହୀ ସୁନ୍ଦରୀ ଲେଓନରାକୁ ଅପହରଣ କରି ନେଇ ଯାଇଥିଲା । ଏ ବିଷୟରେ କେତେ ଚମତ୍କାର କବିତା ରଚିତ ହୋଇଛି ଏବଂ ଲୋକେ ଏହି ଘଟଣାଟିକୁ ମଧ୍ୟ ବିଶ୍ୱାସ କରନ୍ତି ।

ଶେଷରେ ଭୋଜନ ପର୍ବ ସମାପ୍ତ ହେଲା । ସମସ୍ତଙ୍କ ସହିତ ଯୁବକ ମଧ୍ୟ ଦୀର୍ଘଶ୍ୱାସ ଛାଡ଼ି ଆସନ ତ୍ୟାଗ କରି ଉଠି ପଡ଼ିଲା । ସେ ବିଦାୟ ସୂଚକ ଅଭିବାଦନ ଜଣାଇବାରୁ, ସମବେତ ଅତିଥି-ମାନେ ବିସ୍ମୟରେ ଅଭିଭୂତ ହୋଇଗଲେ । ବ୍ୟାରନଙ୍କ ମସ୍ତକରେ ବଜ୍ର ପଡ଼ିଲା ।

ସେ କହିଲେ—"କଥା କଣ ? ରାତି ଅଧରେ କାହିଁକି ତୁମେ ଏହି ପ୍ରାସାଦ ଛାଡ଼ି ଚାଲି ଯିବାକୁ ବସିଛ ? ତୁମର କିଛି ଅସୁବିଧା ହେଲା ? ତୁମ ପାଇଁ ତ ସବୁ ବନ୍ଦୋବସ୍ତ କରା ହୋଇଛି । ତୁମର ବିଶ୍ରାମ ପାଇଁ ଗୋଟିଏ ବୃହତ୍ ସୁସଜ୍ଜିତ କକ୍ଷ ନିର୍ଦ୍ଦିଷ୍ଟ କରା ଯାଇଛି । ଯାଅ, ବିଶ୍ରାମ କର ।"

ଆଗନ୍ତୁକ ଯୁବକ ବିଷଣ୍ଣ ବଦନରେ ରହସ୍ୟମୟ ଭାବରେ ମଥା ହଲାଇ କହିଲା—"ନା, ତାହା ହୋଇ ପାରିବ ନାହିଁ । ଆଜି ରାତିରେ ମୋ ମଥା ଅନ୍ୟ ଗୋଟିଏ ଶଯ୍ୟାରେ ଆଶ୍ରୟ ନେବ ।"

ଯୁବକର ଉତ୍ତର ଶୁଣି, ବ୍ୟାରନ ଖୁବ୍‌ବ୍ୟସ୍ତ ହୋଇଗଲେ । ଯୁବକକୁ ରହିବା ପାଇଁ ସେ ବାରମ୍ବାର ଅନୁରୋଧ ଜଣାଇଲେ । କିନ୍ତୁ ଯୁବକ ପ୍ରତି ଥର ନୀରବରେ ମଥା ହଲାଇ ନିଜର ଅସ୍ୱୀକୃତି ଜଣାଇଲା । କନ୍ୟାର ସହଚରୀମାନେ ନିର୍ବାକ ହୋଇ ବସି ପଡ଼ିଲେ ଏବଂ କନ୍ୟାର ଲଜ୍ଜାବନତ ନୟନ ଯୁଗଳରୁ ଲୋତକ ଧାର ବହିବାକୁ ଲାଗିଲା ।

ବ୍ୟାରନ ଯୁବକ ସହିତ ପ୍ରାସାଦର ଅନ୍ଦର ମହଲରୁ ବାହାର ଆସିଲେ । କଳା ଘୋଡ଼ାଟି ଠିଆ ହୋଇ ଭୂଇଁ ଖୁଣ୍ଟୁଥିଲା । ଯୁବକ ଅଦ୍ଭୁତ ଖୁବ ବ୍ୟଞ୍ଜକ କଣ୍ଠରେ ବ୍ୟାରନଙ୍କୁ ଅନାଇ କହିଲା—"ବର୍ତ୍ତମାନ ଆମେ ନିଭୃତକୁ ଆସିଗଲେ । ମୁଁ ଆପଣଙ୍କ ନିକଟରେ ମୋ ପ୍ରସ୍ଥାନର କାରଣ ବର୍ଣ୍ଣନା କରିବ । ଆଜି ମୋତେ ଏକ ଗୁରୁତ୍ୱ ଓ ଅନିବାର୍ଯ୍ୟ କାର୍ଯ୍ୟରେ ଯୋଗଦାନ କରିବାକୁ ହେବ ।"

ବ୍ୟାରନ କହିଲେ—"ବେଶ୍ ତ, ସେଥିପାଇଁ ନିଜର ଯିବା କି ଦରକାର ? ଆଉ କାହାକୁ ପଠାଇ ଦେଲେ କଣ ଚଳିବ ନାହିଁ ?"

"ନା, ଆଉ କାହାକୁ ପଠାଇଲେ ହେବ ନାହିଁ । ମୋତେ ନିଜେ ଯିବାକୁ ପଡ଼ିବ । ମୋତେ ଏକ୍ଷଣି ଉର୍ଜବାର୍ଗ ଗୀର୍ଜାକୁ ନିଶ୍ଚୟ ଯିବାକୁ ହେବ ।"

ବ୍ୟାରନ ଆଶାର ଏକ କ୍ଷୀଣ ଆଲୋକ ରେଖା ଦେଖି ପାରି କହିଲେ—"ଓଃ, କାଲି ପ୍ରଭାତ ପୂର୍ବରୁ ତ ନୁହେଁ । କାଲି ତୁମେ ମୋର କନ୍ୟାକୁ ଧରି ସେଠାକୁ ଚାଲିଯିବ ।"

ଆଗନ୍ତୁକ ଯୁବକ ଅଧିକ ଗମ୍ଭୀର ସ୍ୱରରେ କହିଲା –"ନା ! ନା ! କୌଣସି କନ୍ୟା ସହିତ ମୋର କିଛି କାର୍ଯ୍ୟ ନାହିଁ—ମାଟିର

କାଠ ସବୁତ ! କାଠ ମାନେ ମୋତେ ଅପେକ୍ଷା କରି ବସି ରହିଛନ୍ତି ! ମୁଁ ଜଣେ ମୃତ ବ୍ୟକ୍ତି—ଦସ୍ୟୁମାନଙ୍କ ଦ୍ୱାରା ମୁଁ ନିହତ ହୋଇଛି—ମୋ ଦେହ ଉଚ୍ଚ ବାଗରେ ପଡ଼ି ରହିଛି—ମଧ୍ୟ ରାତ୍ରିରେ ମୋତେ କବର ଦିଆଯିବ—କବର ମୋତେ ଅପେକ୍ଷା କରି ରହିଛି—ମୁଁ ମୋ କର୍ତ୍ତବ୍ୟ ପାଳନ କରିବି !"

ତତ୍‌କ୍ଷଣାତ୍ ଏକ କୁଦାକେ ସେ ତା କଳା ଘୋଡ଼ାର ପିଠିରେ ଚଢ଼ିଗଲା ଏବଂ ସେତୁ ଉପର ଦେଇ ମୁହୂର୍ତ୍ତକ ଭିତରେ ରାତ୍ରିର ଅନ୍ଧକାରରେ ଅଦୃଶ୍ୟ ହୋଇଗଲା ।

ବ୍ୟାରନ ଠକ ଠକ ଅତିଥିମାନଙ୍କ ନିକଟକୁ ଫେରି ଆସିଲେ ଏବଂ ଏହି ଅଦ୍‌ଭୁତ କାହାଣୀ ବର୍ଣ୍ଣନା କଲେ । ସେତେବେଳେ ସମଗ୍ର ଜର୍ମାନୀରେ ଭୂତର ଅସ୍ତିତ୍ୱ ବିଷୟରେ ଲୋକଙ୍କର ଏପରି ପ୍ରବଳ ବିଶ୍ୱାସ ଥିଲା ଯେ ବ୍ୟାରନଙ୍କ କଥା ଶୁଣି କେହି ତିଳେ ମାତ୍ର ଅବିଶ୍ୱାସ କଲେ ନାହିଁ ।

• କିନ୍ତୁ, ଯାହା ବା କିଛି ସନ୍ଦେହ ଥିଲା, ତା ପର ଦିନ ଯେତେବେଳେ କାଉଣ୍ଟର ମୃତ୍ୟୁ ଓ କବରର ସମ୍ବାଦ ନେଇ ତାର ଶରୀର-ରକ୍ଷୀମାନେ ପହଞ୍ଚିଗଲେ, ସେତେବେଳେ ଗତ ରାତ୍ରିର କାହାଣୀକୁ କେହି ଆଉ ଅବିଶ୍ୱାସ କରି ପାରିଲେ ନାହିଁ ।

ଏପରି ସର୍ବାଙ୍ଗ ସୁନ୍ଦର ପାତ୍ର ମୃତ୍ୟୁ ମୁଖରେ ପତିତ ହେଲା ଏବଂ ନିଜର ପ୍ରିୟ କନ୍ୟା ସ୍ୱାମୀ ହରାଇ ବୈଧବ୍ୟ ବରଣ କଲା । ଏହି ଦାରୁଣ ଶୋକରେ ଅଭିଭୂତ ହୋଇ ବ୍ୟାରନ ଶଯ୍ୟା ଗ୍ରହଣ କଲେ । କନ୍ୟାର ଶୋକର ମାତ୍ରା ଏତେ ପ୍ରବଳ ହେଲା ଯେ ସେ ଆହାର ନିଦ୍ରା ତ୍ୟାଗ କରି ଦିନ ରାତି ଖାଲି କାନ୍ଦିବାକୁ ଲାଗିଲା ।

ବୈଧବ୍ୟର ଦ୍ୱିତୀୟ ରାତ୍ରିରେ, ତାର ଶୟନ କକ୍ଷରେ ବ୍ୟାରନ ନିଜ କନ୍ୟାକୁ ଜଗି ଶୋଇବା ପାଇଁ ଜଣେ ଶିକ୍ଷୟିତ୍ରୀ

ନିଯୁକ୍ତ କଲେ । ଶିକ୍ଷୟିତ୍ରୀ ଢେର ବେଶୀ ଭୂତ ଗପ ଜାଣିଥିଲା । କନ୍ୟାକୁ ସାହସ ଓ ସାନ୍ତ୍ୱନା ଦେବା ପାଇଁ ସେ ଗୋଟିଏ ଲମ୍ବା ଭୂତ ଗପ ଶୁଣାଇବାକୁ ଲଗିଲା । ଗପ କହୁଁ କହୁଁ ମଝିରେ ଶିକ୍ଷୟିତ୍ରୀକୁ ନିଦ ଲାଗିଗଲା, ଆଉ ଗପଟି ବି ଅସମ୍ପୂର୍ଣ୍ଣ ରହିଗଲା । ଯେଉଁ କକ୍ଷରେ ବ୍ୟାରନଙ୍କ କନ୍ୟା ଶୋଇଥିଲା, ତାର ଆଗରେ ଗୋଟିଏ ଗ୍ରେଟ ବଗିଚ୍ଚ ଥିଲା । ବ୍ୟାରନ-କନ୍ୟା ମୁକ୍ତ ବାତାୟନ ବାଟେ ବିମୁଗ୍ଧ ଦୃଷ୍ଟିରେ ଜ୍ୟୋତ୍ସ୍ନାଲୋକ ଆଡ଼କୁ ଚାହିଁ ରହିଥିଲା । ପ୍ରାସାଦର ଘଣ୍ଟରେ ବାରଟା ବାଜିଲା । ତତ୍‌କ୍ଷଣାତ୍ ଗୋଟିଏ କୋମଳ ସଙ୍ଗୀତ ଧ୍ୱନି ବଗିଚ୍ଚ ଭିତରୁ ଭାସି ଆସିଲା । କନ୍ୟା ବ୍ୟସ୍ତ ଭାବରେ ଶଯ୍ୟାରୁ ଉଠି ପଡ଼ି ଦ୍ରୁତ ପଦରେ ବାତାୟନ ନିକଟକୁ ଚାଲି ଆସିଲା ଏବଂ ଦେଖିଲା ଗଛର ଛାଇରେ ଜଣେ ଦୀର୍ଘକାୟ ବ୍ୟକ୍ତି ଠିଆ ହୋଇଛି । ସେ ମଥା ଟେକି ଉପରକୁ ଚାହିଁବାରୁ, ଜ୍ୟୋତ୍ସ୍ନାର ଏକ କିରଣ ରେଖା ଆସି ତା ମୁହଁ ଉପରେ ପଡ଼ିଲା । ସ୍ୱର୍ଗ ଓ ମର୍ତ୍ତ୍ୟ ! ସେ ସ୍ପଷ୍ଟ ଭାବରେ ଦେଖିବାକୁ ପାଇଲା, ଭୂତ ବରଟି ଊର୍ଦ୍ଧ୍ୱ ମୁଖରେ ଠିଆ ହୋଇ ରହିଛି । ଏତିକି ବେଳେ ଏକ ପ୍ରାଣ-ଘାତୀ ଉଚ୍ଚ ଚିତ୍କାର ଧ୍ୱନି ତା କାନରେ ଆସି ବାଜିଲା । ତତ୍‌କ୍ଷଣାତ୍ ସେ ପଛକୁ ଫେରି ପଡିଲା ଏବଂ ଶିକ୍ଷୟିତ୍ରୀର ଜ୍ଞାନହୀନ ଦେହ ତାର ଦୁଇ ବାହୁ ଭିତରେ ଢଳି ପଡ଼ିଲା । ବଗିଚ୍ଚରେ ସଙ୍ଗୀତ ଧ୍ୱନି ଶୁଣି ଶିକ୍ଷୟିତ୍ରୀର ନିଦ ଭାଙ୍ଗି ଯାଇଥିଲା, ଧୀରେ ଧୀରେ ଆସି ସେ କନ୍ୟାର ପଛ ଆଡ଼େ ଠିଆ ହୋଇଗଲା ଏବଂ ଯେଉଁ ମୁହୂର୍ତ୍ତରେ ସେ ଗତ ରାତିରେ ସେହି ଯୁବକକୁ ପୁଣି ସେଠାରେ ଦେଖିବାକୁ ପାଇଲା, ତତ୍‌କ୍ଷଣାତ୍ ସେ ଭୟରେ ଆର୍ତ୍ତନାଦ କରି ଅଜ୍ଞାନ ହୋଇ-ଗଲା । କନ୍ୟା ପୁଣି ଚାହିଁ ଦେଖିଲା ବେଳକୁ ଭୂତ ଅଦୃଶ୍ୟ ହୋଇ ଗଲାଣି ।

ଶିକ୍ଷୟିତ୍ରୀର ଜ୍ଞାନ ହେବାରୁ ସେ ଏପରି ଭୀତ ହୋଇ ଯାଇଥିଲା ଯେ ପର ଦିନ ରୁକ୍ଷ୍ମୀ ନିକଟରେ ଶୋଇବା ପାଇଁ ସେ କୌଣସି ମତେ ରାଜି ହେଲା ନାହିଁ । କିନ୍ତୁ କନ୍ୟାର ମୁଖ ଦେଖି ଜଣାଗଲା, ସେ ଯେପରି ଟିକେ ମାତ୍ର ଭୀତ ବା ଚିନ୍ତାଗ୍ରସ୍ତ ହୋଇ ନାହିଁ । ବୋଧ ହେଲା, ଯୁବକର ଅପୂର୍ବ ସୁନ୍ଦର ଛାୟାମୟ ଦେହ ଦେଖି ସେ ଯେପରି ଅଧିକ ପ୍ରୀତ ହୋଇ ଯାଇଛି । ସେ ଶିକ୍ଷୟିତ୍ରୀଙ୍କୁ ପରାମର୍ଶ ଦେଲା, ସେ ଯେପରି ଗତ ରାତିର ଭୂତର ଛାୟା ମୂର୍ତ୍ତି କଥା କାହା ଆଗରେ ପ୍ରକାଶ କରି ନ ଦିଏ । ତାକୁ ବ୍ୟାରନ-କନ୍ୟା ନିକଟରେ ରାତିରେ ଶୋଇବାକୁ ହେବ ନାହିଁ, ଏହି ସର୍ତ୍ତରେ ସେ ରାଜି ହୋଇଗଲେ । ପରି ଦିନ ରାତିରେ କନ୍ୟା ନିର୍ଭୟରେ ଏକାକୀ ତା କକ୍ଷରେ ଶୟନ କଲା । ଏଣେ ଶିକ୍ଷୟିତ୍ରୀ କଥାଟା ପେଟରେ ଲୁଚାଇ ରଖିଲା । ସାତୋଟି ଦିନ ଏହିପରିଭାବରେ କଟିଗଲା ।

କିନ୍ତୁ ଦିନେ ସକାଳେ ଏକ ଭୟାବହ ସମ୍ବାଦ ପ୍ରକାଶିତ ହେଲା । ତରୁଣୀ ବ୍ୟାରନ-କନ୍ୟାର ଦେଖା ନାହିଁ । ତାର କକ୍ଷ ଶୂନ୍ୟ, ବାତାୟନ ଉନ୍ମୁକ୍ତ ଏବଂ ଦେଷୀ ଉଲ୍ଲାସିତ !

ବ୍ୟାରନ ଓ ତାଙ୍କର ଆତ୍ମୀୟ ସ୍ୱଜନଗଣ ତନ୍ନ ତନ୍ନ କରି ଚାରିଆଡ଼େ ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ କେଉଁଠି କନ୍ୟାର ସନ୍ଧାନ ମିଳିଲା ନାହିଁ । ସମସ୍ତଙ୍କର ଦୃଢ଼ ଧାରଣା ହେଲା, ଭୂତ ନିଶ୍ଚୟ ତାକୁ ଟେକି ନେଇ ଯାଇଛି ! ବ୍ୟାରନ ଶୋକାଭିଭୂତ ହୋଇଗଲେ ଏବଂ ପ୍ରାସାଦଟି ବିଷାଦର ଛାୟାରେ ମ୍ଳାନ ପଡ଼ିଗଲା ।

ଶୋକାତୁର ବ୍ୟାରନ ତାଙ୍କର ସମସ୍ତ କର୍ମଚାରୀଙ୍କୁ କନ୍ୟାର ସନ୍ଧାନ ପାଇଁ ଚାରିଆଡ଼କୁ ପଠାଇ ଦେଲେ । ପରିଖା ନିକଟରେ ହାତରେ ତରବାରି ଧରି ଠିଆ ହୋଇ କନ୍ୟାର ସନ୍ଧାନରେ

ବ୍ୟାରନ ନିଜେ ପିବାକୁ ବାହାରୁଛନ୍ତି, ଠିକ୍ ଏହି ସମୟରେ ଦୁଇଟି ଘୋଡ଼ାରେ ଚଢ଼ି ଜଣେ ସ୍ତ୍ରୀ ଓ ଜଣେ ପୁରୁଷକୁ ତାଙ୍କ ଆଡ଼କୁ ଆସୁଥିବାର ଦେଖି ପାରିଲେ । ସେମାନଙ୍କୁ ଦେଖି ବ୍ୟାରନ ଖୁବ ବ୍ୟସ୍ତ ହୋଇଗଲେ ଏବଂ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ମହିଳାଟି ଘୋଡ଼ାରୁ ଓହ୍ଲାଇ ପଡ଼ି, ବ୍ୟାରନଙ୍କ ପାଦ ତଳେ ପଡ଼ି-ଯାଇ କହିଲା—"ଗତ କାଲି ଆମେ ବିଭା ହୋଇଛୁ । ଆମକୁ କ୍ଷମା କରନ୍ତୁ !" ଏ ତ ତାଙ୍କ ନିଜର ଅପହୃତା କନ୍ୟା, ଆଉ ତାର ସାଥୀ ଜଣକ – ସେହି ଭୂତ ବର ! ବ୍ୟାରନ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପ୍ରଥମେ ନିଜ କନ୍ୟାକୁ ଓ ତାପରେ ଭୂତକୁ ଚାହିଁଲେ ଏବଂ ନିଜର ଦୃଷ୍ଟି ଶକ୍ତିକୁ ବିଶ୍ୱାସ କରି ପାରିଲେ ନାହିଁ ।

ରହସ୍ୟଟି ଅତି ଶୀଘ୍ର ଉଦ୍‌ଘାଟିତ ହେଲା । ଅଶ୍ୱାରୋହୀ ଯୁବକ ବର୍ଣ୍ଣନା କଲା, ସେ ନିଜେ ମୃତ କାଉଣ୍ଟର ବନ୍ଧୁ ହାରମନ ଭନ୍ ଷ୍ଟାରକେନଫଷ୍ଟ । ସେ ବନ୍ଧୁର ମୃତ୍ୟୁ ସମ୍ବାଦ ଜଣାଇବା ପାଇଁ ଦୁର୍ଗକୁ ଧାଇଁ ଆସି ଥିଲା, କିନ୍ତୁ ବ୍ୟାରନ ତାକୁ ତାହା କୌଣସି ମତେ କୁହାଇ ଦେଲେ ନାହିଁ । ଏଣେ କନ୍ୟାର ରୂପରେ ବିମୁଗ୍ଧ ହୋଇ, ତାକୁ ପାଇବା ପାଇଁ ସେ ଲାଳାୟିତ ହେଲା । ସେଥିପାଇଁ ବ୍ୟାରନଙ୍କ ଭୂତ ଗପକୁ ଖାପ ଖୁଆଇବା ଲାଗି ସେ ବଗିଚାକୁ ଆସି କନ୍ୟାର ଝରକା ଆଗରେ ଭୂତ ହୋଇ ଠିଆ ହେଲା, ତାକୁ ପାଗଳ କରିଦେଲା, ତାକୁ ଜୟ କଲା, ତାକୁ ନେଇ ପଳାଇଲା ଏବଂ ଗୋଟିଏ କଥାରେ, ରୂପସୀ ଯୁବତୀକୁ ବିଭା ହେଲା । ବାଧ୍ୟ ହୋଇ ତାକୁ ଏହି ଅଭିନୟ କରିବାକୁ ହୋଇଥିଲା, କାରଣ ସେ ପରିଷ୍କାର ଜାଣିଥିଲା ଯେ ବ୍ୟାରନ ଜଣେ ଶତ୍ରୁର ପୁଅ ସହିତ ନିଜ କନ୍ୟାକୁ ବିବାହ ଦେବେ ନାହିଁ ।

ଅନ୍ୟ କୌଣସି ପରିସ୍ଥିତିରେ ବ୍ୟାରନ କୋମଳ ହୋଇ ପଡ଼ ନ ଥାନ୍ତେ । କିନ୍ତୁ ନିଜର ପ୍ରିୟ ଆଦରଣୀୟ କନ୍ୟାକୁ ଫେରି ପାଇ, ସେ ଆନନ୍ଦରେ ଅଧୀର ହୋଇ ଯାଇଥିଲେ । କନ୍ୟାର ବର ଶତ୍ରୁବଂଶୀୟ ହେଲେ କଣ ହେବ, ହାୟ ହାୟ ଭଗବାନ, ସେ ତ ସତରେ ଭୂତ ନୁହେଁ ।

ଯାହା ହେଉ, ଏକମାତ୍ର ସନ୍ତାନକୁ ଜୀବିତ ଦେଖି, ବ୍ୟାରନ ପ୍ରଫୁଲ୍ଲ ଚିତ୍ତରେ ସବୁ ଅପରାଧ ମାର୍ଜନା କଲେ । ପୁନରାୟ ଆନନ୍ଦ ହିଲ୍ଲୋଳରେ ପ୍ରାସାଦ ମୁଖରିତ ହୋଇ ଉଠିଲା ।

— ଓ୍ୱାଶିଙ୍ଗଟନ ଆର୍‌ଭିଙ୍ଗ

# ପ୍ରିୟ ନାମ

ଜେନୋବାକୁ ମୁଁ ଦେଖିଛି । ତାକୁ କେନ୍ଦ୍ର କରି କେତେ ଥର ଗପ ଲେଖିଛି । ପ୍ରଥମେ ଯେତେବେଳେ ଲେଖେଁ, ନୂଆ ଲେଖକ ତ, ବେଶ୍ ରସରସିଆ ପ୍ରେମ ଗପ ରଚନା କରିଥିଲି । ଶେଷ ଥର ଯେତେବେଳେ ଲେଖିଲି, ଏମିତି ମାମୁଲି ଧରଣର ଗପ—ସଚରାଚର ଯାହା ଘଟେ ସେୟା । କିନ୍ତୁ ଦୁଇ ଥର ଯାକ ତାକୁ ମାରି ପକାଇଥିଲି, ଯଦିଓ ଆଜି ସେ ସଶରୀରରେ ବଞ୍ଚି ରହିଛି ।

ଛାଡ଼ ସେ କଥା ।

ଗୋଟାଏ ଅଦୃଶ୍ୟ ଶକ୍ତିକୁ ମୁଁ ବିଶ୍ୱାସ କରେ, ଅନୁଭବ କରେ । ଜୀବନ ସାରା ବହୁ ଲୋକଙ୍କ ସହିତ ସାକ୍ଷାତ୍ ହୁଏ, ପରିଚୟ ହୁଏ । କିନ୍ତୁ କେତେ ଜଣ ମାତ୍ର ମନ ଭିତରେ ଏପରି ଭାବରେ ଦାଗ କାଟି ଯାଆନ୍ତି ଯେ ସେମାନଙ୍କୁ ପାଶୋରି ହୁଏ ନାହିଁ । ସବୁ ସମୟରେ ଓ ସବୁ କଥାରେ ମନେ ପଡ଼େ, ସେମାନେ ଯେମିତି ଅତି ପରିଚିତ ଆପଣାର ଲୋକ !

ଜେନୋବା କ୍ଷେତ୍ରରେ ଠିକ୍ ସେଇକଥା କୁହାଯାଇ ପାରେ । ମାତ୍ର କେତେ ଥର ତାକୁ ଦେଖିଥିଲି—ଆଜି ଯାଏ ସେ ମୋ ଆଖି ଆଗରେ ଭସି ଯାଉଛି, ଠିକ୍ ସେଇ ରୂପରେ । ପ୍ରଥମେ ତାକୁ ଦେଖିଥିଲି ମୋର ଶୈଶବରେ ।

ପାହାଡ଼ୀ ମୁଲକ । ବନ୍ଧୁର ପର୍ବତମାଳା । ସୁଆଁ ପୋକ ଭଳି ସର୍ବାଙ୍ଗରେ ଗଛର ଚେର ଘୋଡ଼ାଇ ନିଦ୍ରାରେ ଅଚେତନ ହୋଇ ସ୍ୱପ୍ନ ଦେଖେ । ଜହ୍ନ ରାତିରେ ସ୍ୱଚ୍ଛ ଆଲୁଅରେ ଅଫିମିଆଙ୍କ ପରି ବସି ରହି ଢୁଳାଏ । ମଝିରେ ଗୋଟିଏ ନାଳି ରାସ୍ତା ତା ଉପରେ ଦେଇ ଗ୍ରେଟ ଦୁଷ୍ଟ ଝିଅଟି ଭଳି ଅଙ୍କାବଙ୍କା ହୋଇ ଉଠି ପଡ଼ି ଧାଇଁ ଭୁଲି ଯାଇଛି । ମୋତେ ବଡ଼ ଭଲ ଲାଗେ । ସ୍ୱପ୍ନ ଦେଖା ପାହାଡ଼, ଆକାଶ-ଗୁମ୍ଫା, ଆଲୋକ-ଦେଶର ଯାତ୍ରୀ ସେମାନେ । ମଣିଷକୁ କଣ କରି ଦଅନ୍ତି — ସ୍ୱପ୍ନାଳୁ କରି ପକାନ୍ତି !

ବାବାଙ୍କ ସାଙ୍ଗରେ ଗାଡ଼ିର ପଛରେ ଚୁପ୍ ହୋଇ ବସି ଚାରିଆଡ଼କୁ ଅନାଇଁ ଅନାଇଁ ଯାଉଥିଲି । ମାଷ୍ଟ ରାସ୍ତାର ପ୍ରତି ମୋଡ଼ରେ ଆରମ୍ଭ ହୋଇଛି ନୂଆ ରାଜ୍ୟର ସୀମା ! ରାସ୍ତା ଉପରେ କୋକଶିଆଳ ଓ ଗଧିଆ ଛୁଆଗୁଡ଼ାକ ଖିନ୍ନ ଚାହାଣୀରେ ଚାରିଆଡ଼କୁ ଅନାଇଁ ପୁଣି ବଣ ଭିତରେ ଅଦୃଶ୍ୟ ହୋଇ ଯାଆନ୍ତି । ଦୂରରୁ ଝିଁଟିଣାର ଶବ୍ଦ ଆସି କାନରେ ବାଜେ, ବଣ ଭିତରେ ଯେମିତି ନାଚର ଆସର ବସିଛି । ଦୁଇଟା ଗାଦୁକା ଠେକୁଆ ଆମ ଆଡ଼କୁ ଚାହିଁ ରହି ଥାଆନ୍ତି । ଜୁଣ୍ଡୁରା ମୂଷାଟା ଅଶୀ ବର୍ଷର ଜୀର୍ଣ୍ଣ ବୁଢ଼ାର ଚାହାଣୀରେ ଭଙ୍ଗଙ୍କ ପରି ଅନାଇ ରହିଥାଏ ।

"ବାବା, ସେମାନେ ପଳାଉ ନାହାନ୍ତି କାହିଁକି ?"

ମୋ କଥାରେ ବାବା ହସି ଦଅନ୍ତି !—"ଏଠାକୁ କେହି ସେମାନଙ୍କୁ ମାରି ପକାଇବା ପାଇଁ ଆସନ୍ତି ନାହିଁ । ଜେନୋବା ରହିଛି ଯେ ।"

ଜେନୋବା ! ବଣର ପଶୁ ପକ୍ଷୀମାନେ ଯାହା ଯୋଗୁଁ ଡର ଭୟ ମନରୁ ପୋଛି ଦେଇଛନ୍ତି, ମୁଁ ଜାଣେ ନାହିଁ ସେ ଦେବଦୂତ

ନ ପଶୁ, ନ ଆଉ କିଛି । ତାର ବିଷୟରେ ଗୋଟାଏ ବିଚିତ୍ର କଳ୍ପନା ମନ ଭିତରେ ଜାଗି ଉଠେ ।

ଚମତ୍କାର ! ପାହାଡ଼ର ମଥା ଉପରେ ବେଶୀ କିଛି ଗଛପତ୍ର ନାହିଁ । ତଳେ ପାଖ ଆଖରେ ଧାଡ଼ି ଧାଡ଼ି ପର୍ବତମାଳା—ମାଉଣ୍ଟ ନଥର କପିଶ ପର୍ବତମାଳା, ସାନ୍ନୁ ଦେଶରେ ଆମର ଗ୍ରେଣ୍ଟ ଗାଁ ଖଣ୍ଡିକ—ଅନେକ ତଳେ ଅବଶ୍ୟ ! ସ୍ୱପ୍ନ ବି ଏତେ ମଧୁର ନୁହେଁ । ଇଚ୍ଛା ହୁଏ ଦୁଇ ହାତରେ ସୁନେଲି ରୌଦ୍ରକୁ ମୁଠା ମୁଠା କରି ନିର୍ଜନ ଉପତ୍ୟକାରେ ବାଣ୍ଟି ଦିଅନ୍ତି, ଶିରରେ ଶିରରେ ଯେପରି କେମିତିକା ବନ୍ଧନହୀନ ମୁକ୍ତିର ଆନନ୍ଦ !

ବାବାଙ୍କ ଡାକରେ ମୋର ଚମକ ଭାଙ୍ଗି ଯାଏ । ତେଣେ କେତୋଟି ଘର, ସାମନାରେ ବଗିଚାଟା ଗଛରେ ପତ୍ରପୂର୍ଣ୍ଣ—ଘନ ଶ୍ୟାମଳ ଉଦ୍ୟାନ । ଗାଡ଼ିର ଶବ୍ଦ ଶୁଣି ଦୁଇ ତିନିଟା ବଜୁଆ କୁକୁର ଚିତ୍କାର କରି କରି ବାହାରକୁ ଧାଇଁ ଆସନ୍ତି । ସେମାନଙ୍କ ପଛରେ ଗୋଟିଏ ମୂର୍ତ୍ତି ଘରୁ ବାହାରି ଆସେ । ପେଣ୍ଟ ପିନ୍ଧିଥାଏ—ଦୂରରୁ ଠିକ୍ ବୁଝି ହୁଏ ନାହିଁ । ଆଉରି ପାଖକୁ ଆସିଲେ ମଥାର ଲମ୍ବ ବେଣୀଟା ଦେଖି ଠଉରାଇ ପାରେ—ସତରେ ସ୍ତ୍ରୀ ଲୋକ ତ ! ସେ ବାବାଙ୍କୁ ଦେଖି ମୁଖରେ ହସ ଖେଳାଇ ଅଭ୍ୟର୍ଥନା ଜଣାଏ—"ଅନେକ ଦିନ ହେଲା ଆସି ନାହଁ ଯେ ! ଏଇଟି କିଏ—ପୁଅ ?"

"ହଁ, ମୋର ମଝିଆଁ ପୁଅ ।"

ଭଲ କରି ତାକୁ ଦେଖେଁ । ବାଳଗୁଡ଼ିକ ସବୁ ପାଚି ଯାଇଛି । ମୁହଁରେ ଓ ଆଖିରେ ବୟସର କଳା ଗାର । ଦୁଇଟି କଳା ଆଖି-ଡୋଳାର ଶାଣିତ, ତୀବ୍ର ଚାହାଣୀରେ ସେ ମୋତେ ବାରମ୍ବାର ନିରୀକ୍ଷଣ କରୁଥାଏ ।

"ପାରିବ ! ହଁ, ତୁମେ ଠିକ୍ ପାରିବ । ସେମାନଙ୍କ କଥା ତୁମେ ବୁଝି ପାରିବ । ତୁମେ ଯେ ତାଙ୍କ ଦଳର ଜଣେ !"

ତାର ସ୍ବୃହାଣୀ ଓ ଅସଂଲଗ୍ନ କଥା ଶୁଣି ମୁଁ ଅବାକ୍ ହୋଇ-ଯାଏ । ଗଳା ପାଖରେ କଣ ହୋଇଯାଏ । ସ୍ବଭପ୍ନରେ ମୁଁ ଧୀରେ ଧୀରେ ଆଖି ବୁଜିଆଁ ଇ ଦଏ । କାନ୍ଧ ପକାଇ ଥାଏ, ଆଖି ଦୁଇଟି ଛଳ ଛଳ ହୋଇ ଆସେ, ନାକ ପାଖଟା ଆପେ ଆପେ ଟିକିଏ ଫୁଲିଯାଏ, ଓଠଟାକୁ ପ୍ରାଣ ପଣେ କାମୁଡ଼ି ରଖେ ।

ତାର କଣ୍ଠ ସ୍ବର କାନରେ ଆସି ବାଜେ—"ବ୍ୟାଡ଼, ଆଜି ହପହରେ ନ ଖାଇ ଯାଇ ପାରିବ ନାହିଁ । ଚାଲ, ଖାଇବା ଚାଲ ।"

ଚିତ୍କାର କରେ । କଳା ଗାଢ଼ କାଳା ବୁଲ୍ ଡଗ୍‌ଟା ଯେ ଅଜାଣତରେ କେତେବେଳେ ଆସି ମୋର ମୁହଁରେ ଲହ ଲହ ଜିଭଟା ବୁଲାଇ ଦେଲା ମୁଁ ଜାଣି ପାରିଲି ନାହିଁ । କେନୋଙ୍କା ତାକୁ ନିରସ୍ତ କରିଦିଏ—"ନା, ନା, କୌଣସି ଭୟ ନାହିଁ । ସେ କିଛି କହିବ ନାହିଁ ।"

କୁକୁରଟା ସତରେ କିଛି କରେ ନାହିଁ । ମୋ ସାଙ୍ଗରେ ବଗିଚା ଭିତରେ ଘୁରି ବୁଲେ । ବଗିଚା ସାରା ଫୁଲର ରାଜତ୍ବ । ନାମ-ନ-ଜାଣିଥିବା କେତେ ରକମର ଫୁଲ ।

ଭ୍ରମର-ପ୍ରଜାପତିର ମେଳା । ବଗିଚାର ଗୋଟାଏ କୋଣରେ ନାନା ଜାତିର ଗଛ । ପାଖ ଗୁହାଳରେ ଗାଈର ନୂଆ ବାଛୁରିଟା ବଙ୍କଙ୍କ ପରି ମୋ ଆଡ଼କୁ ଚାହିଁ ରହିଛି । କୁକୁରଟାର ତିରସ୍କାରରେ ଅତିଥିକୁ ସମ୍ମାନ ଦେଖାଇବା ପାଇଁ ସେ ଧୀରେ ଧୀରେ ଆଗେଇ ଆସେ । ତା ଦେହରେ ମୁଁ ହାତ ବୁଲାଇବାକୁ ଲାଗେ । ସେ ପଟର ପୋଖରିଟା ମୋତେ ସବୁଠୁଁ ବେଶୀ ଭଲ ଲାଗେ । ନିର୍ଜନ ଉପତ୍ୟକା

—ଜନ ବସତି ଠାରୁ ଅନେକ ଦୂର—ସମ୍ପୂର୍ଣ୍ଣ ଅନ୍ୟ ଏକ ଜଗତ୍ ! ସୌନ୍ଦର୍ଯ୍ୟର ବସତି ଏଠାରେ ।

କାଚ ପରି ସ୍ୱଚ୍ଛ ଜଳରେ ମାଛଗୁଡିକ ଖେଳି ବୁଲନ୍ତି । ହାତ ପାଖକୁ ଆସନ୍ତି । ବି ହାତରେ ନରମ କାଦୁଅ ମାଟି ଖୋଳୁଥାଏ, କାହିଁକି ଜାଣେନା—ଭଲ ଲାଗେ । ହଂସଗୁଡ଼ାକ ପାଖ ଆଖରେ ଅଜଣା ଭାଷାରେ କଣ କହି ବୁଲୁ ଥାଆନ୍ତି । ପାଖରେ ଠିଆ ହୋଇଥାଏ ବାଛୁରୀଟା, ମୋରି ପରି ନୂଆ ହୋଇ ସେ ପୃଥିବୀକୁ ଆସିଛି । କଳା ଆଖିରେ ବଣ-ପାହାଡ଼ର ସ୍ଥିର ଆଲୁଅ— ଖୁବ୍ ଭଲ ଲାଗେ ମୋତେ ! ଆଦର କରି ତା ପାଖକୁ ଆଗେଇ ଯାଏ । ପକ୍ଷୀଟା ଗଛରେ ବସିଥିଲା, ଉଡି ଆସି ତା ପିଠି ଉପରେ ଆଶ୍ରୟ ନେଲା ।

ସୁନ୍ଦର ପୃଥିବୀ ! ପକ୍ଷୀର ସଙ୍ଗୀତରେ ସ୍ୱପ୍ନ ଜାଗେ । ସୁନେଲି ଆଲୁଅରେ ରୂପେଲି ବୃନ୍ଦ ଝଲମଲ କରେ । ଫୁଲ-ଚେରୀଙ୍କର ହାଲୁକା ପାଦର ଗମନାଗମନ । ସେମାନଙ୍କ ଗୀତର ସ୍ୱର—ହଁ, ସେ ସ୍ୱର ସବୁତ ମୁଁ ପରିଚିତ, ଚିହ୍ନି ପାରୁଛି । ବସନ୍ତ ଏଠାରୁ କେବେ ହେଲେ ବିଦାୟ ନିଏ ନା—ଅନେକ ଦିନ ତଳେ ଏହି ପକ୍ଷୀର ଗୀତ ଶୁଣିଥିଲି—ଉପା ମେଘର ଶୀର୍ଣ୍ଣ ଭେଳାରେ ଚଢ଼ି ଯେଉଁ ଦିନ ଅଜଣା ରାଇଜକୁ ଯାତ୍ରା କରିଥିଲି ।

ପକ୍ଷୀ, ବାଛୁରୀ, ହଂସଗୁଡ଼ିକ—ସମସ୍ତଙ୍କ କଥା ଯେପରି କେମିତି ଗୁପି ଗୁପିକା ମୋର ମନେ ପଡ଼େ । ବାଛୁରୀଟା କହେ···

ହଠାତ୍ କାହାର ହସର ଶବ୍ଦରେ ଚମକି ପଡିଲି । ଦେଖିଲି, ମୋ ସାମନାରେ ଠିଆ ହୋଇ ଜେନୋବା ହସୁଛି । ଏଡ଼େ ସୁନ୍ଦର ହସ ମୁଁ ଆଉ ଦେଖି ନାହିଁ । ଗୋଟାଏ ଗୁଣ୍ଡୁଚି ମୂଷା ତା ଗାଉନ

ଉପରେ ବସି ମୋ ଆଡ଼କୁ ଅନାଇ ରହିଥିଲି । ମୋତେ ଦେଖାଇ ଜେନୋବା ତାକୁ କହିଲା—"ସେ ନୂଆ ନୁହେଁ, ତୁମରି ଦଳର !"

ପକ୍ଷୀଟି ଉଡ଼ି ଆସି ତା କାନ୍ଧ ଉପରେ ବସିଲା । ଅଜଣା ଭାଷାରେ ଜବାବ ଦେଲା । ବାଚ୍ଛୁଣ୍ଟା ଆଗେଇ ଆସିଲା ।

ବୁଢା ସେ ପଟରୁ ବାବାଙ୍କୁ ଆସିବାର ଦେଖି ପକ୍ଷୀଟା ଉଡ଼ିଗଲା । ଗୁଣ୍ଡୁଚି ମୂଷାଟା ବିରକ୍ତ ଭରା କଣ୍ଠରେ ବାବାଙ୍କ ଉଦ୍ଦେଶ୍ୟରେ ଯେମିତି କଣ କହି କହି ସାମନା ଗୁଳରେ ଯାଇ ବସିଲା । ଜେନୋବା ହସିଲା ।

ବେଳ ଗଡ଼ିଗଲା । ସେହି ଜାଗାଟିରୁ ଫେରିଆସିବାକୁ ମୋ ମନ ଆଦୌ ଡାକୁ ନ ଥିଲା । ଟେବୁଲ କଡରେ ବସି ବାରମ୍ବାର ବାହାରର ଉଦାର ଉନ୍ମୁକ୍ତ ଆକାଶ-ବନାନୀର ଡାକରେ ଜବାବ ନ ଦେଇ ରହି ପାରୁ ନ ଥିଲି, ଭୋଜନରେ ମନ ଲାଗୁ ନ ଥିଲା । ଏକଦମ ନିରାମିଷ—କୌଣସି ମାଂସ କି ଅଣ୍ଡାର ସଂସ୍ପର୍ଶ ନାହିଁ ।

ଫେରି ଆସିବା ବେଳେ ଜେନୋବାର କଥା ମନେ ପଡ଼େ —"ଫେରି ଆସିବ ତ ?"

"ନିଶ୍ଚୟ ।"

ଗାଡ଼ିରୁ ଏକ ଦୃଷ୍ଟିରେ ତା ଆଡ଼କୁ ଚାହିଁ ରହିଥିଲି । ମୋଡ଼ ଘୂରି ଗଲାରୁ ସେ ଆଉ ଦେଖାଗଲା ନାହିଁ ! ହଜିଗଲା ଜେନୋବାର ରାଜତ୍ୱ ।

କିନ୍ତୁ ମନରୁ ନୁହେଁ । ବାରମ୍ବାର ରହିବାକୁ ଇଚ୍ଛା ହୁଏ । ବାବାଙ୍କୁ ସେ କଥା କହି ପାରେ ନା । ଦିନେ ନିଜେ ଏକା ବାହାରି ପଡ଼ିଲି । ସେଠାକୁ ଯିବାକୁ ହେବ ! ଏଠାକାର ଠେକୁଆ, ଗୁଣ୍ଡୁଚି

ମୂଷା କୌଣସି ଜୀବଜନ୍ତୁ ଯେମିତି ସେମାନଙ୍କର ଅସଲ ସତ୍ତାର କୌଣସି ପରିଚୟ ଦିଅନ୍ତି ନାହିଁ ।

ସେହି କଳ୍ପଲୋକ ଅଭିମୁଖରେ ଆଗେଇ ଗଲି । ବେଳ ଗଡ଼ି ଆସୁଥାଏ । ସନ୍ଧ୍ୟା ଆଗରୁ ଘରକୁ ଫେରି ଆସିବାକୁ ହେବ । ତେଣୁ ଧାଇଁ ଯାଉଥିଲି—ସେହି ପାହାଡ଼ ବଣ ଯେମିତି ମୋତେ ହାତଠାରି ଡାକୁଥିଲା । ହଁ, ମନର ତନ୍ତ୍ରୀରେ ତାର ଘର-ଛଡ଼ା ବଂଶୀର ସ୍ୱର ଶୁଣି ପାରୁଥିଲି ।

ଛକ ଉପରେ ବାବାଙ୍କର ଗାଡ଼ିଟି ଦେଖି ମୋତେ ଅଟକି ଯିବାକୁ ହେଲା । ମୋର ଏତେ ପରିଶ୍ରମ ସବୁ ବ୍ୟର୍ଥ ହେଲା । ବାବାଙ୍କର ବାରମ୍ବାର ପ୍ରଶ୍ନର କୌଣସି ଉତ୍ତର ଦେଇ ପାରିଲି ନାହିଁ । ମୋ କାନ ଧରି ଟାଣି ନେଇ ଗାଡ଼ିରେ ବସାଇ ସେ ମୋତେ ପୁଣି ଘରକୁ ଫେରାଇ ଆଣିଲେ । ଘରୁ ବାହାରିବା ମୋ ପକ୍ଷରେ ନିଷେଧ ହୋଇଗଲା । ଏତେ ଚେଷ୍ଟା ସତ୍ତ୍ୱେ ବି ମୁଁ ସେଠାକୁ ଯିବାର ଲୋଭ ସମ୍ବରଣ କରି ପାରିଲି ନାହିଁ । ମାଆ ବାରମ୍ବାର ବାବାଙ୍କୁ କହୁଥିଲେ—"ପିଲାଟାକୁ ସେଠାକୁ ଯିବାକୁ ଦିଅ ନାହିଁ । ଜାଣେ ନା, ତୁମର ଜେନୋବା ପାଗଳୀ, କି ଡାହାଣୀ ।"

ଅନେକ ଦିନ ପରେ ତାକୁ ବଜାରରେ ଦେଖିଥିଲି । ଜିନିଷପତ୍ର ନେବାକୁ ଆସିଥିଲା । ବୟସ ହୋଇ ଯାଇ ଥିଲେ କଣ ହେବ, ତଥାପି ସେ ବେଶଭୂଷା ଠିକ୍ ହୋଇ କେଉଁଠାକୁ ବାହାରିବ ନାହିଁ । ଆଜି ଯାଏ ସେ ହାର ଓ କାନଫୁଲ ପିନ୍ଧେ । ଗୋଟିଏ ବଣୁଆ ଫୁଲ ସେ ହାତରେ ଧରିଥାଏ । କିଛି ନ ପାରିଲେ ବି ଥୋଡ଼ାଏ ଉଦ୍ଭୋତେଜନ୍ତୁ ନ ।

ତାପରେ ଆଉ ତାକୁ ଦେଖି ନାହିଁ । ନାନା ସ୍ଥାନରେ ତାର ଖୋଜ ଖବର ନେଇଛି । କିନ୍ତୁ ତା କଥା ପ୍ରାୟ କେହି ଜାଣନ୍ତି

ନାହିଁ । ତଥାପି ରୂପ କଥା ପରି ତାର ବଚିତ୍ର ଜୀବନର କାହାଣୀ ଯେତିକି ଆଗ୍ରହରେ ଶୁଣିଥିଲି, ସତରେ ତାହା ମୋତେ ଭଲ ଲାଗିଥିଲା । ଖୁବ୍ ଭଲ ଲାଗିଥିଲା ।

ତାହା ଆଜିକି ଅନେକ ଦିନ ତଳର କଥା । ଜେନୋବାର ମାଆ ସ୍ୱର୍ଣ୍ଣପୁର କନ୍ୟା । ତେଣୁ ହୁଏତ ତାର ଆଖିରେ କୌଣସି ସ୍ୱପ୍ନ ପୁରୀର ମାୟା ଥିଲା । କୌଣସି ଅଜଣା ଦେଶର ଲୋକ ସେ । ତାର ବାପ-ମାଆ ସମାଜର ବାହାରେ—ଜଗତର ବାହାରେ, ଆକାଶର ପାଖା ପାଖି ସେହି ପାହାଡ଼ ଆଢ଼େ ଘର ବାନ୍ଧିଥିଲେ । ତଥାପି ସେମାନେ ଭଗବାନଙ୍କ ହାତରୁ ଖସି ଯାଇ ପାରି ନ ଥିଲେ । ସେତେବେଳେ ଜେନୋବାର ବୟସ ତିନ ବର୍ଷ । ତାର ବାବା ସେତିକି ବେଳେ ବନବାସ ଆରମ୍ଭ କରିଛନ୍ତି । ସଞ୍ଚିତ ସଂସାର ଦୁହିଁଙ୍କର ସେବାରେ ଗଢ଼ି ଉଠୁଥିଲା । ଠିକ୍ ସେହି ସମୟରେ ଜେନୋବାର ମାଆଙ୍କୁ ଡାକ ଆସିଲା । କେଉଁ ଅଜଣା ଦେଶକୁ ସେ ଚାଲିଗଲେ ।

ତା ବାବାଙ୍କର ବିପଦ ଉପରେ ବିପଦ । ଏକା ସଂସାର ସମ୍ଭାଳିବେ ନା ଦୁଧଖିଆ ପିଲାଟିକୁ ମଣିଷ କରିବେ ! ଦିନ ଯାଏ —ଜେନୋବା ବଢ଼ିବାକୁ ଲାଗେ । ବନ ମର୍ମରର ଗୁଞ୍ଜନରେ ପ୍ରାଣରେ ଭରିଯାଏ । ଭାଷା ନଥିବା ସ୍ୱର ତା ମନର ତନ୍ତ୍ରୀରେ ଜବାବ ଦିଏ । ହାଲୁକା ହାଓ୍ୱାର ସ୍ପର୍ଶରେ ଦିନଗୁଡ଼ିକ ଗୋଟାକ ପରେ ଗୋଟାଏ ଗଡ଼ି ଚାଲେ ।

ନିର୍ଜନ ପୁରୀରେ ସେ ତା ବାବାଙ୍କ ନିକଟରେ ମଣିଷ ହୁଏ । ସେ ମଣିଷକୁ ମରିବାର ଦେଖି ନାହିଁ । କିଛି ଦିନ ଆଗରୁ ଜେନୋବାର ଠେକୁଆଟା ମରି ଯାଇଥିଲା । ସେ କଥାର ନିସ୍ପନ୍ଦ

ହୋଇ ଯାଇଥିଲା । ତା ଆଖିର ତାରା ଯେପରି କେମିତି ସ୍ୱଚ୍ଛତା ହରାଇ ଥିଲା । ସେ ପାଣ୍ଡୁର ହୋଇ ଯାଇଥିଲା ।

ଆଖି ଆଗରେ ତା ବାବାଙ୍କୁ ମରିବାର ଦେଖି ଜେନୋବାର ସ୍ମୃତି ପଥର ହୋଇ ଯାଇଥିଲା । ସେ ଅଞ୍ଚଳରେ କଲେରା ଲାଗିଥିଲା, ତାର କବଳ ସ୍ପର୍ଶ କେଉଁ ଅଦୃଶ୍ୟ ବାଟରେ ଆସି ତାର ବାବାଙ୍କୁ ଛୁଇଁଲା, ସେ ଜାଣି ପାରିଲା ନାହିଁ । ବାବାଙ୍କର ପ୍ରାଣହୀନ ଦେହ ଆଡ଼କୁ ସେ ଚାହିଁ ରହିଲା ।

ବନ୍ଧୁକର ଗୁଳି ଆସି ଯେତେବେଳେ ଦେହରେ ପ୍ରବେଶ କରେ, ସେତେବେଳେ କିଛି ଜଣା ପାଏ ନାହିଁ । କେତେ ସେକେଣ୍ଡ ପରେ ସାରା ଦେହରେ, ଶିରା ପ୍ରଶିରାରେ ଯନ୍ତ୍ରଣା ଆରମ୍ଭ ହୁଏ । ଜେନୋବା ବି ଏତେ ବଡ଼ ଆଘାତଟା କ୍ରମେ କ୍ରମେ ଅନୁଭବ କଲା ।

ପାଖ ଆଖରୁ —ପାହାଡ଼ ତଳେ ଥିବା ଗାଁ । ଗଣ୍ଡାରୁ ଲୋକ-ମାନେ ଆସି ଶବ ସତ୍କାର କଲେ । ସେମାନେ ତାକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ, ଏ ସ୍ଥାନଟି ଛାଡ଼ ଦେଇ ତଳକୁ ଯାଇ ରହିବାକୁ ଅନୁରୋଧ କଲେ । କିନ୍ତୁ ଜେନୋବା କୌଣସି ମତରେ ଏଠାରୁ ଯିବାକୁ ରାଜି ହେଲା ନାହିଁ । କେଉଁଠାକୁ ଯିବ ? ତେଣୁ ସେମାନେ ବାଧ୍ୟ ହୋଇ ଜେନୋବାର ଫଲବାଡ଼ି ସବୁ ହାଟରେ ବିକ୍ରି କରି ଦେବାକୁ ଲାଗିଲେ ।

କ୍ଷୁଦ୍ର ପ୍ରାନ୍ତରରେ କଳା ଯବ ଶିଶୁମାନଙ୍କ ହାତର ଇଙ୍ଗିତ । ଆକାଶସ୍ପର୍ଶୀ ପାହାଡ଼ ଦେହର ପଥଟା । ଆଡ଼କୁ ଚାହିଁ ନିତ ଆଶା ଓ ଆନନ୍ଦରେ ଜେନୋବାର ଅନ୍ତର ପୂରି ଯାଉଥିଲା—ଦୂରରୁ ଗୋଟାଏ ସ୍ୱର ଭାସି ଆସି ତାର କାନରେ ବାଜୁଥିଲା ନିତ ।

ହଁ, ନଜ ଆରନ ଆସେ । ଦୀର୍ଘ ଦେହ ଯୁବକ, ସର୍ବ ଅଙ୍ଗ ପ୍ରତ୍ୟଙ୍ଗରେ ଯୌବନର ଅପୂର୍ବ ଶ୍ରୀ । ମୁଖର ହସଟା ଯେମିତି ଏକ ଅମୂଲ୍ୟ ସମ୍ପଦ ।

ତା କଥାରେ ଜେନୋବା ହସି ପକାଏ ।

"ଦୁର୍ ! ମୁଁ ନାଚ ପାରିବ ନାହିଁ । ମୁଁ ନାଚ ଜାଣେ ନା । ମୋତେ ଲଜ ମାଡ଼ିବ ।"

"ଲଜ୍ଜା ! କାହାକୁ !" ଆରନ୍ ଅବାକ୍ ହୋଇଯାଏ । ନିର୍ଜନ ଉପତ୍ୟକାରେ ଆଜ କେହି ଜନ ମାନବ ନ ଥାଆନ୍ତି । ଖାଲି ସେହି ଦୁଇ ଜଣ । ତଥାପି ଜେନୋବା ପ୍ରଥମ ପୁରୁଷର ହାତର ସ୍ପର୍ଶ ପାଇ ଯେମିତି ଚମକି ପଡ଼େ । ତାର ସାରା ଶରୀରରେ ଗୋଟାଏ ଶିହରଣ ଖେଳିଯାଏ ! ଦୃଢ଼ ଆଲିଙ୍ଗନରୁ ସେ ନିଜକୁ ମୁକ୍ତ କରି-ବାକୁ ବସେ । ମାତ୍ର ପାରେ ନା । ପ୍ରାଣ ପଣେ ଚେଷ୍ଟା କରେ—

—ଶେଷକୁ ଆଞ୍ଚୁଡ଼ିବାକୁ ଲାଗେ—ଦାନ୍ତ ଲଗାଇ ଦେବାକୁ ବସେ । ଆରନ ହସେ । ତାର ଆଖି ଆଡ଼କୁ ଅନାଇ ଜେନୋବା ବି ହସି ପକାଏ—ତା ଚକ୍ଷୁର ହ୍ରୁ ଇଙ୍ଗିତ ଧୀରେ ଧୀରେ ମିଳାଇ ଯାଏ, ଲଜ୍ଜାର ହସ ଫୁଟି ଉଠେ । ଆରନର ବକ୍ଷରେ ସେ ମୁହଁ ଲୁଚାଏ ।

ଆରନର ବାବା ସେହି ଘଣ୍ଟା ଚେଇଁ ରହି କଟାଇ ଦିଅନ୍ତି । କିଏ ଜାଣେ ପୁଅ କୁଆଡ଼େ ଯାଇଛି ! ମାଆ ଆଖିରୁ ଲୁହ ପୋଛି କହନ୍ତି—"ଆରନ—ମୋ ନୟନର ମଣି ଆରନ, କୁଆଡ଼େ ଗଲୁରେ ବାପ, କି ବିପଦରେ ପଡ଼ିଲୁରେ !"

ତା ବାବା ଧମକ ଦେଇ ମାଆର ନାକ କାନ୍ଦଣା ବନ୍ଦ କରି ଦିଅନ୍ତି ।

ଜେନୋବା ମନେ ମନେ କେତେ ଆଶାର ଜାଲ ବୁଣେ । ତାର ନିର୍ଜନ ଘରଟି ପୁଣି ପୂରି ଉଠିବ । ବି ଜଣ —ଆରନ ଆଉ

ସେ । ସିଡ଼ୀ ତଳେ ବଗିଚ୍ଛ କଡ଼ର କଳା ପଥରଟି ଉପରେ ଦୁହେଁ ଲଗାଲଗି ହୋଇ ବସି ଥାଆନ୍ତି । ଗତ କେତେ ଦୁଏ, କେହି ' ଜାଣି ପାରନ୍ତି ନାହିଁ ।

ଆରନର ବ୍ୟାପାରଟା କ୍ରମେ କ୍ରମେ ସମସ୍ତେ ଜାଣି ଗଲେ । ସେ କୁଆଡ଼େ ଜେନୋବାକୁ ବିଭା ହେବ । ଆରନର ବାବା ପୁଅର କଥାରେ ଦୃଢ଼ ଭାବରେ ପ୍ରତିବାଦ କରି କହିଲେ—"ତାହା କଣ କେବେ ହୁଏ—ତାହା ହୋଇ ପାରେନା ।"

ତା ବାବାଙ୍କର ସବୁ କଥା ଆରନ ମାରବରେ ସହିଗଲା । ସେ ଆଉ ଘରେ ରହିବ ନାହିଁ, ଏତେ ଅପମାନ ସହି ସେ ଏଠାରେ ରହି ପାରିବ ନାହିଁ । ତାକୁ ମଣିଷ ହେବାକୁ ପଡ଼ିବ, ଘର ସଂସାର କରିବାକୁ ହେବ ।

ଜେନୋବା ଅବାକ୍ ହୋଇ ଆରନର କଥା ଶୁଣିଯାଏ ! ସେ ଫେରି ଆସିବ । ମଣିଷ ହୋଇ ଜେନୋବାକୁ ନେବା ପାଇଁ ସେ ଫେରି ଆସିବ । ତା ବାବାଙ୍କ ଆଶ୍ରୟରେ ସେ ରହିବ ନାହିଁ ।

ଆରନ ଦେଶ ଛାଡ଼ି ବାହାରିକୁ ଚାଲି ଯାଉଛି । ଅନେକ ଦୂରକୁ । କୁଆଡ଼େ ସୁନାର ଖଣିର ସନ୍ଧାନରେ । ମଣିଷ ହୋଇ ସେ ଦେଶକୁ ଫେରି ଆସିବ । ସେତେବେଳେ ସେମାନେ ଦୁହେଁ ସଂସାର କରିବେ, ସମାଜର ବାହାରେ—ଦେଶ ଠାରୁ ଅନେକ ଦୂରରେ । ସେହି କେତୋଟି ଦିନ ଜେନୋବା ତା ପଥକୁ ଚାହିଁ ବସି ରହିବ । ସନ୍ଧ୍ୟା ବେଳେ ଗୋଧୂଳି ଆଲୁଅରେ ଦୂରଗତ ପକ୍ଷୀର କାକଳିରେ ବିଦାୟୀ ଦିନର ଶେଷରେ ଆସନ୍ନ ନୂତନ ଦିନର ପଥ ଚାହିଁ, ଧରଣୀର ସ୍ୱପ୍ନାଲୋକରେ କାମନାର ଜାଲ ବୁଣି ସେ ବସି ରହିବ ।

ଆଗନ ଜ୍ୱଳି ଯାଇଛି ! ନିର୍ଜନ ପର୍ବତମାଳା ଆଡ଼କୁ ଝୁଣ୍ଟି ଝୁଣ୍ଟି ତାର ଏକୁଟିଆ ଜୀବନ ବିତିଯାଏ । ଦିନ ଗଣି ଗଣି ରାତି ଆସେ । ସେ କଣ ସବୁ ଲେଖିଛି । ନୂଆ ଦେଶର କଥା, ବ୍ୟାକୁଳ ହୋଇ ଜେନୋବା ପଢ଼ିଯାଏ! ସେମାନେ କୁଆଡ଼େ ସେଠାରେ କି ଅମୂଲ୍ୟ ଜନପଦର ସନ୍ଧାନ ପାଇଛନ୍ତି, କେଉଁଠି କେଉଁ ଖଣି ! ଭାଗ୍ୟ ପରିବର୍ତ୍ତନ ହେବାକୁ ଡେରି ନାହିଁ ।

ଏ ଅଞ୍ଚଳର ସମସ୍ତେ ସଂନ୍ତ୍ରସ୍ତ ହୋଇ ଯାଆନ୍ତି । ଖମାର ଘରଗୁଡ଼ାକ ଦୂର ଦୂରାନ୍ତରରେ ବିଚ୍ଛିନ୍ନ ହୋଇ ରହିଛି । ନିର୍ଜନ ବନ-ପଥ ମଝିରେ କୌଣସି ଘର ଥିବାର ଦେଖିଲେ ଡକାୟତ ଦଳ ଧରି ମାରି କରି ସେମାନଙ୍କ ଠାରୁ ସବୁ କିଛି କାଢ଼ି ନେଇ ଯାଆନ୍ତି । ସେମାନଙ୍କ ଉତ୍ପାତ ବଢ଼ି ଚାଲିଛି, ନିତ୍ୟ ନୂତନ ଉପଦ୍ରବ ।

ରାତିର ଶେଷ ପ୍ରହରରେ କେଉଁମାନଙ୍କର ରୁକ୍ଷ କଣ୍ଠ ସ୍ୱର ଓ ପଦ ଶବ୍ଦରେ ଜେନୋବାର ନିଦ ଭାଙ୍ଗିଗଲା ! ସେମାନଙ୍କ ଆଘାତରେ ବନ୍ଧ ଦରଜାଟା ଖୋଲିଗଲା ଏବଂ କେତେ ଜଣ ଲୋକ କଳା ମୁଖା ପିନ୍ଧି ତା' ଆଡ଼କୁ ଧାଇଁ ଆସିଲେ । ଜୋର କରି ସେମାନେ ତା ଠାରୁ ଟଙ୍କା ପଇସା ଆଦାୟ କରିବାକୁ ଚେଷ୍ଟା କଲେ । କିନ୍ତୁ ଜେନୋବା ପରି ଜଣେ ଶକ୍ତ ଝିଅ ପାଖରୁ ସେମାନେ କିଛି ବିଶେଷ ସୁବିଧା ପାଇ ପାରିଲେ ନାହିଁ । ସେ ବା ଟଙ୍କା ପଇସା କେଉଁଠୁ ପାଇବ ? ସେମାନେ ବି ଛାଡ଼ିବାର ପାତ୍ର ନୁହନ୍ତି । ତାର ହାତ ଗୋଡ଼ ବାନ୍ଧି ଗୋଡ଼ ପାଖରେ ନିଆଁ ଚେଙ୍କା ଦେବାକୁ ଲାଗିଲେ । ସେମାନଙ୍କର ଅତ୍ୟାଚାର ଓ ଉତ୍ପୀଡ଼ନ ସେ ନୀରବରେ ସହିଗଲା । ସକାଳ ହୋଇ ଯିବାରୁ ସେମାନେ ବ୍ୟର୍ଥ ମନୋରଥ

ହୋଇ ଫେରିଗଲେ । ଯିବା ବେଳେ ସେମାନେ ତାଙ୍କୁ ଶୁଣାଇ ଦେଇଗଲେ—"ଆଉ ଦିନେ ଦେଖାଯିବ ।"

ଉକାପୃତ୍ତ ପରେ ବି ଜେନୋବା ନିର୍ଜନ ଘରଟା ଛାଡ଼ି ଯିବାକୁ ଚାହିଁଲା ନାହିଁ । ତାକୁ ଛାଡ଼ି ଯିବାକୁ ତାର ଆଦୌ ଇଚ୍ଛା ହେଲା ନାହିଁ । ସମସ୍ତଙ୍କ ଅନୁରୋଧ ସତ୍ତ୍ୱେ ବି ସେ ସେଠାରୁ ଆସିଲା ନାହିଁ । ସେ ସହରକୁ ଯାଇ ଗୋଟାଏ ପିସ୍ତଲ, ଗୋଟାଏ ବନ୍ଧୁକ ଓ ଗୋଟାଏ କୁକୁର କିଣି ନେଇ ଆସିଲା ।

ଏ ସ୍ଥାନ ଛାଡ଼ି ସେ କେଉଁଠି ରହି ପାରିବ ନାହିଁ । ଘର ଖଣ୍ଡିକ ଓ ଏଠାକାର ସବୁ ଜୀବଜନ୍ତୁ ତାର ଅତି ପ୍ରିୟ ।

ଦିନ ଗଡ଼ି ଚାଲେ । ସକାଳିଆ ଆଲୁଅର ଝିଲିମିଲି ଦୂର ତୁଷାର-ମଣ୍ଡିତ ପର୍ବତ ଶିଖରରେ ରଚନା କରେ କାମନାର ସ୍ୱର୍ଗ । ସୋରିଷ-ଶିଷାର ହଳଦିଆ ଫୁଲଗୁଡ଼ାକ ଟମାଟୋର ନାଲି ଟହ ଟହ ଫଳର ଅନ୍ତରାଳରେ ମଥା ହଲାନ୍ତି ।

ଆରନ ଲେଖିଛି । ସେ କୁଆଡ଼େ ବେଶ୍ ଭଲ ଚାକିରିଟିଏ ପାଇଛି । ଏଥର ସେମାନେ କାମନାର ସ୍ୱର୍ଗ ରଚନା କରିବେ । ସେମାନେ ବିବାହ କରିବେ । ବାହାର ପୃଥିବୀର ଆହ୍ୱାନ—ତାର ପ୍ରିୟ ଘରଟିରୁ ଜେନୋବାକୁ ସେ ନେଇଯିବ, ଯଦି ଆରନ ସେହି ଆହ୍ୱାନ ଘେନ ଆସିଯାଏ । ହାଲୁକା ଶୀତର ସ୍ୱରରେ ସେହି ଦିନଟା ସାରା ସେ ସବୁ ଜିନିଷପତ୍ର ଘର ସାରା ଫୋପାଡ଼ା ଫୋପଡ଼ି କଲା । ବାବାଙ୍କ ବହିଗୁଡ଼ାକ ଓ ଜିନିଷପତ୍ର ସବୁ ସେ ନେଇଯିବ, ସେମାନଙ୍କର ନୂଆ ସଂସାରକୁ ।

ଉକାପୃତ ଦଳର ଉତ୍ପାତ ଦେଶ ଉପରେ ଯେମିତି ଏକ କଳା ଆଖି ପରି ଅଶାନ୍ତି ବିସ୍ତାର କରି ଦେଇଛି, କେହି ତାର କୌଣସି ପ୍ରତିକାର କରି ପାରୁ ନାହାନ୍ତି । ଯଥା ପୂର୍ବତ ଚାଲିଛି

ସେମାନଙ୍କର ଅତ୍ୟାଚାର । ଜେନୋବା ଆଉ ସେମାନଙ୍କୁ ଭୟ କରୁ ନାହିଁ। ତା ଛଡ଼ା ସେ ତ ଆଉ ବେଶି ଦିନ ଏଠାରେ ରହିବ ନାହିଁ।

ରାତିର ଅସ୍ପଷ୍ଟ ଅନ୍ଧକାର ଯେପରି ବାହାରେ ଗୋଟାଏ କଣ ଷଡ଼ଯନ୍ତ୍ର ରଚନା କରୁଛି ! କଣ ଗୋଟାଏ ଖସ୍ ଖସ୍ ଶବ୍ଦ ଶୁଣି ଜେନୋବା ଉଠି ପଡ଼ିଲା ! ଅସ୍ପଷ୍ଟ ଅନ୍ଧକାରରେ କିଏ ଯେମିତି ଦୁଆର ପାଖରୁ ଘୁଞ୍ଚିଗଲା । କୁକୁରଟା ଚିତ୍କାର କରିବାକୁ ଲାଗିଲା । କାହାର ଅଳ୍ପ ହସର ଶବ୍ଦ ଆସି ତା କାନରେ ବାଜିଲା !

ଜେନୋବାର ଦେହରେ ଶିହରଣ ଖେଳିଗଲା । ଏଁ, ପୁଣି ସେମାନେ ଆସିଛନ୍ତି । ଡକାୟତ ଦଳ । ପ୍ରାଣ ପଣେ ଝରକା ବାହାରକୁ — ଅସ୍ପଷ୍ଟ — ଚଳନ୍ତା ଅନ୍ଧକାରକୁ ଲକ୍ଷ୍ୟ କରି ସେ ପିସ୍ତଲ ଫୁଟାଇଲା । ରାତିର ଅନ୍ଧକାରରେ ଏକ ଝଲକ ଆଲୁଅର ଆଭା ଜଳି ଉଠିଲା ! ଆଉ କିଛି ଶୁଣାଗଲା ନାହିଁ । ସବୁ ନୀରବ । ସାରା ରାତିଟା ଜେନୋବା ଉତ୍କଣ୍ଠାରେ କଟାଇଲା ।

ସକାଳ ହେଲା ମାତ୍ରେ ଜେନୋବା ଘରୁ ବାହାରି ଆସିଲା । ଯେଉଁ କଳା ପଥରଟି ଉପରେ ବସି ସେ ଦୁହେଁ ତାଙ୍କ କାମନାର ସ୍ୱର୍ଗ ରଚନା କରୁଥିଲେ, ସେହି ପଥରଟି କାହାର ବକ୍ଷର ଜମାଟ ରକ୍ତରେ ନାଲି ହୋଇ ଯାଇଥିଲା । ତା ପାଖରେ ଆଲନର ପ୍ରାଣହୀନ ଦେହଟା ପଡ଼ି ରହିଥିଲା । ପିସ୍ତଲର ଗୁଳିଟା ତାର ବକ୍ଷ ଭେଦ କରି ଯାଇଥିଲା ।

ଦୁଇ ହାତରେ ମୁହଁ ଢ଼ାଙ୍କି ଜେନୋବା ଆର୍ତ୍ତନାଦ କରି ଉଠିଲା !......

ଆଲନ ଚୁପ୍ ଚୁପ୍ କେତେବେଳେ ଆସିଥିଲା ସେ ଜାଣେ ନାହିଁ ।...ବୋଧହୁଏ ସହସା ପହଞ୍ଚି ଯାଇ ସେ ତାକୁ ଚମକାଇ

ଦେଉଥାନ୍ତି । ଆରନର ବାବା ଓ ଅନ୍ୟାନ୍ୟ ଲୋକଙ୍କ ଆଗରେ, ଅଶ୍ରୁପୂର୍ଣ୍ଣ ନୟନରେ ଜେନୋବା କହି ଚାଲିଥିଲା—"ମୁଁ ! ମୁଁ ମାରିଛି—ତାଙ୍କୁ···

କିନ୍ତୁ ଜାଣି ନ ଥିଲି—!"

ସମସ୍ତେ ବୁଝି ପାରିଲେ ପ୍ରକୃତ ଘଟଣା କଣ । ଜେନୋବ କହି ଚାଲିଛି, ସେହି ରାତିରେ ସେ ଠିକ୍ ଚିହ୍ନିଥିଲା, ଡକାୟତ ଦଳର ସର୍ଦ୍ଦାର କୁଆଡ୍ରେ ଜଣାର ସେରିଫ୍ ନିଜେ । କିନ୍ତୁ କେହି ଏ କଥା ବିଶ୍ୱାସ କଲେ ନାହିଁ, ନିଜେ ସେରିଫ୍ ମଧ୍ୟ । ସମସ୍ତେ ଭାବିଲେ, ଆରନ ମରିଯିବା ଦିନଠୁ ହୁଏତ ତାର ମଥା ଖରାପ ହୋଇ ଯାଇଛି ।

ପରେ କଥାଟି ପ୍ରକଟିତ ହୋଇଗଲା । ଦଳର ଜଣେ ଡକାୟତ କୁଆଡ୍ରେ କଥାଟା ଫିଟାଇ କହିଦେଲା । ସେରିଫ୍ ପଦଚ୍ୟୁତ ହେଲା ! ଛାଡ ସେ ସବୁ କଥା ।

ସେହି ଦିନଠୁ ଜେନୋବାକୁ କୌଣସି କଷ୍ଟ ମାରିବାର କେହି ଦେଖି ନାହାନ୍ତି ! ତାର ସ୍ନେହ ଦୟା ଭିତରେ ସବୁ ପଶୁପକ୍ଷୀ ଅବାଧ ବିଚରଣ କରନ୍ତି, ସମସ୍ତେ ତାର ଅତି ଆଦରଣୀୟ ! ସେ ଏକ ବିଚିତ୍ର ଧରଣର ଜୀବନ ଯାପନ କରେ—କାହାର ସାଙ୍ଗରେ ତାର ମେଳ ନାହିଁ ।

ଅନେକ ଦିନ ହେଲା ମୋର ଆଉ ଜେନୋବା ସାଙ୍ଗରେ ଦେଖା ହୋଇ ନାହିଁ । କେତେ ବର୍ଷ ଜାଣେ ନା ! ୟୁରୋପର ବାହାରକୁ ମୁଁ ଚାଲି ଆସିଛି ! ଭାରତବର୍ଷ ଆଡ଼କୁ ! ଭାରତବର୍ଷ ! ଏଇଠି କୁଆଡ୍ରେ କେଉଁଠି ଜେନୋବାର ମାଆର ଜନ୍ମଭୂମି ! କେଉଁ ସୁଦୂର ଦେଶର ପବିତ୍ର ମାଟିର ସ୍ପର୍ଶ ତାର ମାନବ-ଜୀବନକୁ

ଦେବ ଭୁଲି କରି ଦେଇଛନ୍ତି । ତାର ଜରିଆରେ ସମଗ୍ର ଦେଶକୁ ପ୍ରଣାମ ଜଣାଇବାକୁ ମୋର ଇଚ୍ଛା ହୁଏ । ଜାଭା-ସୁମାତ୍ରା ! ନାରିକେଳ ବାତ୍ୟାନ୍ଦୋଳିତ ବାଲୁତଟ ! ନୀଳ-ସାଗରର ମାୟାଞ୍ଜନ ଲାଗିଛି ତାର ଆକାଶରେ । ଜଗତର ବିସ୍ମୃତ ଓ ଉଦାର ମନ ଭୂଲଣିଆ ରୂପ ମଧ୍ୟରେ-ନିଜକୁ ହଜାଇ ଦିଏ, ମନର ନିଃସ୍ୱତା । ସାଙ୍ଗରେ ମୋର କ୍ଷୁଦ୍ରତା କଣ୍ଠ ତା ବାନ୍ଧେ ! ଚୁପି ଚୁପି ଗାଉଲେ ସେମାନଙ୍କର ସ୍ନେହ ଗୀତିକ !

ଅନେକ ଦିନ ପରେ ପୁଣି ଦେଶକୁ ଫେରି ଆସିଲି । ସେହି ପାହାଡ଼ ଘେରା ଦେଶ ! ଅଙ୍କା ବଙ୍କା ରାସ୍ତା ! ସବୁ ଯେମିତି ଗ୍ଲେଟ ! ଅନେକ ଗ୍ଲେଟ ହୋଇ ରାସ୍ତାଟା ତାର ପରିସର ହଜାଇ ଦେଇଛି ! ମୁଁ ହୋଇ ଯାଇଛି ବଡ଼ ! କିଛି ଦିନ ପରେ ପୁଣି ମୁଁ ମୋର ନିଜତ୍ୱ ଯେମିତି ହଜାଇ ଦିଏ ! ମୋର ଗ୍ଲେଟ ଝିଅ ଜଲିର ଠେକୁଆ, ଗୁଣ୍ଡୁଚିମୂଷା, ଗିନିପିଗ୍ ଇତ୍ୟାଦି ପୋଷିବାରେ ଘାରି ଝୁଙ୍କ ! ଦିନ ରାତି ଅନବରତ ସେ ସେମାନଙ୍କ ପଛରେ ବ୍ୟସ୍ତ ! —ହଠାତ୍ ଗୋଟିଏ ହସର ଶବ୍ଦରେ ଫେରି ଚାହିଁଲି ! ଜଲି ବଗିଚାରେ ଠିଆ ହୋଇଛି—ତାର କାନ୍ଧ ଉପରେ ମୋର ନୂଆ ଆଣିଥିବା କାକାତୁଆ ଚଢ଼େଇଟା ବସିଛି ! ମନେ ପଡ଼ିଗଲା ଅନେକ ଦିନ ତଳର ହଜିଲା କଥା ! କେଉଁ ଦୁର୍ବାର ଆକର୍ଷଣରେ ସେହି କେନୋବାର ଘର ଅଭିମୁଖରେ ମୁଁ ବାହାରି ପଡ଼ିଲି !

ଅବାକ୍ ହୋଇଗଲି ! ଜନ ମାନବହୀନ ଘର ଖଣ୍ଡିକ ନଇଁ ପଡ଼ିଲାଣି । କେତେ ବର୍ଷାର ଜଳ ଯେ ତା ଉପର ଦେଇ ଗଡ଼ି ଯାଇଛି, ମୁଁ ଜାଣେ ନାହିଁ ! ଘର ଦ୍ୱାର ଗୁଡ଼ିଆଡ଼ ବଣୁଆ ଗଛ-ଲତାରେ ପୁରି ଯାଇଛି । ବଗିଚାଟିରେ କି କେତେ ଆଡ଼ର ଜୀବଜନ୍ତୁ ଆସି ବସା ବାନ୍ଧିଛନ୍ତି !

କେତେ ବର୍ଷ ହେଲା ଜେନୋବା ମରି ଗଲାଣି ! ବୟସର ଭାରରେ ତାର ଦେହ ନଇଁ ଆସୁଥିଲା । ଶେଷ ଆଡ଼କୁ ତାର ଅଭାବ ବି ଘଟିଥିଲା, ତଥାପି ସେ କାହାର ଦୟାର ପାତ୍ରୀ ହୋଇ ନ ଥିଲା ! ସେ ନିଜର ଘର ଖଣ୍ଡିକ ଛାଡ଼ି ଯାଇ ପାରିଲା ନାହିଁ । ପାଖ ଆଖର ଖଳାବାଡ଼ିରୁ ପିଲାମାନେ ତାକୁ ଦେଖିବାକୁ ଆସୁଥିଲେ ! ତା ପାଇଁ ଖାଦ୍ୟ ନେଇ ଆସୁଥିଲେ—କେହି କେହି ବା ଘିଅ, ଲହୁଣୀ, ରୋଟି ଆଣୁଥିଲେ । ମଳିନ ହସରେ ଜେନୋବା ସେମାନଙ୍କ ଆଡ଼କୁ ଚାହିଁ ରହୁଥିଲା ! କିଛି ଦିନ ହେଲା ଜେନୋବା ବିଛଣାରୁ ଉଠି ପାରୁ ନ ଥିଲା ।

ଯନ୍ତ୍ରଣାରେ ତାର ଜୀର୍ଣ୍ଣ ମୁଖ ପାଂଶୁ ହୋଇ ଆସିଲା ।

ତହିଁ ପର ଦିନ ସକାଳେ ପିଲାମାନେ ଦଳ ଦଳ ହୋଇ ଘରେ ପଶିଲା କ୍ଷଣି ଅବାକ୍ ହୋଇଗଲେ ! ବିଛଣାରେ ପଡ଼ି ରହିଥିଲା ତାର ମୃତ ଦେହ ! ବେଶଭୂଷା ହେବାକୁ ସେ ଭୁଲି ଯାଇ ନ ଥିଲା । ସେହି ଗାଉନ—ହାର—ସବୁ କିଛି ପରିଧାନ କରି ସେ ଯେମିତି ମରଣକୁ ବରଣ କରି ନେଇଥିଲା ! ଘର ଭିତରେ ତାକୁ ବେଢ଼ି ଅସଂଖ୍ୟ ଠେକୁଆ, ଗୁଣ୍ଡୁଚିମୂଷା ଓ ପକ୍ଷୀ ବସିଥିଲେ ! ଲୋକମାନଙ୍କୁ ଆସିବାର ଦେଖି ସେମାନେ ବାହାରିଗଲେ !

ଜେନୋବାର କବରଟା ଠିକ୍ ଆରନର କବର ପାଖରେ ରହିଛି । ବଣୁଆ ଘାସରେ ଜାଗାଟି ପୂରି ଯାଇଛି ସମଗ୍ର ବଗିଚାଟା । —ଅବାକ୍ ହୋଇ ସେହି ପୋଖରୀ ଆଡ଼କୁ ଚାହିଁ ରହିଲି । ତେଜହୀନ ରୌଦ୍ର ମଝିରେ କେଉଁଠୁ ଯେମିତି କାହାର ଆହ୍ୱାନ ଭାସି ଆସିବାକୁ ଲାଗିଲା—କୌଣସି ସୁଦୂର ପିପ୍ପାସୀର !

ସ୍ତବ୍ଧ ବନାନୀ ମଝିରେ, ପକ୍ଷୀର ସଙ୍ଗୀତ ଭିତରେ, ମୁଁ ଯେମିତି କୌଣସି ଅଜଣା ଦେଶର ସନ୍ଧାନ ଖୋଜି ପାଇଲି, ବନ୍ଧୁ

ଦିନ ଆଗରୁ ମୁଁ ଯାହା ପାଇଥିଲି ସେଇ ଜଗତ୍ ! ସେଇ ପଥର ଇଙ୍ଗିତ । ଜେନୋବାର ହସମିଶା ମୁଖ—"ସେ ତୁମର ଦଳର ଜଣେ ।"

ହଁ, ହଁ, ମୁଁ ତୁମମାନଙ୍କର ! ଚିର ଦିନ ହିଁ ତୁମମାନଙ୍କର ! ମନଟା ମୋର କେମିତି ହୋଇଗଲା । ପଶ୍ଚିମ ଦିଗରେ ପାହାଡ଼ର କୋଳରେ ସୂର୍ଯ୍ୟ ଅସ୍ତ ଯାଉଥାନ୍ତି । ଆଞ୍ଜୁଳା ଆଞ୍ଜୁଳା କରି ଝରଣାର ଜଳ ପାନ କଲେ ସୁଦ୍ଧା ମୋର ତୃପ୍ତି ଆସିଲା ନାହିଁ ।

ଜଲିକୁ ସବୁ କଥା କହିବାକୁ ପଡ଼ିଲା । ଠେକୁଆଟାକୁ କୋଳରୁ ଓହ୍ଲାଇ ତାକୁ ଆଦର କଲି—ତାକୁ ନେଇ ଯିବାକୁ ହେବ !

ନ ଗଲେ ମୁଁ ବି ରହି ପାରିବି ନାହିଁ । କୁକୁର ଦୁଇଟିକୁ ସାଙ୍ଗରେ ଧରି ବାହାରି ପଡ଼ିଲି । ଜଲି ନ ଯାଇ ଛାଡ଼ିଲା ନାହିଁ । ଜଲିର ପ୍ରତି ପଦ କ୍ଷେପରେ ମୁଁ ଯେମିତି ବହୁ ଦିନ ତଳର ସେଇ ହଜିଲା ନିଜକୁ ଖୋଜି ପାଇଲି । ଜଲି ବିସ୍ଫାରିତ ନୟନରେ ବାହାର ପୃଥିବୀ ଆଡ଼କୁ ଚାହିଁ ରହିଥିଲା ।

ଜେନୋବାର ଘର-ବଗିଚା ଭିତରେ ଜଲି ଯେମିତି କଣ ଖୋଜି ପାଇଲା । ପ୍ରତ୍ୟେକ ଗଛଲତା ଓ ଜୀବଜନ୍ତୁକୁ ସେ ନୀରବରେ ଦେଖିବାକୁ ଲାଗିଲା । ହଠାତ୍ ଜଲିର ଚିତ୍କାରରେ କୁକୁର ଦୁଇଟିକୁ ବି ଛାଡ଼ି ଦେଲି । ଚାହିଁ ଦେଖିଲି, କୁକୁର ଦୁଇଟା ଧାଇଁ ଯାଇ ଗୋଟାଏ ଗୁଣ୍ଡୁଚିମୂଷାକୁ ଖତମ କରି ଦେଲେ ! ଧାରୁଆ ଦାନ୍ତର ଜୋରରେ ଗ୍ରେଟ ଦେହଟା ରକ୍ତାକ୍ତ ହୋଇଗଲା ! ଛଟପଟ ହେଉ ହେଉ ତାର ଦେହ ନିସ୍ତେଜ ହୋଇ ଆସିଲା ! ସେମାନେ ତ ଆଉ ପଳାଇବାକୁ ଶିଖି ନାହାନ୍ତି !

ମୋ ମନଟା ଖରଖାନ୍ତ ହୋଇଗଲା । ଆଜି ମୁଁ ଜେନୋବା ନିକଟରେ ଚିର ଅପରାଧୀ । ତାର ବିଶ୍ୱାସ ମୁଁ ରଖି ନାହିଁ ।

ଜଲର ଆଖିରୁ ଲୁହ ବହି ଆସିଲା । ମୁଁ ନୀରବରେ ସେଠାରୁ ଫେରି ଆସିଲି । ମୋ ପାଟିରୁ ପଦେ କଥା ବାହାରିଲା ନାହିଁ । ଏବେ ବି ମୋର ଗୋଟାଏ କଥା ମନେ ପଡ଼େ—"ଜେନୋବାର ପବିତ୍ର ସ୍ମୃତି ମୁଁ ନଷ୍ଟ କରିଛି ।"

ଆଉ ସେଠାକୁ ଯିବାକୁ କେତେ ଦିନ ମୋର ସାହସ ହେଲା ନାହିଁ । ଦିନେ ନୀରବରେ ବସି ରହିଥିଲି । ସନ୍ଧ୍ୟା ହୋଇ ଗଲାଣି । ଜଲ କୁଆଡ଼େ ବୁଲିବାକୁ ଯାଇଥାଏ ।

ନନ୍ତ ତାର ମାଆ ଆସି ମୋ ପାଖରେ ଫେରାଦ କଲେ, କେଉଁ ଦିନ ରାତି ନ ହେଲେ ସେ ଘରକୁ ଫେରୁ ନାହିଁ । ଆଜି ଆଜି ମୁଁ ସହି ପାରିଲି ନାହିଁ । ମନଟା ମୋର ତାତିଗଲା । ଚୁପ୍ ଚୁପ୍ ଘରେ ପଶିବାକୁ ଯାଇ ଜଲି ଧରା ପଡ଼ିଲା ।

ସେ କୌଣସି ମତେ କିଛି ଜବାବ ଦେଲା ନାହିଁ । ସେମିତି ଠିଆ ହୋଇ ରହିଲା—ତା ଆଖିରୁ ଲୁହ ଗଡ଼ି ପଡ଼ିଲା ।

କଡ଼ା ଶାସନ ଯୋଗୁଁ ଜଲି କେତେ ଦିନ ହେଲା ବାହାରକୁ ଯାଇ ପାରୁ ନ ଥିଲା । ତାକୁ କୌଣସି ମତେ ବାହାରକୁ ଛାଡ଼ି ଦିଆଯାଉ ନ ଥିଲା । ମୁଁ ଲକ୍ଷ୍ୟ କରେଁ, ନନ୍ତ ଦିପହରରେ କେମିତି ଆନମନା ହୋଇ ଜଲ ଆମ୍ବ ବଗିଚା ଭିତରେ ଚୁପ୍ କରି ବସି ରହୁଛି—ଠେକୁଆ, ଗୁଣ୍ଡୁଚିମୂଷା ଓ ପକ୍ଷୀଗୁଡ଼ାକ ତାର ସ୍ୱର ପଟେ ଦୂରି ବୁଲି ତାକୁ ବିରକ୍ତ କଲେ ବି ସେ କିଛି କରୁ ନାହିଁ !

ସେ ଦିନ ରାତିରେ ସେ ଚୁପ୍ ଚୁପ୍ ମୋ କୋଠରିକୁ ଆସିଲା । ତାର କଥା ଶୁଣି ମୁଁ ତା ଆଡ଼କୁ ଚାହିଁ ରହିଲି—"ଜାଣ ବାବା, ମୁଁ କୁଆଡ଼େ ଯାଉଥିଲି ! ସେହି ପାହାଡ଼ ଉପରକୁ, ପୁରୁଣା ବଗିଚାକୁ । ଚାଲ ନା ଥରେ ବୁଲି ଆସିବା ।"

ତାର କଥାରେ ଅବାକ୍ ହୋଇ ମୁଁ ତା ଆଡ଼କୁ ଚାହିଁ ରହିଲି । ଏମିତି ଗୋଟାଏ କିଛି କଥା ସେ କହିବ ବୋଲି ମୁଁ ଆଗରୁ ଜାଣିଥିଲି । ସେ ସେଠାକୁ କାହିଁକି ଯାଏ ତାକୁ ପଚାରିଲି ନାହିଁ, କାରଣ ମୁଁ ଜାଣେ ସେ ତାର ଜବାବ ଦେବ ନାହିଁ । ମୁଁ ତ ମୋ କାହାକୁ ଦେଇ ନ ଥିଲି, ସେ ବା କାହିଁକି ମୋତେ ଦେବ ? ତା ଆଖିରେ ନୁଆଁ ଣିଆ ଦିନର ଆଲୁଅ ଚକ୍ ଚକ୍ ହେବାକୁ ଲାଗିଲା ।

ସେହି ଆଖି ଡୋଳା ମୋର ଅନେକ ଦିନରୁ ପରିଚିତ । ଜେନୋବା ଆଜି ବି ମରି ନାହିଁ । ତାର ବଗିଚାର ପ୍ରତିଟି ଗଛ-ପତ୍ର, ପାଣି-ପବନରେ ମିଶି ରହିଛି ତାର ବିଦେହୀ ଆତ୍ମା ! ମୋର ମନେ ହୁଏ, ସେ ଅମର ହୋଇ ରହିଛି, ଜୁଲିର ଆଖି-ଡୋଳାରେ ! ସେ ମରି ପାରେ ନା – ସେ ଯେ ଚିରନ୍ତନ !

— ଲୁଇ ବ୍ରମଫିଲ୍ଡ

# ଏମିଲି ଲାଗି ଗୋଲାପଟିଏ

— ୧ —

ଯେତେବେଳେ କୁମାରୀ ଏମିଲି ଗ୍ରିୟୁରସନଙ୍କର ମୃତ୍ୟୁ ହେଲା, ସାରା ସହରର ଆମେ ସମସ୍ତେ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଦେଖିବାକୁ ଗଲୁଁ । ଗୋଟିଏ ବିରାଟ ଅଟ୍ଟାଳିକା ଭାଙ୍ଗି ପଡ଼ିଲେ, ସେଥିପାଇଁ ମଣିଷ ସସମ୍ଭ୍ରମ ଅନୁକମ୍ପା ଅନୁଭବ କରେ—ପୁରୁଷମାନେ ସେହି ପ୍ରେରଣାରେ ଗଲେ, ଆଉ ମହିଳାମାନେ କେବଳ କୌତୂହଳ ବଶତଃ ଗଲେ । ଗତ ଦଶ ବର୍ଷ ମଧ୍ୟରେ ତାର ଏକମାତ୍ର ଭୃତ୍ୟ, ଏକାଧାରରେ ମାଳି ଓ ପାଚକ, ସେହି ବୃଦ୍ଧ ନିଗ୍ରୋଟି ବ୍ୟତୀତ ଆଉ କାହାରିକୁ ସେହି ଘର ଭିତରକୁ ଯିବାର ମୁଁ ଦେଖି ନାହିଁ । ତେଣୁ ମୁଁ ଜାଣେ ନାହିଁ, ତାହା ଭିତରେ କଣ ଅଛି ।

୧୮୭୦ ସାଲର ସ୍ଥାପତ୍ୟ-ରୀତି ଅନୁସାରେ ଗମ୍ବୁଜ, ସ୍ତମ୍ଭ ଓ ବାରଣ୍ଡା ସୁଶୋଭିତ ବିଶାଳ ଚତୁଷ୍କୋଣ ଅଟ୍ଟାଳିକା—କାନ୍ଥର ରଙ୍ଗ ହୁଏତ କେବେ ଧଳା ଥିଲା । ଆଜିକାଲି ପାଖ ଆଖରେ ଏଠାରେ-ସେଠାରେ ଗାରଦ ଓ ଗୋଦାମ ସବୁ ଠିଆ ହୋଇ ଯିବାରୁ ବସ୍ତିର ଏକଦା-ଖ୍ୟାତ-ଆଭିଜାତ୍ୟକୁ ତାହା ଯେମିତି ଏକବାରେ ପୋଛି ପକାଇଛି । ଏପରିକି, ଏହି ରାଜପଥର ଯେଉଁମାନେ ବିଶିଷ୍ଟ ନାଗରିକ ଥିଲେ, ସେମାନଙ୍କର ନାମ ଗୁଡ଼ିକ ମଧ୍ୟ ନାହିଁ । ଆଜି ବି

କେବଳ କୁମାରୀ ଏମିଲର ଅଟ୍ଟାଳିକାର ଭଗ୍ନାବଶେଷ ଶଙ୍କାହୀନା ନାରୀ ପରି ଗର୍ବୋଦ୍ଧତ ମସ୍ତକ ଉତ୍ତୋଳନ କରି ଠିଆ ହୋଇଛି । ଆଧୁନିକ ଗ୍ୟାସ ଆଲୋକ ଓ ତୁଳା-ବାହକ ଗାଡ଼ିଗୁଡ଼ାକର ତାହା ଚକ୍ଷୁଶୂଳ ହୁଏ । ଜେଫାରସନ୍‌ର ବହୁ ଖ୍ୟାତ ବିଖ୍ୟାତ ନାମଗୁଡ଼ିକ ସହିତ ଆଉ ଗୋଟିଏ ନାମ ସଂଯୋଗ କରିବା ପାଇଁ ଆଜି ସେହି କୁମାରୀ ଏମିଲ ବି ସେଠାକୁ ଚାଲିଗଲା—ଯେଉଁଠାରେ, ଜେଫାର-ସନ୍‌ର ଯୁଦ୍ଧରେ ମୃତ ଅଜ୍ଞାତନାମା ସୈନିକମାନଙ୍କ ପାଖରେ, ଦେବଦାରୁ-ଗନ୍ଧ-ବିମୋହିତ ସମାଧି କ୍ଷେତ୍ରରେ, ସେମାନେ ଅନ୍ତିମ ଶଯ୍ୟନରେ ଶୋଇ ରହିଛନ୍ତି ।

କୁମାରୀ ଏମିଲଙ୍କ ଜୀବିତାବସ୍ଥାରୁ ଜେଫାରସନ୍‌ର ପୌର-ନାୟକମାନେ ତାକୁ ଏକ ସାମାଜିକ ସମ୍ପତ୍ତି ରୂପେ ଗ୍ରହଣ କରି ନେଇଥିଲେ, ଠିକ୍ ପ୍ରାଚୀନ ଐତିହ୍ୟର ଧ୍ୱଂସାବଶେଷ ସଯତ୍ନରେ ରକ୍ଷା କରିବା ଦାୟିତ୍ୱ ଯେମିତି ମଣିଷମାନେ ବହନ କରନ୍ତି । ସେହି କର୍ଣ୍ଣେଲ ସାରଟୋରିସ୍, ଯେ ସେତେବେଳେ ମେୟର ଥିଲେ, ୧୮୯୪ ସାଲରେ ସେ ଦିନେ କୁମାରୀ ଏମିଲଙ୍କୁ ସବୁ ପ୍ରକାର କରରୁ ଅବ୍ୟାହତି ଦେଇ ଦେଲେ, ତା ବାବାଙ୍କ ମୃତ୍ୟୁ ଦିନରୁ । ସେ କହୁଥିଲେ, ଏମିଲର ବାବା ସହରର ପ୍ରାୟ ସମସ୍ତଙ୍କୁ ଟଙ୍କା ଧାର ଦେଇ ଯାଇଛନ୍ତି । ସହର ପକ୍ଷରେ ସେହି ଋଣ ଏହି ଉପାୟରେ ପରିଶୋଧ କରିବାକୁ ସୁବିଧା ହେବ । ଏହିପରି ଧାରଣା କର୍ଣ୍ଣେଲ ସାରଟୋରିସଙ୍କ ଯୁଗର ଲୋକଙ୍କ ମଥାରେ ପ୍ରବେଶ କରିବା ହିଁ ସମ୍ଭବ ।

ତାଙ୍କ ଉତ୍ତର-ପୁରୁଷର ନୂଆ ଲୋକମାନେ ଆଧୁନିକ ଦୃଷ୍ଟି-ଭଙ୍ଗୀ ନେଇ ଯେତେବେଳେ ପୌର-ସଭା ଅଳଂକୃତ କଲେ,

ସେତେବେଳେ ଏହି ବ୍ୟବସ୍ଥା ବିରୁଦ୍ଧରେ ଗଭୀର ଅସନ୍ତୋଷ ଦେଖାଗଲା । ପ୍ରଥମ ବର୍ଷ ସେମାନେ ଏମିଲିଙ୍କୁ କର ଦେବା ପାଇଁ ନୋଟିସ ପଠାଇଲେ । କିନ୍ତୁ ତାଙ୍କର କୌଣସି ଜବାବ ମିଳିଲା ନାହିଁ । ତାପରେ ସେମାନେ ଆଉ ଖଣ୍ଡିଏ ଚିଠି ଲେଖିଲେ, ସମୟ ଓ ସୁଯୋଗ ଦେଖି କୁମାରୀ ଏମିଲି ଯେମିତ ସରିଫଙ୍କ ଅଫିସରେ ସାକ୍ଷାତ କରନ୍ତି । ସପ୍ତାହକ ପରେ ମେୟର ନିଜେ ଲେଖିଲେ, କୁମାରୀ ଏମିଲିଙ୍କର ଅଫିସକୁ ଆସିବା ପାଇଁ ସେ ଗାଡ଼ି ପଠାଇ-ଛନ୍ତି । ଅତି ପୁରୁଣା-କାଳିଆ ଚିଠିର କାଗଜରେ ମେୟର ତା'ର ଉତ୍ତର ପାଇଲେ, ବଙ୍କା-ତଙ୍କା ହସ୍ତାକ୍ଷରରେ ଲେଖା ଅଛି, 'ମୁଁ ଆଦୌ ଘରୁ ବାହାରେ ନାହିଁ ।' ଚିଠି ସାଙ୍ଗରେ ଟିକସ-ନୋଟିସଟା ଗୁନ୍ଥା ଯାଇଥିଲା, ମାତ୍ର କୌଣସି ମନ୍ତବ୍ୟ ନ ଥିଲା ।

ପୌର-ସଭ୍ୟମାନଙ୍କର ଏକ ବିଶେଷ ସଭା ଆହୂତ ହେଲା । ସଭାର ଶେଷରେ ସେମାନେ ଏକତ୍ର ମିଳିତ ହୋଇ ଏମିଲିର ଦୁଆର ମୁହଁରେ ଯାଇ ହାଜର ହେଲେ । ପ୍ରାୟ-ଅନ୍ଧକାର ହଲ୍‌ଘରେ, ଯେଉଁଠାରେ ବହୁ ଦିନ ହେଲା କୌଣସି ଦର୍ଶନ-ପ୍ରାର୍ଥୀର ପାଦ ପଡ଼ି ନ ଥିଲା, ବୁଢ଼ା ନିଗ୍ରୋଟି ସେମାନଙ୍କୁ ବସାଇଲା । ଉଷୁମୁଳିଆ ଧୂଳିଆ ଗନ୍ଧ, ମୋଟା ଚମଡ଼ାରେ ଆଚ୍ଛାଦିତ ଆସବାବପତ୍ର । ଅଗଣିତ ଫଟା ଦାଗରେ ଚମଡ଼ାର ଆବରଣ ଗୁଡ଼ିକ ବିକୃତ । ସେମାନେ ବସି ପଡ଼ିବା ମାତ୍ରେ ସେମାନଙ୍କ ପାଦ ନିକଟରେ କେତେ-ଗୁଡ଼ିଏ କ୍ଷୀଣ ଧୂଳିର କୁଣ୍ଡଳୀ ଉପରକୁ ଉଠିବାକୁ ଲାଗିଲା । ଅଗ୍ନିକୁଣ୍ଡ ଉପରେ ଧୂଳି-ମଳିନ ସୁନେଲି ଚିତ୍ର-ଫଳକରେ କୁମାରୀ ଏମିଲିର ବାବାଙ୍କର ଖଣ୍ଡିଏ ଛବି ।

ଏମିଲି ଆସି ଯିବାରୁ ସେମାନେ ଉଠି ଛିଡ଼ା ହେଲେ । ମହିଳାଟି ଦେଖିବାକୁ ସ୍ଥୂଳାଙ୍ଗୀ ଓ କ୍ଷୁଦ୍ରକାୟା, ଯଥେଷ୍ଟ କଳା,

ଗୋଟିଏ ସରୁ ସୁନା ହାର ତା ଅଣ୍ଟା ଯାଏ ପଡ଼ିଥାଏ । ଫିକା ଚେହେରା, ସ୍ଥୂଳ ମୁଖରେ ଦୁଇଟି ଗ୍ଲେଟ ଗ୍ଲେଟ ଆଖି, ପେଣ୍ଡୁଳ ମଇଦାରେ ଯେମିତି ଦୁଇ ଖଣ୍ଡ କୋଇଲା ବସା ଯାଇଛି ।

ସେ ସେମାନଙ୍କୁ ବସିବାକୁ କହିଲା ନାହିଁ । ଯେତେ ବେଳ ଯାଏ ସେମାନେ କହିଲେ, ସେତେ ବେଳ ଯାଏ ଏମିଲ ନୀରବରେ ଶୁଣିଲା । ମଝିରେ ଯେତେବେଳେ ଶୁଖିଲା ଥଣ୍ଡା ଗଳାରେ ଏମିଲର ଜବାବ ଶୁଣାଗଲା, ହଠାତ୍ ବକ୍ତାର କଣ୍ଠ ଏକବାରେ ରହିଗଲା ।

"ଜେଫାରସନରେ ମୋର କୌଣସି ଟିକସ ଫିକସ ନାହିଁ । କର୍ଣ୍ଣେଲ ସାରଟୋରିସ୍ ମୋତେ ତାହା ପରିଷ୍କାର ବୁଝାଇ ଦେଇ-ଛନ୍ତି । ଆପଣମାନେ କାଗଜପତ୍ରରୁ ତାହା ଦେଖି ପାରନ୍ତି ।"

"କିନ୍ତୁ ଆମ୍ଭେମାନେ ତ କର୍ତ୍ତା । ଆପଣ କଣ ସରିଫଙ୍କର ନୋଟିସ ପାଇ ନାହାନ୍ତି ?"

"ହଁ, ପାଇଛି । ସେ ବୋଧହୁଏ ନିଜ ମନେ ମନେ ଆପଣାକୁ ସରିଫ ଭାବି ବସି ରହିଛନ୍ତି । ମାତ୍ର ଜେଫାରସନରେ ମୋର କୌଣସି ଟିକସ ନାହିଁ ।"

"କିନ୍ତୁ କାଗଜପତ୍ରରେ ସେପରି କୌଣସି ପ୍ରମାଣ ନାହିଁ । ଆମ୍ଭମାନଙ୍କର ତ ଆଇନ —।"

"କର୍ଣ୍ଣେଲ ସାରଟୋରିସଙ୍କ ନିକଟକୁ ଯାଆନ୍ତୁ— ଜେଫାର-ସନ୍‌ରେ ମୋର କୌଣସି ଟିକସ ନାହିଁ ।"

"କିନ୍ତୁ, କୁମାରୀ ଏମିଲି —।"

"କର୍ଣ୍ଣେଲ ସାରଟୋରିସଙ୍କ ନିକଟକୁ ଯାଆନ୍ତୁ ।" (ନିହାତି କମରେ ଦଶ ବର୍ଷ ହେଲା କର୍ଣ୍ଣେଲ ସାରଟୋରିସ୍ ମରିଗଲେଣି ।) "ଜେଫାରସନରେ ମୋର କୌଣସି ଟିକସ ନାହିଁ । ଟୋବ !"

ନିଗ୍ରୋଟା ଆଗରେ ଆସି ଠିଆ ହେଲା । "ଏମାନଙ୍କୁ ଦୁଆରଟା ଦେଖାଇ ଦେ ତ ।"

—୨—

ଆଜ ଠାରୁ ତିରିଶ ବର୍ଷ ତଳେ, ତା ବାବାଙ୍କ ମୃତ୍ୟୁର ଦୁଇ ବର୍ଷ ପରେ, ଏହିପରି ଭାବରେ ଏମିଲି ସେମାନଙ୍କର ପୂର୍ବ ପୁରୁଷର ପୌର ନାୟକମାନଙ୍କୁ ଜବଦ କରିଥିଲା । ତା ପ୍ରଣୟୀର ସହସା ଅନ୍ତର୍ଦ୍ଧାନର କିଛି ଦିନ ପରେ, ଦିନେ ଗୋଟାଏ ବିକଟ ଦୁର୍ଗନ୍ଧ ଅଟ୍ଟାଳିକା ମଧ୍ୟରୁ ବାହାରିବାକୁ ଲାଗିଲା । ନିରୁଦ୍ଦେଶ ହେବାର ଠିକ୍ ପର ଦିନରୁ ହିଁ ତାର ପ୍ରଣୟୀ ସେହି ଅଟ୍ଟାଳିକାର ବାହାରେ ପାଦ ଦେଇ ନାହିଁ । କେହି କେହି ଏହି କଥା କହିବା ପାଇଁ ତା ଘରକୁ ଗଲେ, କିନ୍ତୁ ଏମିଲି ସେମାନଙ୍କୁ ଦେଖା ଦେଲା ନାହିଁ । କେବଳ ନିଗ୍ରୋଟା ଝୁଡ଼ି ଧରି ବଜାରକୁ ଯିବା ଆସିବା କରେ ବୋଲି ଜଣାଯାଏ ଯେ ସେହି ଘର ଭିତରେ ପ୍ରାଣରେ ଲକ୍ଷଣ ବୋଲି ଗୋଟାଏ କିଛି ଅଛି ।

ସେମାନେ କହିଲେ, "ଜଣେ ଲୋକର ପକ୍ଷରେ ଏହି ଘର ଦ୍ୱାର ସବୁ ପରିଷ୍କାର ପରିଚ୍ଛନ୍ନ ରଖିବା ସମ୍ଭବ !" ଯେତେବେଳେ ଦୁର୍ଗନ୍ଧ ଆସ୍ତେ ଆସ୍ତେ ବଢ଼ିବାକୁ ଲାଗିଲା, ସେମାନେ ଆଶ୍ଚର୍ଯ୍ୟ ହେଲେ ନାହିଁ । ଉଦ୍ଧତ-ଗର୍ବିତ ଗ୍ରିଅର୍ସନମାନଙ୍କ ସହିତ ବାହ୍ୟ ପୃଥିବୀର ସ୍ଥୂଳ କୁତ୍ସିତ ଜନତାର ଏହା ବି ଏକ ଯୋଗସୂତ୍ର ।

ବ୍ୟତିବ୍ୟସ୍ତ ହୋଇ ଜଣେ ଶୁକ୍ଳକେଶୀ ଅଶୀ ବର୍ଷ ବୟସ୍କ ବୃଦ୍ଧ, ବିଚାରକ ଷ୍ଟିଭେନ୍‌ସଙ୍କ ନିକଟରେ ଅଭିଯୋଗ କଲା, ଏହାର ଏକ ବିହିତ ପ୍ରତିକାରର ବ୍ୟବସ୍ଥା କରିବାକୁ ହେବ ।

"ମୁଁ ସେଥିରେ କଣ କରି ପାରେ, ମହାଶୟା !" ସେ କହିଲେ ।

"ଜାଣିନ, ତାକୁ ଏହା ବନ୍ଦ କରିବା ପାଇଁ ଆଦେଶ ଦିଅନ୍ତୁ ନା ! ଆଇନ ବୋଲି ତ ପେଉ ଗୋଟାଏ ଜିନିଷ ଅଛି ।"

"ଦରକାର ପଡ଼ିବ ନାହିଁ", ଷ୍ଟିଭେନ୍ସ କହିଲେ, "ହୁଏତ ନିଗ୍ରୋଟା ହାମ କ ମୂଷା-ଚୂଷା କିଛି ମାରି ଅଗଣାରେ ପକାଇ ଦେଇଛି । ମୁଁ ତାକୁ ଡାକି କହିଦେବି ।"

ତା ପର ଦିନ ଆହୁରି ଅନେକ ଅଭିଯୋଗ ଆସିଲା ।

"କିଛି ଗୋଟାଏ କରିବାକୁ ହେବ, ମହାଶୟ । କୁମାରୀ ଏମିଲଙ୍କୁ ବିରକ୍ତ କରିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ, କିନ୍ତୁ ଦୁର୍ଗନ୍ଧଟାର ଗୋଟାଏ କିଛି ପ୍ରତିକାର କରିବାକୁ ହେବ ।" ସେହି ଦିନ ସନ୍ଧ୍ୟାରେ ପୁଣି ପୌର-ସଭ୍ୟମାନଙ୍କର ଏକ ସଭା ବସିଲା—ତିନି ଜଣ ପାଚିଲା ଦାଢ଼ୀ, ଜଣେ ତରୁଣୀ ।

ତରୁଣୀଟି କହିଲା, "ଅତି ସହଜ କଥା, ଘର ଦ୍ୱାର ପରିଷ୍କାର କରିବା ପାଇଁ ତାକୁ ଖବର ପଠାଇ ଦିଅ । ଗୋଟାଏ ସମୟ ଦିଅ—ଯଦି ଏହା ଭିତରେ—।"

"ଦୂର୍—", ଷ୍ଟିଭେନ୍ସ କହିଲେ, "ଏହା କଣ କେବେ ସମ୍ଭବ, ଜଣେ ମହିଳାକୁ ତା ମୁହଁ ଉପରେ କହିବ ଯେ ତୁମ ଦେହ ଗନ୍ଧାଉଛି !"

ଶେଷକେ ଗଭୀର ରାତିର ଅନ୍ଧକାରରେ ସେହି ଚାରି ଜଣ ସନ୍ତର୍ପଣରେ ଲୁଚି ଲୁଚି ସେହି ଅଟ୍ଟାଳିକାର ଅଢ଼ କନ୍ଧରେ ଚୂନ ଛିଞ୍ଚି ଦେଇ ଆସିଲେ । ମଝିରେ ଥରେ ଉପରର ଏକ ଅନ୍ଧକାର ଝରକାରେ ଆଲୋକ ଜଳି ଉଠିଥିଲା—ନିଶ୍ଚଳ ଏମିଲର ଛାୟା ମୂର୍ତ୍ତି ଝରକାରେ ଦୃଶ୍ୟ ହୋଇଥିଲା, ହସ୍ତ-ପଦ-ମସ୍ତକ ବର୍ଜନ ପାଷାଣ

ପୂର୍ଣ୍ଣିମା ପରି । ଗୋଡ଼ ଟିପି ଟିପି ସେମାନେ ବାହାରି ଆସିଲେ । କେତେ ଦିନ ଭିତରେ ଗନ୍ଧଟା କୁଆଡ଼େ ମିଳେଇଗଲା ।

ସେହି ଦିନ ଠାରୁ ଲୋକମାନେ ପ୍ରକୃତରେ ଏମିଲି ପାଇଁ ଦୁଃଖ ପ୍ରକାଶ କରିବାକୁ ଲାଗିଲେ । ଗ୍ରିୟରସନ ପରିବାରରେ ମସ୍ତିଷ୍କ-ବିକୃତିର ଉଦାହରଣ ଅଛି । କିନ୍ତୁ ଅସଲ କଥା, ସେମାନଙ୍କ ଆଭିଜାତ୍ୟଟା କିଛିଟା ଉତ୍କଟ ଧରଣର । ଆଭିଜାତ୍ୟର ଉଗ୍ରତା ଯୋଗୁଁ କୌଣସି ଯୁବକ କୁମାରୀ ଏମିଲି ନିକଟକୁ ଯାଇ ପାରନ୍ତି ନାହିଁ । ଏମିଲି ଓ ତା ବାପାଙ୍କୁ ମୁଁ ଦୂରରୁ ଦେଖିଛି । ସେମାନଙ୍କୁ ବାସ୍ତବିକ ଜୀବନ୍ତ ମଣିଷ ବୋଲି ଆମ୍ଭେମାନେ କେବେ ହେଲେ ଭାବି ପାରି ନାହୁଁ । ବହୁ ଦିନ ପର୍ଯ୍ୟନ୍ତ ଏକ ମୂକ ଅଭିନୟର ପାଦ ପାଠୀ ପରି ଏମିଲି ଓ ତା ବାପାଙ୍କ ଛବି ଆମ୍ଭମାନଙ୍କର ସ୍ମରଣରେ ଥିଲା— ସାମନା ଦୁଆରବନ୍ଧରେ ସଜ୍ଜିତ ଏମିଲିର ଛିପି ଛିପିକା ଦେହ ଲତା, ତା ଆଡ଼କୁ ପଛ କରି ତା ବାପାଙ୍କ ସ୍ଥୂଳ ମୂର୍ତ୍ତି, ହାତରେ ଘୋଡ଼ା—ଚାବୁକ । ତିରିଶ ବର୍ଷରେ ପାଦ ଦେଇ ବି ଏମିଲି କୁମାରୀ ରହିଗଲା, ଏଥିରେ ମୁଁ ଅବଶ୍ୟ ଠିକ୍ ଖୁସି ହୋଇ ନାହିଁ—ଆଶ୍ୱାସଟା ଟିକିଏ ମେଣ୍ଟି ଥିଲା, କହି ପାରେଁ ।

ତାର ବାପା ମରିଗଲେ । ସମ୍ପତ୍ତି ଭିତରେ ଏମିଲିର ରହିଲା ଖାଲି ଅଟ୍ଟାଳିକାଟି । ଏଥିରେ ଲୋକମାନେ ଖୁସି ହେଲେ—ଏହା ପରେ ସେମାନେ ଏମିଲି ପ୍ରତି କରୁଣା ଦେଖାଇ ପାରିବେ । ସମ୍ପୂର୍ଣ୍ଣ ନିଃସ୍ୱ ହୋଇ ବି ଏତେ କାଳ ପରେ ଏମିଲି ମଣିଷ ବୋଲି ପରିଚିତ ହେବାକୁ ସୁଯୋଗ ପାଇଲା । ଗୋଟାଏ ପେନି(ମୁଦ୍ରା)ର ଆସିବା ଯିବା ସାଙ୍ଗରେ ମଣିଷର ହର୍ଷ ବିଷାଦର ସେହି ଚିରପୁରାତନ ସମ୍ବନ୍ଧ ଏମିଲି ବି ଆଜି ବୁଝି ପାରିବ ।

ଲୋକମାନେ ଶୋକ ଓ ସହାନୁଭୂତି ଜଣାଇବା ପାଇଁ ଆସିବାରୁ, ଏମିଲ ଦୁଆର ମୁହଁରେ ଠିଆ ହୋଇ ସମସ୍ତଙ୍କୁ ଫେରାଇ ଦେଲା, ଆଉ କହିଲା, "ବାବା ତ ମରି ନାହାନ୍ତି !" ଖୁବ୍ କଷ୍ଟରେ ମୃତ ଦେହଟି କବର ଦେବା ପାଇଁ ତାହା ଠାରୁ ଛଡ଼ାଇ ଆଣିବାକୁ ପଡ଼ିଥିଲା ।

ଆମ୍ଭେମାନେ ସେହି ଦିନ ଏମିଲାକୁ ଉନ୍ମାଦ ବୋଲି ସନ୍ଦେହ କରି ନ ଥିଲୁ । ମାତ୍ର ଭାବିଥିଲୁଁ, ଯେଉଁ ଲୋକଟି ତାର ଜୀବନ-ପଥରୁ କେତେ ଯୁବକଙ୍କୁ ଘଉଡ଼ି ଦେଇ ତାର ସବୁ ସୁଖ କାଡ଼ି ନେଇଛି, ତାକୁ ମୃତ୍ୟୁ ପରେ ବି ସେ ଅଟକାଇ ରଖିବାକୁ ଚାହିଁଥିଲା ।

—ତିନି—

ବର୍ଷେ ବିତିଗଲା । ସହର ଭିତରେ ସହରର ରାସ୍ତା ଘାଟ ପକ୍କା କରିବା ପାଇଁ ଚୁକ୍ତିଆଦେଶ ଦିଆଗଲା । ଠିକାଦାରର କଳ କବ୍ଜା ଓ ନିଗ୍ରୋ କୁଲିଙ୍କ ଦ୍ୱାରା ରାସ୍ତାଗୁଡ଼ିକ ବଜ ବଜ ହେବାକୁ ଲାଗିଲା । ଆଉ ସେମାନଙ୍କ ସାଙ୍ଗରେ ଆସିଲା ହୋମାର ବ୍ୟାରନ ନାମରେ ଜଣେ ୟୁଆନ୍ କି [ମାର୍କିନ୍] ଫୋରମ୍ୟାନ ।

ପ୍ରଥମ ଦିନ, ସାନ ସାନ ପିଲାମାନେ ଦଳ ଦଳ ହୋଇ ତାକୁ ଘେରି ଯାଇ ସେ ନିଗ୍ରୋମାନଙ୍କୁ କପରି ଗାଳି ଫଜିତ୍ କରେ, ତାହା ଶୁଣିବା ପାଇଁ ଦୌଡ଼ିଲେ । କିଛିଦିନ ଭିତରେ, ଯେଉଁଠି ହସ, ହୈହୁଲ୍ଲୋଡ଼, ସେଠାରେ ହୋମାର ବ୍ୟାରନ ଉପସ୍ଥିତ ହେଲା । ଏହାର ପରବର୍ତ୍ତୀ ଦୃଶ୍ୟ, ଏକ ରବିବାରର ଅପରାହ୍ନରେ ହଳଦିଆ ଚକର ଗାଡ଼ିଟା ଯୋଡ଼ିଏ ଘୋଡ଼ା ଯୋଚି ରାସ୍ତାକୁ ବାହାରିଲା—ସେଥିରେ ବସିଛନ୍ତି କୁମାରୀ ଏମିଲି ଓ ହୋମାର ବ୍ୟାରନ ।

ପ୍ରଥମେ ଆମ୍ଭେମାନେ ଆନନ୍ଦିତ ହୋଇଥିଲୁଁ, ଯାହା ହେଉ ଏତେ ଦିନେ ଏମିଲି ଗୋଟାଏ କିଛି ପାଇଛି । ଅବଶ୍ୟ ମହିଳାମାନେ କହୁଥିଲେ, "ଗ୍ରିୟୁରସନ ବଂଶର ଝିଅ ଯେ ଜଣେ ମଜୁରିଆ ସାଙ୍ଗରେ ଘର ଦ୍ୱାର କରିବ, ଏହା ମନେ ହେଉ ନାହିଁ ।" ଆଉ ଯେଉଁମାନେ ବୁଢ଼ା ସେମାନଙ୍କର ମତ, ଯେତେ ଦୁଃଖ ହେଉ ପଛକେ ଖାନଦାନ ଲୋକମାନେ ଖାନଦାନକୁ କେବେ ଭୁଲି ଯାଆନ୍ତି ନାହିଁ । ସେମାନେ ଖାଲି କହିଲେ—"ବିଚାରୀ ଏମିଲି !"

ଫୁସ୍‌ଫାସ୍ ଆରମ୍ଭ ହୋଇଯାଏ, "ହଁ ହେ, ସତ ନା—?" "ସେଇଟା ନୁହେଁ ତ ଆଉ କଣ—ଏହା ଛଡ଼ା ଆଉ କଣ ହୋଇ ପାରେ ?"

ସହସା କୁପ୍—କୁପ୍—କୁପ୍ ଶବ୍ଦରେ ରାଜପଥ ମୁଖରିତ କରି ଯୋଡ଼ି ଘୋଡ଼ାଗାଡ଼ିଟା ରବିବାରର ଅପରାହ୍ଣରେ ଗଡ଼ିଯାଏ । ଅପରାହ୍ଣର କିରଣକୁ ବ୍ୟର୍ଥ କରିବା ପାଇଁ ଝରକାର କବାଟଗୁଡ଼ିକ ବନ୍ଦ ଥାଏ । ଭିତରେ ସିଲକ ପୋଷାକର ଖସ୍ ଖସ୍ ଶବ୍ଦ । ଆବାଜ ଶୁଭେ—"ବିଚାରୀ ଏମିଲି !"

କିନ୍ତୁ ଏମିଲିର ମଥା ଉଚ୍ଚ ହେବାକୁ ଲାଗେ— ଆମ ଅପେକ୍ଷା ବି ଉଚ୍ଚ । ମଥା ଉଚ୍ଚ କରି ଶେଷ ଗ୍ରିୟୁରସନ ବଂଶଧର ରୂପେ ସେ ସ୍ୱୀକୃତି ହାସଲ କରି ନେବାକୁ ଚାହେଁ । ସେ ଯେ ସମାଲୋଚନାର ଉପରେ, ଏହା ଭଲ କରି ବଜାଇ ଜାଣି ନେବାକୁ ଚାହେଁ । ସେଇଥି ପାଇଁ ସମାଲୋଚନା କରିବା ଭଳି କାର୍ଯ୍ୟ ତାକୁ ହୁଏତ କରିବାକୁ ପଡ଼ିଥିଲା ।

ଏହାର ବର୍ଷକ ପରେ ଯେଉଁ ଦିନ ସେ ଔଷଧ ଦୋକାନକୁ ବିଷ କିଣିବାକୁ ଯାଇଥିଲା, ସେହି ଦିନ ବି ତା ମଥା ଏମିତି ଉଚ୍ଚ ଥିଲା ।

"ଦୋକାନରେ ସବୁ ଠାରୁ କଡ଼ା ଯେଉଁ ବିଷ ଅଛି, ମୂଷା—ମରା—ବିଷ – ଷ୍ଟ୍ରିକ୍ନାଇନ୍—।"

"ଦୋକାନରେ ସବୁ ଠାରୁ କଡ଼ା ଯେଉଁ ବିଷ ଅଛି, ତାହା—କି ବିଷ ତାହା ଜାଣେ ନାହିଁ ।"

କେତୋଟି ନାମ ଉଚ୍ଚାରଣ କରି ଦୋକାନୀ କହିଲା, "ଏଥିରେ ହାତୀ ପର୍ଯ୍ୟନ୍ତ ମରିଯାଏ—ମାତ୍ର ଆପଣ ଯାହା ଚାହୁଁଛନ୍ତି, ତାହା ହେଉଛି—"

"ଶଙ୍ଖୁଆ ! ଖୁବ୍ କଡ଼ା ହେବ ତ ?"

"ତାହା ତ ହେବ— କିନ୍ତୁ ଆପଣଙ୍କର ଦରକାର ତ— ।"

"ଶଙ୍ଖୁଆ !"

ଦୋକାନୀ ତା ଆଡ଼କୁ ଅନାଇଲା । ଏମିଲ ମଧ୍ୟ ଓଲଟି ତାକୁ ଚାହିଁଲା । ଦୋକାନୀ ବିନୀତ ସ୍ୱରରେ କହିଲା—"କିନ୍ତୁ ଆଇନ ଅଛି, ଆପଣଙ୍କୁ ଜଣାଇବାକୁ ହେବ କେଉଁଥି ପାଇଁ— ।" ଏହାର ଉତ୍ତର ସେ ତତ୍‌କ୍ଷଣାତ୍ ପାଇ ଯାଇଥିଲା, ଏମିଲର ଘୃଣାଭରା ଚକ୍ଷୁର ଅଗ୍ନି ଦୃଷ୍ଟିରେ । ତାପରେ ଦୋକାନରୁ ତାକୁ ଶଙ୍ଖୁଆ ବିଷ ଦେବାକୁ ହୋଇଥିଲା ।

—୪—

ଆମ୍ଭେମାନେ କହିଲୁ, "ସେ ନିଶ୍ଚୟ ଆତ୍ମହତ୍ୟା ।" ତାର କାରଣ ଥିଲା । ପ୍ରଥମେ ଆମ୍ଭେମାନେ କହିଥିଲୁ, କୁମାରୀ ଏମିଲ ହୋମାର ବ୍ୟାରନକୁ ବିବାହ କରିବ । କିନ୍ତୁ ପରେ ଜାଣିବାକୁ ପାଇଲୁ, ହୋମାର ବ୍ୟାରନ ବିବାହ ବିଷୟ ଆଦୌ ଭାବେ ନାହିଁ, ଆଜି କହେ ଯେ ବିବାହ କରିବା ଦଳର ପିଲା ସେ ନୁହେଁ । ତଥାପି

ରବିବାରର ଅପରାହ୍ଣରେ ସେହି ଘୋଡ଼ାଗାଡ଼ି ପୁଣି ଡଗ ଡଗ କରି ଚାଲିଯାଏ । ତା ଭିତରେ ଏମିଲିର ମଥା ଉଚ୍ଚ, ଆଉ ହୋମାରର ମୁଖରେ ସିଗାର, ମଥାରେ ଟୋପି, ଏବଂ ହାତରେ ଲଗାମ, ଚାବୁକ ଓ ହଳଦିଆ ଦସ୍ତାନା । ଏହି ଥର ଆମ୍ଭେମାନେ କଥା କହୁ, "ବିଚାରୀ ଏମିଲି ।"

ସହରର ଯୁବ ସମ୍ପ୍ରଦାୟର ଚକ୍ଷୁ ସମକ୍ଷରେ ଗୋଟିଏ ଦୁର୍ନୀତିର ଦୃଷ୍ଟାନ୍ତ ରହି ଯାଉଛି ଦେଖି, ମାତବାଗୀଶମାନଙ୍କର ମୁଖପାତ୍ର ଜଣେ କୁମାରୀ ଏମିଲିଙ୍କ ସଙ୍ଗେ ସାକ୍ଷାତ କରିବାକୁ ଗଲେ । ସେହି ସାକ୍ଷାତର ଫଳାଫଳ କଣ ହୋଇଥିଲା, ତାହା ବହୁ ଅନୁରୋଧ ସତ୍ତ୍ୱେ ବି ସେ ପ୍ରକାଶ କରି ନ ଥିଲେ । କିନ୍ତୁ ଦ୍ୱିତୀୟ ବାର ଯିବା ପାଇଁ ସେ ଏକବାରେ ସିଧା ସିଧା ଅସ୍ୱୀକାର କଲେ ।

ସେହି ରାତିରେ ତାଙ୍କ ସ୍ତ୍ରୀ ଆଲବାମାକୁ ଖବର ପଠାଇଲେ —ଏମିଲିର ଦୁଇ ଜ୍ଞାତି-ଭଉଣୀକୁ । ଖବର ପାଇ ସେମାନେ ତତ୍‌କ୍ଷଣାତ୍ ଏମିଲିର ଘରକୁ ଚାଲି ଆସିଲେ । ରୁଦ୍ଧ ଶ୍ୱାସରେ ଆମ୍ଭେମାନେ ଅପେକ୍ଷା କରିବାକୁ ଲାଗିଲୁ, କିଣ ହେଉଛି ଦେଖିବା ପାଇଁ—ଆଲବାମାର ଏହି ଦୁଇ ଭଉଣୀ କାଳେ ଆହୁରି କଡ଼ା ଗ୍ରିଅର୍ସନ !

ଦେଖୁଁ ଦେଖୁଁ ଦୁଇଟି ଦିନ ଚାଲିଗଲା । ତୃତୀୟ ଦିନ ଏମିଲି କେତେଗୁଡ଼ିଏ ଟାଇ, କଲର, ଏବଂ ନାଇଟ ସାର୍ଟ ଓ ସୁଟ ( ରାତି ପୋଷାକ) କିଣିଲା—ଆଉ କିଣିଲା ପୁରୁଷର ବ୍ୟବହାର ପାଇଁ ରୁପାର ଟଏଲେଟ ସେଟ—ପ୍ରତ୍ୟେକଟିରେ ନାମ ଖୋଦିତ ହୋଇଛି—ଏଇଚ. ବି. । ଏଥର ଆମ୍ଭେମାନେ କହିଲୁ, ସେମାନେ ବିଭା ହୋଇଛନ୍ତି । ଜଣେ ଦୁଇ ଦିନ ମଧ୍ୟରେ ତା ଭଉଣୀମାନେ ଆଲବାମାକୁ ବାହୁଡ଼ି ଗଲେ । ଏକ ସନ୍ଧ୍ୟାର ଗୋଧୂଳିରେ

ପ୍ରତି ବେଶୀମାନେ ଦେଖିଲେ, ନଗ୍ରୋଟା ହୋମାର ବ୍ୟାରନଙ୍କୁ ରୋଷେଇଘରର ଦରଜା ବାଟେ ଭିତରକୁ ନେଇ ଯାଉଛି ।

ଏହା ଶେଷ —ଏହା ପରେ ହୋମାର ବ୍ୟାରନଙ୍କୁ ଆଉ କେହି ଦେଖି ନାହାନ୍ତି । ଏମିଲଙ୍କୁ ମୁଁ କେତେ ଥର ଦେଖିଛି, ଆଉ ନଗ୍ରୋଟାକୁ ବେଶୀ ଦେଖିଛି, କାରଣ ବଜାରର ଝୁଡ଼ି ହାତରେ ଧରି ସେ ତା ଘର ଭିତରକୁ ଆସିବା-ଯିବା କରୁଥିଲା । କ୍ରମେ କ୍ରମେ ଏମିଲ ଟିକିଏ ଟିକିଏ ମୋଟା ହେବାକୁ ଲାଗିଲା, ଏବଂ କେଶ ଗୁଚ୍ଛରେ ଧଳା ରେଖା ପଡ଼ିଲା । ଧୀରେ ଧୀରେ କଳାର ସଂଖ୍ୟା କମିଯାଇ ଶେଷକୁ ତାର ସବୁ କେଶ ଧଳା ହୋଇ ଘଷା-ଲୁହାର ରଙ୍ଗ ଧାରଣ କଲା । ଶେଷ ଯାଏ ତା କେଶର ସେହି ଚକଚକିଆ ଘଷା-ଲୁହାର ରଙ୍ଗ ଅକ୍ଷୁଣ୍ଣ ଥିଲା ।

ଶେଷ ବେଳକୁ କେତେ ବର୍ଷ ପାଇଁ ତାର ବାହାର ଜଗତ ସହିତ ଏକ କ୍ଷୀଣ ଯୋଗସୂତ୍ର ଘଟିଥିଲା । ସେତେବେଳେ ଚୀନା-ମାଟିରେ ରଙ୍ଗ କରିବା କାମ ଶିଖାଇବା ପାଇଁ ସେ ଗୋଟିଏ କ୍ଲାସ ଖୋଲିଥିଲା । ଶେଷ ଛାତ୍ରଟି ଯେଉଁ ଦିନ ଶେଷ ଥର ପାଇଁ ତା ଦୁଆର ମୁହଁରୁ ବାହାରି ଗଲା, ସେହି ଦିନ ଠାରୁ ଏମିଲ ବାହାର ଜଗତ ଠାରୁ ଚିର ଦିନ ଲାଗି ବିଚ୍ଛିନ୍ନ ହୋଇ ପଡ଼ିଲା ।

ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ସେହି ନଗ୍ରୋଟିକୁ ମୁଁ ଦେଖିଛି । ସେ ହାତରେ ବଜାରର ଝୁଡ଼ି ଧରି ଯିବା-ଆସିବା କରୁଥିଲା । ଦିନକୁ ଦିନ ତାହାର ସବୁ କେଶ ବି ଆସ୍ତେ ଆସ୍ତେ ଧଳା ପଡ଼ିଗଲା ଏବଂ ପିଠି କୁଜା ହୋଇଗଲା । ପ୍ରତି ଡିସେମ୍ବର ମାସରେ ଆମ୍ଭେମାନେ ଖଣ୍ଡିଏ ଲେଖାଏଁ ଟିକସ-ନୋଟିସ ଏମିଲର ନାମରେ ପଠାଇଛୁ, ଏବଂ ତାହା ନିୟମିତ ଭାବରେ ଫେରି ଆସିଛି । କାନ୍ଥର ଠଣାରେ ରଖା ହୋଇଥିବା ଏକ ପ୍ରାଚୀନ

ପ୍ରଶଂକ ପରି, ଏକ ଯୁଗର ବାର୍ତ୍ତା ଅନ୍ୟ ଏକ ଯୁଗକୁ ବହନ କରି ଚଉସ୍ତରି ବର୍ଷ ବୟସରେ ଏମିଲର ଦେହାନ୍ତ ହେଲା । ସେହି ଭାରି ଆଖରୋଟ କାଠର ଖଟ ଉପରେ ଏମିଲର ସମ-ବୟସୀ ଧବଳିମ୍ନି ତକିଆରେ ତା ମଥା ନିଶ୍ଚଳ ହୋଇ ପଡ଼ି ରହିଲା ।

—୫—

ବଜାରରୁ କିଣା ହୋଇଥିବା ଫୁଲର ଗୋଟାଏ ପାହାଡ଼ ଏମିଲର ଦେହ ଉପରେ ଜମା ହୋଇଗଲା । ବୁଢ଼ୀ ଗଳାରେ ଫୁସ୍‌ଫାସ୍ କଥା, ଆଉ ସକୌତୁକ ଚକିତ ଚକ୍ଷୁର ଇତସ୍ତତଃ ଚାହାଣୀରେ ବାୟୁ ମଣ୍ଡଳ ଛମ୍‌ଛମ ହୋଇ ଯାଇଥାଏ । କେହି କେହି ଅତି-ବୃଦ୍ଧ ଲୋକ ଗୋଲ ହୋଇ ଗପ କରୁଥାନ୍ତି । ଯେମିତିକି ଏହି ସେ ଦିନ ଏମିଲି ସେମାନଙ୍କର ନୃତ୍ୟ-ସଙ୍ଗିନୀ ଥିଲା । ବୃଦ୍ଧର ଚକ୍ଷୁରେ ଅତୀତଟା ଦୀର୍ଘ ପଥର ଅପର ପ୍ରାନ୍ତ ପରି କ୍ରମେ କ୍ରମେ ସରୁ ହୋଇ ମିଳାଇ ଯାଏ ନାହିଁ – ହୋଇ ରହିଥାଏ ଏକ ଚିର-ବସନ୍ତର ସବୁଜ ପ୍ରାନ୍ତର, ଯାହାକୁ କୌଣସି ଶୀତ କେବେ ହେଲେ ସ୍ପର୍ଶ କରି ନ ପାରେ ।

ଉପର ତାଲାରେ ଏମିଲର ଗୋଟିଏ କକ୍ଷ ଥିଲା । ଏହି ଚାଳିଶ ବର୍ଷ ଭିତରେ ସେହି କକ୍ଷ ଅନ୍ୟ କେହି ଖୋଲି ନାହାନ୍ତି । ସୁନ୍ଦରରୂପେ ଏମିଲର କବର ହୋଇଗଲା । ଦୁଆର ଭାଙ୍ଗି ସେହି ଘର ଆମ୍ଭେମାନେ ଖୋଲିଲୁ । ଆମ୍ଭେମାନେ ଘର ଭିତରେ ପଶିଲୁ । ଦମକା ପବନରେ ଟିକିଏ ଧୂଳି ଉଡ଼ିଲା ।

ଯେମିତି ଗୋଟିଏ ସୁସଜ୍ଜିତ ବାସର ଘରେ କବରର ଅଦୃଶ୍ୟ ଭ୍ରୂକୁଟି । ତାର ଥମ ଥମ ଛାୟା ରଙ୍ଗ-ଛାଡ଼-ଯାଇଥିବା ଗୋଲାପୀ ପର୍ଦ୍ଦା ଉପରେ ଯାଇ ପଡ଼ିଛି । ଗୋଲାପୀ ଅବଗୁଣ୍ଠନ ଆବୃତ

ପ୍ରାଚୀରରେ ଓ ଡ୍ରେସିଂ ଟେବୁଲ ଉପରେ କଳଙ୍କି ଧରି ଯାଇଥିବା ରୂପା ଟଏଲେଟ ସେଟରେ — କଳଙ୍କି-ଲଗା ଟଏଲେଟ ସେଟରେ ଖୋଦିତ ନାମଗୁଡ଼ିକ ଲିଭି ଅସ୍ପଷ୍ଟ ହୋଇ ଯାଇଛି । ଟେବୁଲ ଉପରେ ଗୋଟିଏ କଲର, ଗୋଟିଏ ଟାଇ ଏବଂ ଏକ୍ଷଣି ଯେମିତି କେହି ଖୋଲି ରଖିଛି । ତା ଉପରେ ପରସ୍ତେ ଧୂଳି ଜମା ହୋଇ ଯାଇଛି । ଚୌକି ଉପରେ ସନ୍ତର୍ପଣରେ ଚଉତା ହୋଇଥିବା ସୁଟଟା ଝୁଲୁଛି । ଯୋଡ଼ାଏ ଜୋତା ଓ ମୋଜା ଚଟାଣରେ ପଡ଼ି ରହିଛି ।

ଆଉ ମଣିଷଟି —ସେ ବିଛଣାରେ ଶୋଇଛି ।

ସେହି ମାଂସହୀନ ମୁଖର ବିଭତ୍ସ ହସ ମୁଁ ଅନେକ କ୍ଷଣ ଯାଏ ଆନ ମନରେ ଚାହିଁ ଦେଖିଲି । ଆଲିଙ୍ଗନର ଭଙ୍ଗୀରେ ସେ ଶୋଇଥିଲା । କିନ୍ତୁ ପ୍ରେମ —ତାହା ଠାରୁ ଶକ୍ତିଶାଳୀ ହେଉଛି ମୃତ୍ୟୁ । ରାତି ପୋଷାକ ଭିତରେ ତା ଦେହର ସମସ୍ତ ଅଂଶ କ୍ରମେ କ୍ରମେ ଗଳିଯାଇ ଓ କ୍ଷୟ ହୋଇ ବିଛଣାରେ ମିଶି ଯାଇଛି । ତା ମୁଥାର ତକିଆ ଉପରେ ତଳ ତଳ ହୋଇ ଅସୀମ ଧୈର୍ଯ୍ୟରେ ବସି ଯାଇଛି ଏକ ସ୍ଥାୟୀ ଧୂଳିର ସ୍ତର ।

ତାପରେ ଆମ୍ଭେମାନେ ଆଉରି ମଧ୍ୟ ଦେଖିଲୁ, ଦ୍ୱିତୀୟ ତକିଆଟି ଉପରେ ଗଭୀର ହୋଇ ବସି-ଯାଇଥିବା ଗୋଟିଏ ମଥାର ଚିହ୍ନ । ଜଣେ ହାତ ମାରି ସେଠାରୁ କଣ ଯେମିତି ଉଠାଇ ନେଲା । ନଇଁ ପଡ଼ି ଆମ୍ଭେମାନେ ଦେଖିଲୁ —କେତେ ଗୁଚ୍ଛ ସୁଦୀର୍ଘ କେଶ — ଧଳା, ଚକଚକିଆ ଘଷା ଲୁହା ।

— ଉଇଲିୟମ ଫକନାର

# ଧଳା କୋକିଲ

ପାହାଡ଼ ତଳେ ଜମି କିଣା ହେଲା, ଘର ତିଆରି ହେଲା ଏବଂ ତାପରେ ସେମାନେ ବ୍ୟସ୍ତ ହେଲେ । ଏଥର ବଗିଚାଟିଏ କରିବା କଥା । ଖୁବ୍ ମଥା ଖର୍ଚ୍ଚ କରି ମେଘା ବଗିଚାର ନକ୍ସା ତିଆରି କଲା । ସବୁବେଳେ ମୂଳିଆମାନଙ୍କ ପଛରେ ଲାଗି ଲାଗି, ସେ ସେମାନଙ୍କ ଦ୍ୱାରା ପ୍ରୟୋଜନସ୍ପୁ କାମ ତକ କରାଇ ନେଲା । ଏମିତିକି କେଉଁଠି କେଉଁ ଗଛ ଲଗାଇବାକୁ ହେବ, ସେ ସେମାନଙ୍କୁ ଟିକି ନଖି ସବୁ ଦେଖାଇ ଦେଲା । ବଗିଚାର ଗୋଟିଏ କୋଣରେ ରହିବ ଶ୍ରେଷ୍ଠ ପୋଖରୀଟିଏ । ପକ୍ଷୀସବୁ ପାଣି ପିଇବା ପାଇଁ ସେହି ପୋଖରୀକୁ ଆସିବେ । ପୋଖରୀର ଆକାରଟା ଠିକ୍ ଗୋଟିଏ ପାନ ପତ୍ର ଭଳି ହେବ । ମେଘା ତାହା ବି ସେମାନଙ୍କୁ ଆଙ୍କି ଦେଖାଇ ଦେଲା ।

ହ୍ୟାରି ମୁଗ୍ଧ ଦୃଷ୍ଟିରେ ମେଘାର କାର୍ଯ୍ୟ କଳାପ ଲକ୍ଷ୍ୟ କରେ ଏବଂ କହେ, "ସୁନ୍ଦରୀ ନାରୀକୁ ଏପରି ସୁନିପୁଣା ହେବା କ୍ୱଚିତ୍ ଦେଖାଯାଏ ।"

ମେଘା ଏହା ଶୁଣି ଖୁସି ହୁଏ, ଆଉ କହେ, "ତୁମ ମନ ମୁତାବକ କୌଣସି ଗଛ ଲଗାଇବାକୁ ଚାହଁ ତ ତାହା କରିପାର ।"

"ନା, ତୁମ ବଗିଚାରେ ହାତ ଦେବାକୁ ମୁଁ ଚାହେଁ ନାହିଁ । ବଗିଚାଟି ଖାଲି ତୁମ ମନୋମତ ହେଲେ ହିଁ ମୁଁ ଖୁସି ହେବି ।"

ହ୍ୟାରିର କଥା ଶୁଣି ମେରି ଯେମିତି ତାକୁ ଆହୁରି ଭଲ ପାଇବାକୁ ବସେ । ଅବଶ୍ୟ ବଗିଚାଟା ମେରିର ନିଜର । ନିଜ ଯୋଜନା ଅନୁସାରେ ସେ ବଗିଚାଟିକୁ ବିଶେଷ ରୂପ ରଙ୍ଗରେ ସଜାଇ ରଖିବାକୁ ଚାହେ । ସେଠାରେ ହ୍ୟାରିର ହସ୍ତକ୍ଷେପ ସେ ଆଦୌ ପସନ୍ଦ କରେ ନାହିଁ ।

ସବୁଜ ଜମିଟି ନାନା ପ୍ରକାର ଗଛ, ଲତା ଓ ଫୁଲରେ ବଚସିତ ହୋଇଯାଏ । ମେରି ବଗିଚା ଭିତରେ ଘୁରି ବୁଲେ, ଆଉ ଚାରିଆଡ଼େ ଗର୍ବିତ ଦୃଷ୍ଟି ନିକ୍ଷେପ କରେ । ଆପଣା ହାତ ତିଆରି ବଗିଚାରେ ହିଁ ତାର ସ୍ୱପ୍ନ ଯେମିତି ସାର୍ଥକ ହୋଇ ଯାଇଛି ।

ଦିନେ ହ୍ୟାରି ଅଫିସରୁ ଫେରି ଆସିବା ପରେ, ମେରି ତାକୁ ଝରକା କଡ଼କୁ ଟାଣି ନେଇ ବଗିଚା ଦେଖାଇ କହିଲା, "ଦେଖିଲଣି ମୋ ବଗିଚା—ଠିକ୍ ଯେମିତି ମୁଁ ଇଚ୍ଛା କରିଥିଲି ।"

"ସୁନ୍ଦର, ଅପୂର୍ବ !" ହ୍ୟାରି ମନ୍ତବ୍ୟ କଲା ।

ମେରି କହିଲା, "କିନ୍ତୁ କଥାଟା କଣ ଜାଣ ନା, ବଗିଚାଟି ସଂପୂର୍ଣ୍ଣ କରି ପକାଇଛି ବୋଲି ମୋ ମନ ଖରାପ ହେଉଛି । ଅବଶ୍ୟ ଆନନ୍ଦ ବି ମୋର ଯଥେଷ୍ଟ ହେଉଛି । ଏହି ବଗିଚାଟିକୁ ଆଉ ବଦଳାଇବି ନାହିଁ । ଏହା ବରାବର ଠିକ୍ ଏଇମିତି ରହିଥିବ । ଯଦି କୌଣସି ଲତା, ଗଛ ବା ଛୋଟ ଗଛର ବୁଦାଗୁଡ଼ିକ ଶୁଖିଯାଏ, ପୁଣି ଠିକ୍ ସେହି ଭଳି ଲଗାଇଦେବି । ଏତେ ପରିଶ୍ରମ କରି ମୁଁ ଏହି ବଗିଚାଟି ତିଆରି କରିଛି ଯେ ମୋର ମନେ ହୁଏ, ବଗିଚା ଓ

ମୁଁ ଏକ ଅଭିନ୍ନ ସତ୍ତା । ଗୋଟିଏ ଫୁଲ ଛିଣ୍ଡାଇ ପକାଇଲେ କିମ୍ବା ଗୋଟିଏ ଗଛ ଉପାଡ଼ି ପକାଇଲେ ହିଁ ଭାବିବାକୁ ହେବ ଯେ ମୋର ଅଙ୍ଗଚ୍ଛେଦ କରି ହେଲା ।"

ହ୍ୟାରି ହାତ ବଢ଼ାଇ ମେରିକୁ ସ୍ପର୍ଶ କରିବାକୁ ଯାଉଥିଲା, ମାତ୍ର ହାତ ଟାଣି ନେଇ, କହିଲା, "ମୁଁ ତୁମକୁ କେତେ ଭଲ ପାଏଁ, ଜାଣ ମେରି । କିନ୍ତୁ ମଝିରେ ମଝିରେ ମୋର ଭାରି ଭୟ ହୁଏ ।"

ମେରି ହସି ହସି କହିଲା, "ତୁମେ ! ତୁମେ ମୋତେ ଭୟ କର ! ତୁମର ମୋତେ ଭୟ କରିବାର କି କାରଣବା ଥାଇପାରେ ?"

"ମୋର ମନେ ହୁଏ, ତୁମେ ଏକ ପ୍ରକାର ଅସ୍ପୃଶ୍ୟ । ତୁମ ଭିତରେ ଯେମିତି କଣ ଗୋଟାଏ ଅଛି, ଯାହା ମୋ ନିକଟରେ ଦୁର୍ବୋଧ୍ୟ । ତୁମେ ଯେମିତି ଠିକ୍ ତୁମ ବଗିଚାଟି ଭଳି— ଅପରିବର୍ତ୍ତନୀୟ । ତୁମ ବଗିଚାରେ ଘୂରି ବୁଲିବାକୁ ମୋତେ ଡର ଲାଗେ, କାଳେ କେତେବେଳେ କୌଣସି ଗଛ ନଷ୍ଟ କରି ପକାଇବ ।"

ମେରି ଆନନ୍ଦରେ କହି ପକାଇଲା, "ତୁମେ ତ ମୋତେ ଏହି ବଗିଚାଟି ଉପହାର ଦେଇଛ । ତୁମେ ନ ଦେଇଥିଲେ, ବଗିଚା ତ ଆଜି ହୋଇ ପାରି ନ ଥାନ୍ତା ।"

ମେରି ହ୍ୟାରିକୁ ଚୁମ୍ବନ କଲା ।

ଘରେ ଅତିଥି ସମାଗମ ହେଲେ ମେରି ପାଇଁ ହ୍ୟାରିର ଛାତି ଗର୍ବରେ ଫୁଲିଯାଏ । ମେରିକୁ କେଡ଼େ ସୁନ୍ଦର ଶାନ୍ତ ଓ ନିଖୁଣ ମନେ ହୁଏ । ଫୁଲଦାନୀରେ ମେରି କି ଚମତ୍କାର ଫୁଲ ତୋଡ଼ା ସଜାଇ ରଖେ ! ମେରି ତା ବଗିଚା ବିଷୟରେ ଇତସ୍ତତଃ

ନମ୍ର ସ୍ୱରରେ କଥା କହେ, ଯେପରିକି ସେ ତା ନିଜ ବନ୍ଧୁମାନଙ୍କ ସହିତ କଥା କହୁଛି । କେତେ କେତେ ବେଳେ ମେଘା ଅତିଥିମାନଙ୍କୁ ବଗିଚା ଦେଖାଇବାକୁ ନେଇଯାଏ । ଗୋଟିଏ ଫୁଲ୍‌ଟି ସିଆ ଗଛ ଦେଖାଇ ଦେଇ ମେଘା ହୁଏତ କହି ପକାଏ, "ଏହି ଗଛଟି ଶେଷକୁ ଯେ ଏମିତି ଭଲ ହେବ, ମୋର ଧାରଣା ନ ଥିଲା ।" ସେ ଯେମିତି କୌଣସି ମଣିଷର କଥା କହୁଛି । "ଅନେକ ଶାଗ-ସବଜି ଏହା ପେଟରେ ଯାଇଛି", ମେଘା ମୃଦୁ ହସି ହସି କହେ ।

ବଗିଚାରେ କାମ କରିବା ସମୟରେ ମେଘା ଆନନ୍ଦରେ ଉଚ୍ଛୁଳି ପଡ଼େ । ସେ ଖଣ୍ଡିଏ ଉଜ୍ଜ୍ୱଳ ଛିଟ ହାତକଟା ଫ୍ରକ ପିନ୍ଧି ଥାଏ । କେତେବେଳେ ସେ ମଥାରେ ବନେଟ ପିନ୍ଧି ଥାଏ । ହାତ ଢାଙ୍କିବା ପାଇଁ ସେ ପୁରା ଦସ୍ତାନା ଲଗାଇ ଥାଏ । ବଗିଚାରେ କାମ କରିବା ସମୟରେ ହ୍ୟାରୀର ମେଘାକୁ ଅପୂର୍ବ ମନେ ହୁଏ । ଯେତେବେଳେ ମେଘା ଗଛଗୁଡ଼ାକର ମୂଳରେ ଲମ୍ବା ଗ୍ଲାସରେ ପଚା ଲତାପତ୍ର ନେଇ ରଖି ଦିଏ, ସେତେବେଳେ ହ୍ୟାରୀର ତାକୁ ଅଦ୍‌ଭୁତ ଭାବରେ ଭଲ ଲାଗେ ।

କିନ୍ତୁ କୌଣସି ପକ୍ଷୀ ବଗିଚାକୁ ଖେଳିବାକୁ ଆସୁ ନାହାଁନ୍ତି ଦେଖି, ମେଘାର ଦୁଃଖ ହୁଏ । "ସେମାନେ କାହିଁକି ପୋଖରୀକୁ ପାଣି ପିଇବାକୁ ଆସୁ ନାହାନ୍ତି !" ମେଘା ତା ସ୍ୱାମୀଙ୍କ ନିକଟରେ ଅନୁଯୋଗ କରେ, "ବୁଝି ପାରୁ ନାହିଁ, ପକ୍ଷୀଗୁଡ଼ାକ କାହିଁକି ମୋ ବଗିଚାକୁ ଆସୁ ନାହାନ୍ତି । ହୁଏତ ଏଯାଏ ସେମାନେ ଏହାର ସନ୍ଧାନ ପାଇ ନାହାନ୍ତି । କିମ୍ବା, ହୁଏତ ଆଖପାଖରେ କୌଣସି ବିରାଡ଼ି ଜଗି ବସି ରହିଛି; ସେହି ଭୟରେ ସେମାନେ ଏଠାକୁ ଆସି ପାରୁ ନାହାନ୍ତି ।" ମେଘାର ମୁଖ ମଳିନ ପଡ଼ି ଯାଏ । ସେ ଅତି ଜୋରରେ ନିଶ୍ୱାସ ଛାଡ଼େ । ସେ ଓଠରେ ଓଠ ଚାପି ଧରି କହେ, "ଯଦି

କୌଣସି ବଗଡ଼ ରହି ଥାଆନ୍ତି, ତାହାହେଲେ ମୁଁ ବଗିଚାରେ ବିଷାକ୍ତ ମାଛ ରଖିଦେବି । ମୋ ପକ୍ଷୀମାନଙ୍କୁ ଖାଇ ପକାଇବା ପାଇଁ ମୁଁ ତ ବଗଡ଼ ପୋଷି ପାରିବି ନାହିଁ ।”

ସେତେବେଳେ ହ୍ୟାରି ତାକୁ ସାନ୍ତ୍ୱନା ଦେଇ କହେ, “ଶୁଣ, ମୁଁ ଗୋଟାଏ ଏୟାର-ଗାନ୍ କିଣି ଆଣି ରଖିଥିବି, ବଗଡ଼ ଆସିଲେ ହିଁ ଗୁଳି କରିବି । ସେ ଅବଶ୍ୟ ଏକବାରେ ମରିଯିବ ନାହିଁ, କିନ୍ତୁ ଉଚିତ୍ ଶିକ୍ଷା ପାଇବ ।”

ମେରି ଶାନ୍ତ ଭାବରେ ସମର୍ଥନ କରେ, “ହଁ, ତାହା ହୋଇ ପାରେ ।”

ଜ୍ୟୋତ୍ସ୍ନା ରାତିରେ ଦୁଇ ଜଣ ଝରକା କତିରେ ଆସି ବସନ୍ତି ଏବଂ ଚନ୍ଦ୍ର ଉଜ୍ଜ୍ୱଳ ଚନ୍ଦ୍ରରେ ଧୋଇ ଯାଉଥିବା ବଗିଚା ଆଡ଼କୁ ଚାହିଁ ରହି ଥାଆନ୍ତି । ବଗିଚାର ଶାନ୍ତ ସମାହିତ ମୂର୍ତ୍ତି ପଛରେ ହିଁ ପାହାଡ଼ର ବନ୍ୟଭୂମି ଆରମ୍ଭ ହୋଇଛି । ଜଙ୍ଗଲଖଣ୍ଡି କଳା ପାହାଡ଼ ଆଡ଼କୁ ଅନାଇ ମେରି ଭାବେ, “ସେମାନେ ହିଁ ଶତ୍ରୁ, ସେହିମାନେ ହିଁ ମୋ ପକ୍ଷୀମାନଙ୍କୁ ଆସିବାକୁ ଦେଉ ନାହାନ୍ତି ।” ସେ ପୁଣି ହ୍ୟାରିକୁ କହେ, “ଏହା ଭିତରେ ନିଶ୍ଚୟ କୌଣସି ରହସ୍ୟ ଅଛି, ହ୍ୟାରି ! ମୁଁ ତାହା ଠିକ୍ ବୁଝାଇ କହି ପାରିବ ନାହିଁ ।” ଅବଶେଷରେ ମେରି ହସି ପକାଏ ।

ସେତେବେଳେ ହ୍ୟାରି କହେ, “ମୋର ଇଚ୍ଛା ହୁଏ, ତୁମ ମନର ଡ଼ାଙ୍କୁଣୀଟା ଥରେ ଖୋଲି ଦେଖନ୍ତି, କଣ ତାହା ଭିତରେ ଅଛି । ତୁମ ମନ ଯେମିତି ସବୁବେଳେ ଛୁଟିଆଡ଼େ ଦୂର ବୁଲିବାକୁ ଚାହେଁ । ଅଥଚ ଗୋଟାଏ ଶାନ୍ତ ଓ ସ୍ଥିତ ତୁମ ମନକୁ କେଉଁଠି ଅସୀମ ସଂଯତ କରି ରଖିଛି ଏବଂ ଅମ୍ଳ ବିଶ୍ୱାସ ଦାନ କରିଛି ।”

ମେଘ ହ୍ୟାରିର କୋଳରେ ବସିବାକୁ ଚାହେ । "ନା, ଠିକ୍ ସେତେଟା ନୁହେଁ । ତୁମେ ଠିକ୍ ଜାଣ ନାହିଁ । ନ ଜାଣି ତୁମେ ଅବଶ୍ୟ ଭଲ କରିଛ ।"

ରାତେ ଘରରେ ହ୍ୟାରି ଖବର କାଗଜ ପଢ଼ୁଥିଲା । ମେଘ ତା କଡ଼ରେ ଚୁପ୍ ହୋଇ ବସିଥିଲା । ହଠାତ୍ ମେଘ ଜୋରରେ ପଡ଼ି କହିଲା, "ବଗିଚାରେ କଣ୍ଢେଇଟା ପକାଇ ଦେଇ ଆସିଛୁ । ଥଣ୍ଡା ଲାଗି ତାର ଦାନ୍ତ ଓଲଟି ଯିବ ନାହିଁ ତ !"

ହ୍ୟାରି କାଗଜ ତଳକୁ ନୁଆଁଇ କହିଲା, "ମୁଁ ଯାଇ ନେଇ ଆସିଲେ ହେବ ନାହିଁ ?"

"ନା, ତୁମେ ପାରିବ ନାହିଁ । ମୁଁ ନିଜେ ଯାଉଛି," କହି ମେଘ ବଗିଚାକୁ ଚାଲିଗଲା । କଣ୍ଢେଇଟା ହାତରେ ଉଠାଇ ନେଇ ସେ ଶୋଇବା ଘରର ଝରକା ଆଡ଼କୁ ଅନାଇ ରହିଲା । ସେତେବେଳେ ହ୍ୟାରି କାଗଜଟା ପଢ଼ୁଥିଲା । ଘର ଭିତରଟା ନାଟକର କୌଣସି ଦୃଶ୍ୟ ପରି ମେଘର ଆଖି ଆଗରେ ପ୍ରତିଭାତ ହେଲା । ଘରର ଆସବାବ ଓ ଅନ୍ୟାନ୍ୟ ଜିନିଷପତ୍ର ସୁନ୍ଦର ରୂପେ ସଜ୍ଜିତ ହୋଇଅଛି । ଗୋଟିଏ କୋଣରେ ଚୂଲିରେ ନିଆଁ ଜଳୁଛି । ଯେଉଁ ବଡ଼ ଚୌକିଟିରେ ମେଘ ଏତେ ବେଳ ଯାଏ ବସିଥିଲା, ତାହା ବି ପରିଷ୍କାର ଦେଖା ଯାଉଛି । ମେଘ ଭାବିଲା, "ଆଚ୍ଛା, ଯଦି ସେ ଚାଲି ଆସି ନ ଥାଆନ୍ତା, ତାହା ହେଲେ ଠିକ୍ ଏହି ମୁହୂର୍ତ୍ତରେ ଚୌକିଟି ଉପରେ ବସି ସେ କଣ କରୁ ଥାଆନ୍ତା ? କଣ ଭାବୁ ଥାଆନ୍ତା ? ଯଦି ମନେ କରାଯାଏ, ମେଘ ନିଜକୁ ଚୌକି ଉପରେ ବସାଇ ରଖି ତାର ସୂକ୍ଷ୍ମ ଅସ୍ତିତ୍ୱ ଟିକକ କେବଳ ବଗିଚାକୁ ନେଇ ଆସିଛୁ !" ସେହି ମୁହୂର୍ତ୍ତରେ ମେଘ ଯେମିତି ନିଜକୁ ଘର ଭିତରେ ସେହି ଚୌକିଟି ଉପରେ ଦେଖି ପାରିଲା ।

ତାର ସୁନ୍ଦର ବାହୁ ଦୁଇଟି ଓ ହାତର ଚକ୍‌ଚକ୍ ଆଙ୍ଗୁଳିଗୁଡ଼ିକ ଚୌକିର ହାତ ଉପରେ ଅଳସ ଭାବରେ ରଖା ହୋଇଛି । ତାର କୋମଳ ମୁଖର ପାଖଟି କେବଳ ଦେଖା ଯାଉଛି—ନିଆଁ ର ଚୁଲି ଉପରେ ତାର ଦୃଷ୍ଟି ନିବଦ୍ଧ । ସେତେବେଳେ ସେ କଣ ଭାବୁଛି ? ତା' ମନ ଭିତରେ କଣ ଚିନ୍ତା ଆସିବା କରୁଛି ? ସେ କଣ ଉଠି ପଡ଼ିବ ? ନା, ସେହିପରି ଭାବରେ ଚୌକିରେ ବସି ରହିଥିବ । ତାର ଜାମାଟା କାନ୍ଧ କଡ଼ରେ ଟିକିଏ ବେଶୀ କଟା ହୋଇଛି, ତେଣୁ ହାତ ଦୁଇଟି ଦୁଇ ପାଖରେ ଝୁଲି ଯାଉଛି । ତଥାପି ସେ କି ସୁନ୍ଦର ! କିପରି ଉଦାସୀନ, ଅଥଚ କେତେ ସ୍ୱଚ୍ଛ ଓ ସୁସଂଯତ ! ତାର ବଦନ ମଣ୍ଡଳରେ ବୋଧହୁଏ ଟିକିଏ ହସ ଖେଳି ଯାଉଛି । ସେ ନିଶ୍ଚୟ କିଛି ମନୋରମ ଚିନ୍ତା କରୁଛି ।

ହଠାତ୍ ମେଘ ନିଜକୁ ଫେରି ପାଇଲା ! ଏତେ ବେଳ ଯାଏ ସେ କଣ କରୁଥିଲା ? ଉତ୍‌ଫୁଲ୍ଲ ହୋଇଯାଇ ମେଘ ଭାବିବାକୁ ଲାଗିଲା, "ମୋ ଭିତରେ ଦୁଇଟା 'ମୁଁ' ଅଛି—ଦୁଇଟିର ସତ୍ତା ଭିନ୍ନ । ନିଜକୁ ନିଜେ ଦେଖି ପାରିବା ଭଳି । ଆଶ୍ଚର୍ଯ୍ୟ, ଯଦି ମୁଁ ମୋ ଇଚ୍ଛା ଅନୁସାରେ ନିଜକୁ ଏହି ଭାବରେ ଦେଖି ପାରୁ ଥାଆନ୍ତି । ଅନ୍ୟ ଲୋକମାନେ ମୋତେ ଯେମିତି ଦେଖି ପାରନ୍ତି, ମୁଁ ବି ଠିକ୍ ସେମିତି ମୋତେ ଦେଖି ପାରିଲି । ଏହି ଘଟଣାଟି ହ୍ୟାରିକୁ କହିବାକୁ ହେବ ।" ତତ୍‌କ୍ଷଣାତ୍ ମେଘ ଯେମିତି ପୁଣି ନିଜକୁ ଦେଖି ପାରିଲା, ହ୍ୟାରିକୁ ସେହି ସବୁ କଥା ସେ କେମିତି ଭାବରେ ବୁଝାଇ କହୁଛି । କିନ୍ତୁ ହ୍ୟାରି ଯେମିତି ଏକ ମୂକ ବ୍ୟଥାତୁର ଦୃଷ୍ଟିରେ ଖବର କାଗଜ ଆଡ଼କୁ ଅନାଇ ରହିଛି । ମେଘର କଥା ବୁଝିବାକୁ ସେ ପ୍ରାଣପଣେ ଚେଷ୍ଟା କରୁଛି, କିନ୍ତୁ ମଥାରେ କିଛି ହେଲେ ପଶୁ ନାହିଁ । ମେଘ ଜାଣେ, ଘଟଣାଟି ଶୁଣି ହ୍ୟାରି ପ୍ରଶ୍ନ ଉପରେ ପ୍ରଶ୍ନ

ପକାଉଥିବ, ନାନା ଢଙ୍ଗରୁ ତାହା ଚଳେଇ ଦେଖିବାକୁ ଚେଷ୍ଟା କରିବ ଏବଂ ଶେଷରେ ଘଣ୍ଟଣାଟିର ସବୁ ମାଧୁର୍ଯ୍ୟ ଉଡ଼େଇ ଯିବ । ବିଚାରୀ କଣ କରିବ ? ସେ ସହଜରେ କିଛି ବୁଝି ପାରିଲା ନାହିଁ !

ବେଳ ଗଡ଼ି ଯିବାରୁ, ସୂର୍ଯ୍ୟ ଯେତେବେଳେ ପାହାଡ଼ର ସେପଟକୁ ଢଳି ପଡ଼ନ୍ତି, ସେତେବେଳେ ମେରୀର ବଗିଚାରେ ବୁଲିବାର ସମୟ ହୁଏ । ଏହି ସମୟଟି ମେରୀ ନିକଟକୁ ଯେମିତି ଏକ ଶୁଭ ବାର୍ତ୍ତା ବହନ କରି ଆଣେ । ଧୀରେ ଧୀରେ ନରମ ପାଦ ପକାଇ ବଗିଚା ପାର ହୋଇ ଓକ୍ ଗଛଗୁଡ଼ିକର ଆଡ଼ୁଆଳରେ ଖଣ୍ଡିଏ ହାଲୁକା ଚୌକି ପକାଇ ମେରୀ ବସି ପଡ଼େ । ସେଠାରୁ ପୋଖରୀ-କୂଳରେ ପକ୍ଷୀମାନଙ୍କର ଜଳପାନ ସେ ଦେଖିବାକୁ ପାଏ । ତାର ସମସ୍ତ ସତ୍ତା ଦ୍ୱାରା ସେ ବଗିଚାଟିକୁ ଅନୁଭବ କରେ । ଅଫିସରୁ ଫେରି ଟିକିଏ ବିଶ୍ରାମ କରି ସାରି ହ୍ୟାରୀ ଯେତେବେଳେ ଖବର କାଗଜ ଖୋଲି ବସେ, ସେତେବେଳେ ମେରୀ ବଗିଚାରେ ବୁଲି ଫେରି ଆସେ । ସେତେବେଳେ ତା ଆଖିରେ ଯେମିତି ତାରାର ସ୍ୱପ୍ନ ମିଶି ରହିଥାଏ । ବର୍ତ୍ତମାନ ମେରୀ ଏକା ରହିବାକୁ ଚାହେ ।

ପବନରେ ଗ୍ରୀଷ୍ମର ଗନ୍ଧ ଲାଗିଛି । ସେୟାଇ ଘରର କାର୍ଯ୍ୟ ପାଚକାକୁ ବୁଝାଇ ଦେଇ, ଶୋଇବା ଘରେ ଆଲୁଅ ଜଳାଇ ଦେଇ ମେରୀ ବଗିଚାକୁ ଚାଲିଯାଏ । ସୂର୍ଯ୍ୟ ପାହାଡ଼ର ଆଡ଼ୁଆଳରେ ଅଦୃଶ୍ୟ ହୋଇ ଗଲେଣି । ଓକ୍-ବଣରେ ଆସନ୍ନ ସନ୍ଧ୍ୟାର ମାଳାଭ ଛାୟା ଆସି ପଡ଼ୁଛି । ମେରୀର ମନେ ହୁଏ, ପରୀମାନେ ତା ବଗିଚାରେ ଆବିର୍ଭୂତ ହୋଇଛନ୍ତି । ଅଭିସାରର ଆନନ୍ଦରେ ସେମାନେ ବିଗ ବିଦଗରେ ରଙ୍ଗ ବିସ୍ତାରି ଦେଉଛନ୍ତି । ପତଳା କରି କଟା ହୋଇଥିବା ଲନ୍‌ଟି ସିଞ୍ଚିତ ଜଳ-କଣାରେ ସବୁଜ, ସତେଜ । ସିନାରେସ୍ୟା ଗୁଛଗୁଡ଼ିକର ବର୍ଣ୍ଣଛଟା ପବନ ଦେହରେ ଲାଗୁଛି ।

ଫ୍ୟୁସିପ୍ସା ଗଛଗୁଡ଼ିକ ନୂଆ ପତ୍ର ଓ କଢ଼ରେ ସଜ୍ଜିତ ହୋଇ ଗଲେଣି । ଲ୍ଲାପ୍ଲୁତ ପ୍ରସ୍ଫୁଟିତ ଫୁଲଗୁଡ଼ିକ ନର୍ତ୍ତକୀର ଘାଗରା ପରି ଝଲମଲ କରୁଛି । ଏହି ସମୟରେ ଗୋଟିଏ ଚମତ୍କାର ଘଟଣା ଘଟିଲା । ଝାଙ୍କିଏ କୋକିଳ ଆସି ପୋଖରୀ ପାଠରେ ବସିଲେ । ସେମାନଙ୍କ ଭିତରୁ ବରଫ ପରି ଧଳା ରଙ୍ଗର ଗୋଟିଏ କୋକିଳ ବାହାରି ଆସିଲା । ଆନନ୍ଦରେ ମେରୀର କଣ୍ଠ କମ୍ପି ଉଠିଲା । ନିଶ୍ୱାସ ବନ୍ଦ କରି ମେରୀ ଚାହିଁ ଦେଖିଲା । ଅନ୍ୟାନ୍ୟ କୋକିଳମାନଙ୍କ ଭିତରୁ ବାହାରି ଆସି ଧଳା କୋକିଳଟି ଧୀରେ ଧୀରେ ପୋଖରୀର ଆର ପାରିକୁ ଚାଲିଗଲା । ଚାରିଆଡ଼କୁ ଚାହିଁ ଇତସ୍ତତଃ ଭଙ୍ଗୀରେ କୋକିଳଟି ପାଣିରେ ତା ଥଣ୍ଟ ଲଗାଇଲା ।

“କୋକିଳ ନୁହେଁ, ସୁନ୍ଦରୀ କୋକିଳା—ଠିକ୍ ମୋରି ପରି”, ମେରୀ ଭାବିବାକୁ ଲାଗିଲା । “ମୋ ଅନ୍ତରର ସମଗ୍ର ମାଧୁର୍ଯ୍ୟ ଯେନ କୋକିଳଟି ଯେମିତି ଶୁଭ୍ର-ଶୁଚି ହୋଇଅଛି । କୋକିଳମାନଙ୍କର ରାଣୀ । ମୋ ଜୀବନରେ ଯାହା କିଛି ସୁନ୍ଦର, ସବୁ ଯେମିତି ଏହି ସୁନ୍ଦରୀ କୋକିଳା ଭିତରେ ପ୍ରସ୍ଫୁଟିତ ହୋଇ ପଡ଼ୁଛି ।”

କୋକିଳାଟି ପାଣିରୁ ଥଣ୍ଟ ଉଠାଇ ମଥାଟା ପଛ ଆଡ଼କୁ ବଙ୍କାଇ ପାଣି ଢୋକିଲା । କେତେ ସ୍ମୃତି ମେରୀର ମନରେ ଅସ୍ପଷ୍ଟ ଭାବରେ ଭାସିଗଲା । ମେରୀ ବ୍ୟଥା ପାଇଲା, ଚିର କାଳର କୌଣସି ବ୍ୟଥା ।

ଗୋଟାଏ ପାଖରେ ଡେଣା ମେଲାଇ ଧଳା କୋକିଳଟି ତା ଥଣ୍ଟରେ ପରଗୁଡ଼ିକ ସଜାଡ଼ିବାକୁ ଲାଗିଲା । ଏହା ଦେଖି ମେରୀ ଭାବିଲା, “ଏହି ତ ପ୍ରକୃତ ମୁଁ; ମୋରି ସୁନ୍ଦର ପବିତ୍ର ସତ୍ତା—ମୋ ହୃଦୟର କେନ୍ଦ୍ର ।”

କ୍ରମେ କ୍ରମେ ମଳାଭ ସନ୍ଧ୍ୟା ଧୂସର ହୋଇ ଆସେ । ଫ୍ୟୁସିଆ ଗଛର ପୁଷ୍ପିତ ଫୁଲ ଗୁଚ୍ଛ ଅନ୍ଧକାର ବକ୍ଷରେ ଦୀପ-ଶିଖା ପରି ଜଳିବାକୁ ଲାଗନ୍ତି । ଗୋଟିଏ ଧୂସର ଛାୟା ଧୀରେ ଧୀରେ ବୁଦା ଭିତରୁ ବାହାରି ଆସେ । ମେଘା ଚମକି ପଡ଼େ । ତାର ଓଠ ଦୁଇଟି ଈଷତ୍ କମ୍ପିତ ହୋଇଯାଏ । ତାର ସର୍ବାଙ୍ଗ ଭୟରେ ଶୀତଳ ଉଠେ । ଗୋଟିଏ ଧୂସର ରଙ୍ଗର ବଗଡ଼ି ଠିକ୍ ମୃତ୍ୟୁ ପରି ବୁଦା ଉହାଡ଼ରୁ ବାହାରି ପଡ଼େ । ଆତଙ୍କିତ ଦେହରେ ମେଘା ନିଷ୍ପଲକ ଦୃଷ୍ଟିରେ ଚାହିଁ ରହେ । ହାତ ଦୁଇଟି ସେ ଗଳା ପାଖକୁ ଆଣି ଜାବୁଡ଼ି ଧରେ । ତାପରେ ହଠାତ୍ ସମସ୍ତ ଜଡ଼ତା ଦୂର କରି ସେ ଚିତ୍କାର କରେ । ଧଳା କୋକଳଟି ତତ୍‌କ୍ଷଣାତ୍ ଡେଣା ଟିଟି ଶବ୍ଦ କରି ଉଡ଼ି ଚାଲିଯାଏ । ଏଣେ ବଗଡ଼ିଟି ମଧ୍ୟ ବୁଦା ଭିତରେ ଅଦୃଶ୍ୟ ହୋଇଯାଏ । ଭୟ ଓ ଆଶଙ୍କାରେ ମେଘା ବିକାରଗ୍ରସ୍ତଙ୍କ ପରି ଆର୍ତ୍ତନାଦ କରେ । ତାହା ଶୁଣି ହ୍ୟାରି ବଗିଚାକୁ ଦୌଡ଼ି ଆସି ପଚାରେ —"କଣ ହେଲା ମେଘା, କଣ ହେଲା—ଏମିତି କାହିଁକି ହେଉଛ ତୁମେ ?"

ହ୍ୟାରିର ସ୍ପର୍ଶରେ ମେଘା ଆତଙ୍କିତ ହୋଇ ପଡ଼େ । ଖୁବ ହନ୍ତସନ୍ତ ହୋଇ ମେଘା କାନ୍ଦିବାକୁ ଲାଗେ । ମେଘାକୁ କାନ୍ଧରେ ପକାଇ ଘରକୁ ନେଇ ଆସି ହ୍ୟାରି ତାକୁ ବିଛଣାରେ ଶୁଆଇ ଦିଏ । ବ୍ୟଥିତ କଣ୍ଠରେ ହ୍ୟାରି ତାକୁ ପଚାରେ, "କଣ ହୋଇଛି, କୁହନା—କାହିଁକି ତୁମେ ଡରିଲ

"ବଗଡ଼ି ଆସିଥିଲା", ଆତଙ୍କିତ ପରି ମେଘା କାନ୍ଦିବାକୁ ଲାଗେ । "ଗୋଟାଏ ବଗଡ଼ି ପକ୍ଷୀମାନଙ୍କୁ ଆକ୍ରମଣ କରିବାକୁ ଆସିଥିଲା । ହ୍ୟାରି, ତୁମେ ଆଜି ବଗିଚାରେ ବିଷ ରଖି ଦେଇ ଆସ, ଆଜି ରାତିରେ ।"

"ସୁନାଝଟା ପରା, ତୁମେ ଟିକିଏ ଚୁପ୍ ହୋଇ ଶୋଇ ପଡ଼, ତୁମର ଦେହ ଖରାପ ।"

"ନା, ନା,—ତୁମେ କୁହ, ଆଜ ବିଷ ରଖି ଦେଇ ଆସିବ ତ ।" ମେଗି ହ୍ୟାରିର ଆଖି ଆଡ଼କୁ ଅନାଏ । ହ୍ୟାରିର ଆଖି ଦୁଇଟିରେ ବିଦ୍ରୋହର ନିଆଁ ଜଳୁଥାଏ । "କୁହ, ତୁମେ ବଚନ ଦିଅ—" ମେଗି ପୁଣି କହେ ।

"ଶୁଣ, ବିଷ ରଖିବା ବିପଜ୍ଜନକ । ଯଦି କୁକୁରଗୁଡ଼ାକ ତାହା ଖାଇ ଦିଅନ୍ତି ।"

"ନା, ନା, ମୋ ବଗିଚାରେ କୌଣସି ଜାନୁଆରକୁ ମୁଁ ପଶିବାକୁ ଦେବାକୁ ଚାହେଁ ନାହିଁ ।"

"ଆଚ୍ଛା ଶୁଣ, ଗୋଟିଏ କାମ କଲେ ଚଳିବ—କାଲି ସକାଳେ ଏୟାର-ଗାନ୍‌ଟାରେ ମୁଁ ବିରାଡ଼ିକୁ ଉଚିତ ଶିକ୍ଷା ଦେବି । ତାହାହେଲେ ସେ ଆଉ କେବେ ତୁମ ବଗିଚାରେ ଗୋଡ଼ ଦେବ ନାହିଁ ।"

ହ୍ୟାରି ଏହା ପ୍ରଥମେ ମେଗିର ଇଚ୍ଛା ବିରୁଦ୍ଧରେ ତାର ମତ ଜଣାଇଲା । ମେଗି ବୁଝି ପାରିଲା ନାହିଁ, କେଉଁ ଉପାୟରେ ସେ ହ୍ୟାରିକୁ ପରାସ୍ତ କରିବ । ମେଗିର ମଥା ଧରିଲା । ସେ ଅସ୍ପଷ୍ଟ ସ୍ୱରରେ କହିଲା, "ଜାଣ, ଆଜ ଗୋଟିଏ ଧଳା କୋକିଳ ଆସିଥିଲା ?"

"କୋକିଳ ? ପାରା ନୁହେଁ ତ ?"

ମେଗି ଜାଣେ, କୌଣସି କଥା ସୁନ୍ଦରକୁ ସ୍ୱୀକାର କରିବା ଭଳି ଧୃଷ୍ଟ ଅନୁଭୂତି ହ୍ୟାରିର ନାହିଁ । ତେଣୁ ସେ ବିଷୟଟି ନଗଣ୍ୟ କୁତ୍ସିତ ବୋଲି ମନେ କରିବ ।

“କହୁଛୁପରା, କୋକିଳ”, ମେରୀ ପାଟି କରି କହିଲା । “ମୁଁ ଏକବାରେ ମୋ ସାମନାରେ ଦେଖିଛି—ଗୋଟିଏ ଧଳା ମାଈ କୋକିଳ ।”

ହ୍ୟାରି କହିଲା, “ଖୁବ୍ ମଜା ତ ! କୋକିଳ ଧଳା ହୁଏ, ଏହାତ ମୁଁ କେବେ ଶୁଣି ନାହିଁ । ଅଚ୍ଛା, ଦେଖିବ ସେ କେମିତିକା ।”

ମେରୀର ମଥା ଆହୁରି ବେଶୀ ବଥାଇବାକୁ ଲାଗିଲା । ବିକାରଗ୍ରସ୍ତଙ୍କ ପରି ସେ ପୁଣି ଚିତ୍କାର କଲା —“ତୁମେ କହୁଛି ଜାଣ ନାହିଁ । ମୁଁ—ମୁଁ ହିଁ ସେହି ଧଳା କୋକିଳ—ତୁମ୍ଭମାନଙ୍କର ଧରା ଛୁଆଁର ବାହାରେ । ତୁମ୍ଭେମାନେ ବାହାରୁ ତାକୁ କଦାପି ଦେଖି ପାରିବ ନାହିଁ ।” ବୁଝିବାକୁ ଚେଷ୍ଟା କରନ୍ତେ, ହ୍ୟାରୀର ମୁଖ ମଣ୍ଡଳରେ କେତୋଟି ରେଖା ପଡ଼ିଗଲା । “ତୁମେ କଣ ବୁଝି ପାରୁ ନାହଁ,” ମେରୀ କହିବାକୁ ଲାଗିଲା, “ବିରାଡ଼ିଟା ମୋତେ ଖାଇବାକୁ ଆସିଥିଲା—ସେଥିପାଇଁ ବିଷ ଦେଇ ମୁଁ ତାକୁ ମାରି ପକାଇବାକୁ ଚାହେଁ ।” ହ୍ୟାରୀର ମୁଖର ଚେହେରା ଦେଖି ମେରୀ ହତାଶ ହୋଇଗଲା—“ନା, ହ୍ୟାରୀ କୌଣସି ମତେ ବୁଝିବ ନାହିଁ—ତାର ବୁଝିବାର କ୍ଷମତା ନାହିଁ—କାହିଁକି ସେ ତାକୁ ମିଛଟାରେ କହିବାକୁ ଗଲା ।”

ହ୍ୟାରୀ ତାକୁ ଆଶ୍ୱାସନା ଦେଲା, “ମୁଁ ଘଡ଼ିରେ ଏଲାର୍ମ ଦେଇ ରଖିଥିବି । କାଲି ଭୋର ବେଳେ ଉଠି ପ୍ରଥମେ ବିରାଡ଼ିଟାକୁ ଠିକ୍ ଶିକ୍ଷା ଦେବି ।”

ତା ପର ଦିନ ସକାଳେ ଘଡ଼ିର ଏଲାର୍ମରେ ମେରୀର ନିଦ ଭାଙ୍ଗିଗଲା । ତା ଘର ଭିତରଟା ସେତେବେଳେ ବି ଅନ୍ଧକାର । ବିଛଣାରେ ଶୋଇ ରହି ମେରୀ ବୁଝି ପାରିଲା, ହ୍ୟାରୀ ପୋଷାକ ପିନ୍ଧୁଛି । ପାଦ ଟିପି ଟିପି ହ୍ୟାରୀ ବାହାରିଗଲା । ତାର ହାତରେ

ଏପ୍ରାର-ଗାନଟା । ବଗିଚାର ଗୋଟିଏ କୋଣରେ ଓଦା ଘାସ ଉପରେ ପେଟେଇ ଶୋଇ ରହି ହ୍ୟାରୀ ଅପେକ୍ଷା କରିବାକୁ ଲାଗିଲା ।

ହାଲୁକା ଆଲୋକରେ ବଗିଚା କ୍ରମେ କ୍ରମେ ପୂରିଗଲା । କୋକିଳ ପକ୍ଷୀଗୁଡ଼ିକ ଏକା ସାଙ୍ଗରେ ଯାନ୍ତ୍ରିକ ଶବ୍ଦ କରି କରି ପୋଖରୀ କୂଳରେ ଆସି ବସିଲେ । ଧଳା କୋକିଳଟି ଦଳ ଛଡ଼ା ହୋଇ ଧୀରେ ଧୀରେ ପୋଖରୀର ଅପର ପାଖକୁ ଆସି ପାଣିରେ ଥଣ୍ଟ ବୁଡ଼ାଇଲା । ଥରେ ପାଣି ଟାଣି ନେଇ ପକ୍ଷୀଟା ମଥା ଟେକ ହ୍ୟାରୀ ଆଡ଼କୁ ଅନାଇଲା । ହ୍ୟାରୀର ବନ୍ଧୁକରୁ ସ୍ୱର ଶବ୍ଦରେ ଗୁଳି ବାହାରି ଆସିଲା । ଧଳା କୋକିଳଟି ମୁହୂର୍ତ୍ତେ ଛଟପଟ ହୋଇ ଘାସ ଉପରେ ମରବରେ ପଡ଼ି ରହିଲା ।

ହ୍ୟାରୀ ପକ୍ଷୀଟିକୁ ତା ହାତରେ ଉଠାଇ ନେଇ ପରୀକ୍ଷା କରିବାକୁ ଲଗିଲା । ଠିକ୍ ତାର ଆଖି ତଳେ ଗୁଳିଟା ଯାଇ ବସିଛି । ଫୁସ୍‌ଫୁସା ଗଛଗୁଡ଼ିକ ପାଖକୁ ଆସି ହ୍ୟାରୀ ମଲା ପକ୍ଷୀଟିକୁ ପାହାଡ଼ର ଜଙ୍ଗଲ ଭିତରକୁ ଫୋପାଡ଼ି ଦେଲା । କିନ୍ତୁ ପର ମୁହୂର୍ତ୍ତରେ ଦୌଡ଼ି ଯାଇ ସେ ଜଙ୍ଗଲ ଭିତରୁ କୋକିଳଟିକୁ ଖୋଜି ବାହାର କଲା ଏବଂ ପାହାଡ଼ ଉପରକୁ ନେଇ ଯାଇ ଝଡ଼ିଲା ପତ୍ରର ସ୍ତୂପ ଭିତରେ ତାକୁ କବର ଦେଇଦେଲା ।

ଦୁଆର ପାଖରେ ହ୍ୟାରୀର ପଦ-ଶବ୍ଦ ଶୁଣି ମେରୀ କହି ପକାଇଲା – "ବଦ୍‌ମାଶଟାକୁ ମାରିଦେଲ ନା ?"

"ହଁ, ଏମିତ ମାଡ଼ ଖାଇଛି ଯେ ସେ ଆଉ କେବେ ଏଠାକୁ ଆସିବ ନାହିଁ," ଦୁଆର କଣରେ ଠିଆ ହୋଇ ହ୍ୟାରୀ କହିଲା ।

"ଆଉ, ବଗୁଡ଼ିଟାକୁ ମାରି ପକାଇଛ ତ, ତାହାହେଲେ ହେଲା ।"

କ୍ଷଣକରେ ତା ଶୋଇବା ଘରକୁ ଯାଇ ହ୍ୟାରୀ ଖଣ୍ଡିଏ ଚୌକିରେ ଧପ୍ କରି ବସି ପଡ଼ିଲା । ଝରକା ବାଟେ ରୌଦ୍ରୋଜ୍ଜ୍ୱଳ ବଗିଚାଟି ଦେଖାଯାଏ । ଓକ୍ ଗଛର ମଥାଗୁଡ଼ିକ ସୂର୍ଯ୍ୟ କିର-ଣରେ ଝଲମଲ କରୁଥାଏ । "କି ପାଷଣ୍ଡ ମୁଁ ! ମେରୀର ଏତେ ଆଦରର ଧନ, ମୁଁ ତାକୁ ମାରି ପକାଇଲି !" ଦୁଇ ହାତରେ ମଥା ଚାପି ଧରି ହ୍ୟାରୀ ତଳକୁ ମୁହଁ ପୋତି ବସି ରହିଲା । ଅସ୍ଫୁଟ ସ୍ୱରରେ ସେ କହିବାକୁ ଲାଗିଲା, "ମୁଁ ଏକା । ହାୟ ଭଗବାନ, ମୋର କେହି ନାହାନ୍ତି !"

— ଜନ ଷ୍ଟେଇନବେକ

# ଯୁଦ୍ଧର ମୂଲ୍ୟ

ସର୍ଜୋଙ୍କୁ ପାହାଡ଼ର ଚୂଡ଼ାଟା ଭଲ ଲାଗିଲା ନାହିଁ । ଏହାକୁ ଦେଖି ତାର ମନେ ହେଲା, ଯେମିତି ପୃଥିବୀର ମସୃଣ ଶରୀରରେ ଗୋଟାଏ ବଥ ବାହାରିଛି । କିନ୍ତୁ ସେତେବେଳେ ଏହି ଚୂଡ଼ାଟି ଛଡ଼ା ତାର ଆଉ କୌଣସି ଉପାୟ ନ ଥିଲା । ସ୍ୱୟଂଚାଳିତ ଭାରୀ ରାଇଫଲଟା କାନ୍ଧରେ ପକାଇ ସେହି ଚୂଡ଼ାଟିକୁ ଲକ୍ଷ୍ୟ କରି ତାକୁ ଘୋଡ଼ା ଦଉଡ଼ାଇବାକୁ ହୋଇଥିଲା । ଘୋଡ଼ାଟା ଉଠାଣିରେ ଚଢ଼ି ଚଢ଼ି ଧଇଁସଇଁ ହେଉଥିଲା । ତାର ଦୁଇ ପାଖରେ ଦୁଇଟା ଥଳି ଝୁଲୁଥିଲା । ଗୋଟାକରେ ରହିଥିଲା ହାତବୋମା, ଆଉ ଆରଟିରେ ରାଇଫଲର ଅଂଶ ଗୁଡ଼ାକ । ସ୍ୱୟଂଚାଳିତ କମାଣଟା ବସାଇବା ଲାଗି ସର୍ଜୋଙ୍କୁ ସମୟ ଦେବା ପାଇଁ ଜୋୟାକୁଇନ ଓ ଇଗନାସିଓ ସେତେବେଳେ ରହି ରହି ପାଳି କରି ଥରେ ଥରେ ଗୁଳି ଫୁଟାଉଥାନ୍ତି, ଆଉ ପଛକୁ ଧାଇଁ ଯାଉଥାନ୍ତି ।

ସେତେବେଳେ ଚାରିଆଡ଼େ ତୁଷାର ପଡୁଥାଏ । ଘୋଡ଼ାଟିର ଦେହରେ ଗୁଳି ଲାଗିଥିଲା । ତାହା ବି ପ୍ରାୟ ଘଣ୍ଟାଏ ଆଗରୁ ହେବ । ଥଳି ଦୁଇଟା କାନ୍ଧରେ ପକାଇ ଏବଂ ତା ଉପରକୁ ଘୋଡ଼ାର ଲଗାମଟା ଟେକି ଦେଇ, କୌଣସି ପ୍ରକାରେ ଟାଣି ଟୁଣି ଓ ଧଇଁସଇଁ ହୋଇ ସର୍ଜୋ ଉପରକୁ ଉଠିବାକୁ ଲାଗିଲା । ସେତେବେଳକୁ ସେ

ପ୍ରାୟ ଚୂଡ଼ାଟାରେ ପହଞ୍ଚି ଗଲଣି । ଶତ୍ରୁ ପକ୍ଷର ଗୁଳିଗୁଡ଼ାକ ଉଡ଼ି ଉଡ଼ି କୁଆ ପଥର ଭଳି ଉପରୁ ଝଡ଼ି ପଡ଼ୁଥିଲା ଏବଂ ପଥରରେ ଧକ୍କା ଖାଇ ଆହତ କୁକୁରଙ୍କ ପରି ଗଁ ଗଁ ହେଉଥିଲା । ଏଥର ସେ ଆସି ଠିକ୍ ଦୁଇଟା ପଥରର ମଝି ଜାଗାରେ ପହଞ୍ଚିଗଲା । ଏଇଟା ହିଁ ତାର ଗନ୍ତବ୍ୟ ସ୍ଥାନ । ଟିକଏ ଉଡ଼ିଯାଇ, ଆହତ ଘୋଡ଼ାଟିର କେଶର ଗୁଚ୍ଛକୁ ମୁଠାଇ ଧରି ଅତ୍ୟନ୍ତ ମମତାପୂର୍ଣ୍ଣ ହୃଦୟରେ ସର୍ଜ୍ଜୋ ନିଜର ସୁଦକ୍ଷ ହାତରେ ତାର ଦୁଇ ଆଖିର ମଝି ଜାଗାକୁ ଗୁଳି ଚଳାଇଲା । ଘୋଡ଼ାଟା କଣ୍ଟୁଡ଼ି ହୋଇ ତଳେ ପଡ଼ି ଯିବାରୁ ପଥର ଦୁଇଟାର ଫାଙ୍କ ବୁଜିଗଲା, ଆଉ ଘୋଡ଼ାଟିର ପିଠି ଉପରେ ସ୍ୱୟଂ ଚାଳିତ କମାଣ୍ଟାର ନଳୀ ବସାଇ ସର୍ଜ୍ଜୋ ଗୁଳି ଚଳାଇବା ଆରମ୍ଭ କଲା । ନଳୀଟା ଆସ୍ତେ ଆସ୍ତେ ଗରମ ହୋଇଗଲା । ଏଥର ତା ଭିତରୁ ଚମଡ଼ା ପୋଡ଼ି ଯିବାର ଗନ୍ଧ ବାହାରିଲା । ସେ ଆଡ଼େ ବରଫ ପଡ଼ୁଥାଏ, କି ଶୀତ ! ତାର ସାଙ୍ଗ ସାଥୀମାନେ ଚୂଡ଼ା ଉପରକୁ ଉଠି ଆସିବା ଯାଏ, ସର୍ଜ୍ଜୋ ସ୍ୱୟଂ ଚାଳିତ ରାଇଫଲଟା ଚଳାଇବାକୁ ଲାଗିଲା । ତାପରେ ସେ ବନ୍ଦ କରିଦେଲା । ଶେଷ ସମସ୍ତ ଟିକକ ପାଇଁ ଏଥର ଗୁଳି ବଞ୍ଚାଇବା'କୁ ହେବ ।

ଯେଉଁ ପାଞ୍ଚ ଜଣ ପାହାଡ଼ର ଚୂଡ଼ାରେ ପହଞ୍ଚି ପାରିଥିଲେ, ସେମାନଙ୍କ ଭିତରୁ ତିନି ଜଣ ଆହତ ହୋଇଥିଲେ । ସର୍ଜ୍ଜୋର ପାଦ-ଆଙ୍ଗୁଳିରେ ଓ ବାମ ହାତର ଦୁଇ ଜାଗାରେ ଗୁଳି ବାଜିଥିଲା । ତୃଷାରେ ତାର ତଣ୍ଟି ଶୁଖି ଯାଉଥିଲା । କି ଯେ ଯନ୍ତ୍ରଣା ! ଶତ୍ରୁ ପକ୍ଷରୁ ଆସନ୍ନ ଉଡ଼ାଜାହାଜ ଆକ୍ରମଣର କଥା ଚିନ୍ତା କଲା କ୍ଷଣି, ଦେଶୀ ସ୍ପେନ ଭାଷାରେ ଗୋଟାଏ ପ୍ରବଚନ ତାର ମନେ ପଡ଼ିଗଲା—ମୃତ୍ୟୁକୁ ଆସପିରିନ୍ ଭଳି ସହଜ ଭାବରେ ତୁମକୁ ଗ୍ରହଣ କରିବାକୁ ହେବ ।

ସେହି ପାଞ୍ଚ ଜଣ ପାହାଡ଼ର ଚୂଡ଼ା ଉପରେ ପାଞ୍ଚଟା କୋଣରେ ଘାଟି ଜଗି ବସିଗଲେ, ଯେମିତି ଶତ୍ରୁର ଆଗମନର ସମସ୍ତ ପଥ ଅବରୁଦ୍ଧ ହୋଇଯାଏ । ଜୋସ୍ୟାକୁଇନର ବୟସ ମୋଟେ ଅଠର ବର୍ଷ । ତା ମୁଣ୍ଡ ଉପରେ ଗୋଟାଏ ଲୌହ ଟୋପି । ସେହି ଲୌହ ଟୋପିରେ ମାଟି ପୂରାଇ ଆଣି ସେ ତା ସାମନା ପଥର ସ୍ତୂପ ଉପରେ ଢାଳୁଥିଲା । ତାର ଉଦ୍ଦେଶ୍ୟ, ସେ ସେଥିରେ ଗୋଟାଏ କାନ୍ଥ ତିଆରି କରିବ ଏବଂ ତାର ପଛରେ ରହି ଗୁଳି ଚଳାଇବ ।

"ଘାଟି ଜଗି ବସି ରହି ପାରିଲେ ହିଁ ଆମର ବିଜୟ !" ଜୋସ୍ୟାକୁଇନ ହଠାତ୍ କହି ପକାଇଲା । ତା ଗଳାରେ ତୃଷାର ରୁକ୍ଷତା ।

ବନ୍ଧୁପାର୍ଶ୍ୱକ ଗଳାରେ ଜଣେ ଜବାବ ଦେଲା, "ବିଜୟ !"

"ଆଣ୍ଠୁ ଉପରେ ବଞ୍ଚି ରହିବା ଅପେକ୍ଷା ବରଂ ଦୁଇ ଗୋଡ଼ରେ ଠିଆ ହୋଇ ମରିବା ଭଲ ।" ଜୋସ୍ୟାକୁଇନ ଆଉ ଗୋଟାଏ ପ୍ରବଚନ ଆବୃତ୍ତି କଲା ।

"ଆଣ୍ଠୁ ଉପରେ କେଉଁଠି ?" ଆଉ ଜଣେ ବିଦ୍ରୂପ କଲା । "ଆମେ ତ କୋଚଆ ପରି ଗୁନ୍ତରେ ଘୁଷୁରୁଛୁଁ ।"

ସର୍ଡୋ ପାହାଡ଼ ତଳକୁ ଅନାଇ ରହିଥିଲା । ସେଠାରୁ ଶତ୍ରୁ ପକ୍ଷର ଜଣେ ଘୋଡ଼ସବାର ଗୁଳି ଚଳାଉଥିଲା । ସେତେବେଳେ ତାର ସେ ସବୁ କଥା ଶୁଣିବା ଭଳି ମନର ଅବସ୍ଥା ନ ଥିଲା । କିନ୍ତୁ ଶତ୍ରୁମାନେ ଏବେ ବି କାହିଁକି ଟ୍ରେଞ୍ଚ-ମର୍ଟାର ଚଳାଉ ନାହାନ୍ତି ? ବୋଧହୁଏ ସେମାନେ ଲା-ଗ୍ରାଞ୍ଜାରୁ ଆସି ପହଞ୍ଚି ନାହାନ୍ତି । ଟିକିଏ ଆଗରୁ ଗୋଟାଏ ଉଡ଼ାଜାହାଜ ସେମାନଙ୍କ ମଥା ଉପର

ଦେଇ ଉଡ଼ି ଯାଉଛନ୍ତି । ସେମାନଙ୍କୁ ନିଶ୍ଚୟ ଦେଖି ଯାଉଛନ୍ତି । ବୋଧହୁଏ ସେମାନେ ବୋମାରୁ ପଠାଇବେ । କିନ୍ତୁ ଟ୍ରେଞ୍ଚ-ମର୍ଟାର ଚଳାଇଲେ ତ ହୁଅନ୍ତା । ତାହାହେଲେ ସେମାନଙ୍କୁ ଯନ୍ତା ଭିତରେ ମୂଷାଙ୍କ ପରି ମରିବାକୁ ପଡ଼ନ୍ତା । ନା, ପାହାଡ଼ଟା ଠିକ୍ ଗୋଟାଏ ବଥ, ଆଜି ସେହି କେତେ ଜଣ ହେଉଛନ୍ତି ବଥର ପୂଜ ।

ତଳେ ଦେଖା ଯାଉଛି, ଶତ୍ରୁ ପକ୍ଷର କେତୋଟି ଶବ ପଡ଼ି ରହିଛି । ଚକମା-ଧାସ୍ତ ଅଳ୍ପ ବୟସ୍କ ଫାସିଷ୍ଟ ଅଫିସରଟିର ଓଲଟି ପଡ଼ିଥିବା ଦେହଟା ଏକ୍ଷଣି ବି ଚିହ୍ନି ହେଉଛି । ସର୍ଜୋର ସ୍ବର କଠିନ ମୁଖରେ ଗୋଟାଏ ହସ ଫୁଟି ଉଠିଲା । ବୋକା ଗୁଡ଼ାକ କ'ଣ ଭାବିଥିଲେ ଯେ ତଳୁ ଆକ୍ରମଣ କରି ସେମାନଙ୍କୁ ହଟାଇ-ଦେବେ ? ବୋଧହୁଏ ନୂଆ ଧରଣର ସ୍ବୟଂ ଚାଳିତ ଅସ୍ତ୍ର ଗୁଡ଼ିକ ହାତରେ ଧରି ସେମାନଙ୍କର ଅତିରିକ୍ତ ଆତ୍ମ ବିଶ୍ୱାସ ଜାତ ହୋଇ-ଥିଲା ।

ସର୍ଜୋ ନିକଟରୁ ହଠାତ୍ ଗୋଟାଏ ଗାଳିଫଲ ଗର୍ଜନ କଲା ।

"କାର୍ତୁଜ ନଷ୍ଟ କର ନାହିଁ ।" ସର୍ଜୋ ଗୋଟାଏ ଧମକ ଦେଲା ।

"ଗୋଟାଏ ଲୋକ ସେହି ପଥର ମୁଣ୍ଡି ଆଟା ଉପରେ କୁଦି ପଡ଼ି ପଳାଇ ଯିବାକୁ ଚେଷ୍ଟା କରୁଥିଲା । ସେମାନେ ଜାଣନ୍ତି, ଆମେ ଏଠାରେ ମରୁଛୁଁ ।"

"ସେମାନେ ସମୁଦାୟ ପାହାଡ଼ଟା ଘେରାଉ କରି ରହିଛନ୍ତି !" ଆଉ ଜଣେ ଜବାବ ଦେଲା ।

ଜୋୟାକୁଇନ କହିଲା, "ଯଦି ଖାଲି ଅନ୍ଧାର ହେବା ଯାଏ ଆମେ ତିଷ୍ଠି ରହିପାରନ୍ତେ !"

"ଆଚ୍ଛା, ଏ ଯେମିତି ଠିକ୍ ସେହି କଥା ଭଳି—ଇଷ୍ଟାର ବେଳେ ଯଦି କ୍ରିଷ୍ଟମାସ ହୁଅନ୍ତା !" ଜଣେ ବିଦ୍ରୂପ କରି କହିଲା ।

"ସେମାନେ କଣ ପୁଣି ଆକ୍ରମଣ କରିବେ ବୋଲି ବୋଧ ହେଉଛି ?" ଜଣେ ସର୍ଜେଣ୍ଟକୁ ପଚାରିଲା ।

"ଯଦି ଉଡ଼ାଜାହାଜ ଆସିବାକୁ ବିଳମ୍ବ ହୁଏ, ତାହାହେଲେ ନିଶ୍ଚୟ ।"

"ସେମାନଙ୍କର ଅନେକ ଉଡ଼ାଜାହାଜ ଅଛି । ମୁଁ କାଲି ଦେଖିଛି । ଅନେକ, ଅନେକ !" ସେତେବେଳେ ସର୍ଜେଣ୍ଟ ତାର ଭଲ ହାତଟା ଉପରେ ଭର ଦେଇ ବିଶ୍ରାମ ନେଉଥିଲା । ତାର ଆଖି ମେଘହୀନ ଆକାଶଟା ଉପରେ ନିବଦ୍ଧ ଥିଲା । ମଲା ଘୋଡ଼ାଟାର ଦେହ ଉପରେ ସେ ଆଉଜି ପଡ଼ିଲା । ତାର କ୍ଷତଗୁଡ଼ିକ ଜ୍ୱାଳା କରୁଥିଲା, ଯନ୍ତ୍ରଣା ବି ଯଥେଷ୍ଟ ହେଉଥିଲା । ହଲଚଲ ହେବାକୁ ସେ କଷ୍ଟ ବୋଧ କରୁଥିଲା ।

"କଣ ହେଲା ?" ତା ପାଖ ଲୋକଟି ତାକୁ ପଚାରିଲା ।

"କିଛି ନୁହେଁ । ଖାଲି ଟିକଏ ବିଶ୍ରାମ କରୁଛି ।"

"ହେଉ, ଶୋଇପଡ଼ ।"

ଠିକ୍ ସେତିକି ବେଳେ ପାହାଡ଼ ତଳୁ ଗୋଟାଏ ଗଳା ଶୁଣାଗଲା ।

"ଶୁଣରେ ହତଭାଗା, ଆମ ଉଡ଼ାଜାହାଜ ଗୁଡ଼ାକ ଆସି ତୁମମାନଙ୍କୁ ଉଡ଼ାଇଦେବା ଆଗରୁ ଏବେ ବି ସମୟ ଅଛି, ଧରା ଦିଅ ।"

କଣ କହୁଛି ଲୋକଟା ?" ସର୍ଜେଣ୍ଟ ପଚାରିଲା ।

ଜୋୟାକୁଇନ ଠାରୁ ଶୁଣି ସେ ପୁଣି ତାର ସ୍ୱୟଂ ଚାଳିତ କମାଣ ପାଖରେ ଯାଇ ଡରିଯାଇ ବସିଲା ।

"ଉଡ଼ାଜାହାଜ ନା ମୁଣ୍ଡ ଗଣ୍ଡି ! ଜବାବ ଦେବାର ଦରକାର ନାହିଁ । ଯଦି ସେମାନେ ପୁଣି ଆକ୍ରମଣ କରନ୍ତେ, ତାହାହେଲେ ଦେଖାଇ ଦଅନ୍ତୁ ।"

"ସେମାନଙ୍କୁ ଗାଳି ଫଜିତ କଲେ, ହୁଏତ ସେମାନେ ବାହାରି ପାରନ୍ତି ।" ଜଣେ କହିଲା ।

"ଦରକାର ନାହିଁ । ଥାଉ । ବଡ଼ ପିସ୍ତଲଟା ଏ ଆଡ଼କୁ ଦଅ ତ ।"

ପିସ୍ତଲଟା ନେଇ ସର୍ଜେଣ୍ଟ ମଲା ଘୋଡ଼ାଟାକୁ ଲକ୍ଷ୍ୟ କରି ଦୁଇ ତିନି ଥର ଗୁଳି ଫୁଟାଇଲା ଏବଂ ତାପରେ ପାଟିଏ ହସ ହସି ପିସ୍ତଲଟା ଫେରାଇ ଦେଲା । "ବେଶ୍ ! ଏଥର ଏକବାରେ ଚୁପ୍ ! କେହି ଆଉ ଗୁଳି ଚଳାଇବ ନାହିଁ ।"

ପୁଣି ତଳେ ପଥରର ଆଡ଼ୁଆଳରୁ ଚଢ଼ା ଗଳାରେ ଶୁଣାଗଲା, "ଏ ଡକାପୁତ ଦଳ !"

ଏଣେ ସବୁ ଚୁପଚାପ ।

"ଏବେ ବି ସମୟ ଅଛି, ତୁମେ ସବୁ ଖଣ୍ଡ ଖଣ୍ଡ ହୋଇଯିବା ଆଗରୁ ଧରା ଦିଅ ।"

"ଜାଲରେ ମାଛ ପଡ଼ୁଛି !" ସର୍ଜେଣ୍ଟ ଖୁସି ହୋଇ ଫୁସ୍ ଫୁସ୍ କରି କହି ପକାଇଲା ।

ସେହି ସମୟରେ ତଳେ ପଥରଟି ଉପରେ ଗୋଟିଏ ମଥା ସାବଧାନରେ ଉଠିଲା ଏବଂ ତୁରନ୍ତ ପୁଣି ତଳକୁ ଖସିଗଲା । କିନ୍ତୁ ଉପରୁ କୌଣସି ରାଇଫଲର ଆବାଜ ଭାସି ଆସିଲା ନାହିଁ ।

"କେହି ଆଦୌ ହଲଚଲ ହେବ ନାହିଁ ।" ସର୍ଜେଣ୍ଟ ପୁଣି ସେମାନଙ୍କୁ ସାବଧାନ କରିଦେଲା ।

ତଳେ ପଥରଟାର ଅନ୍ତରାଳରୁ ପୁଣି ଭାସି ଆସିଲା, "ରେ ଶିଆଳ ଦଳ, ଲାଲ-କୁର୍ତ୍ତା ଧାରୀ ଶୂକର !"

ସର୍ଜେଣ୍ଟ ହସି ପକାଇଲା ।

ପ୍ରାୟ ତିନି ମିନିଟ ନିସ୍ତବ୍ଧ । କେଉଁଠି କିଛିଏ ହେଲେ ଇଁ କି ଚୁଁ ଶବ୍ଦ ନାହିଁ । ତଳେ ଜଣେ ରାଇଫଲଧାରୀ ଫାଙ୍କା ଜାଗାକୁ ବାହାରି ଆସିଲା ଏବଂ ଚୂଡ଼ା ଉପରକୁ ଲକ୍ଷ୍ୟ କରି ଗୁଳି ଫୁଟାଇଲା । ବୁଲେଟ ପଥରରେ ଆହତ ହୋଇ ଗଁ ଗଁ ହୋଇ ଫେରିଗଲା । ସେତିକି ବେଳେ ସର୍ଜେଣ୍ଟ ଦେଖିଲା, ଆଉ ଜଣେ ଲୋକ ଧାଇଁ ଆସି ରାଇଫଲଧାରୀ ନିକଟରେ ଲୁଚି ଗଲା । ସର୍ଜେଣ୍ଟ ତାର ସଙ୍ଗୀମାନଙ୍କ ଆଡ଼କୁ ଫେରି ରହିଲା ।

ଏଣେ ତଳେ ସେତେବେଳେ କଥାବାର୍ତ୍ତା ଚାଲିଥିଲା ।

"କଥା କଣ ? ବିଶ୍ୱାସ କରାଯାଇ ପାରେ ?"

"କିଏ ଜାଣେ ।" ରାଇଫଲଧାରୀ ଜବାବ ଦେଲା ।

ଯେ ପ୍ରଶ୍ନ କରିଥିଲା, ସେ ହେଉଛି ତଳ ଦଳର ଜଣେ ଅଫିସର । ସେ ପୁଣି କହିଲା, "ବିଚାର କରି ଦେଖିଲେ, ସତ ବୋଲି ତ ଜଣା ଯାଉଛି । କାରଣ ପୁଅମାନେ ଏକ୍ଷଣି ଘେରରେ ପଡ଼ିଛନ୍ତି । ମରଣ ଛଡ଼ା ତ ସେମାନଙ୍କର ଆଉ କୌଣସି ଗତି ନାହିଁ । ତୁମେ କଣ କହୁଛ ?"

"କିଛି ନା ।" ରାଇଫଲଧାରୀ ଜବାବ ଦେଲା ।

"ଉପରେ ସେହି ଗୁଳି ଫୁଟିବା ପରେ ଆଉ କିଛି ହଲଚଲ ହେବାର ଦେଖିଲ କି ?"

"ନା ।"

ଫାସିଷ୍ଟ କପ୍ତାନ ଘଡ଼ି ଆଡ଼କୁ ଅନାଇ କହିଲା, "ତିନିଟା ବାଜିବାକୁ ଦଶ ମିନିଟ ଅଛି । ଘଣ୍ଟାଏ ଆଗରୁ ତ ଉଡ଼ାଜାହାଜ ଗୁଡ଼ିକର ଆସିବା କଥା ଥିଲା ।"

ସେହି ସମୟରେ ଆଉ ଜଣେ ଅଫିସର ଧଇଁ ସଇଁ ହୋଇ ପଥର ପଛରେ ଆସି ପହଞ୍ଚିଗଲା ।

"ତୁମର କଣ ମନେ ହେଉଛି, ଲେଫ୍‌ଟେନାଣ୍ଟ ?" ପ୍ରଥମ ଅଫିସର ପଚାରିଲେ ।

"ସେ ଆମକୁ ଏଥର ଧୋକା ଦେଉଛନ୍ତି !" ଧଇଁ ସଇଁ ହେଉ ହେଉ ଦ୍ୱିତୀୟ ଅଫିସରଟି ଜବାବ ଦେଲା ।

"କିନ୍ତୁ ଯଦି ଧୋକାବାଜି ନ ହୁଏ, ତାହାହେଲେ କେତୁଟା ଶବକୁ ଜାବୁଡ଼ି ଧରି ସେମାନେ ଯେ କପରି ବୋକା ହୋଇଯିବେ, ତାହା କେବେ ଭାବି ଦେଖିଛ କି ?"

"ସେମାନଙ୍କୁ ବୋକା କରାଇବାଠାରୁ ଆମର ନିଜର ଯଥେଷ୍ଟ ବୋକାମୀ କରା ହୋଇଛି । ତଳେ ଆମ ଲୋକମାନେ ଆଉକୁ ଟିକିଏ ଆଖି ପକାଅ ତ । ମର୍ଟାରଗୁଡ଼ାକ ଆସୁଥିଲା ଯେ କଣ ହେଲା ?"

"ଘଣ୍ଟାକ ଭିତରେ ବୋଧହୁଏ ଆସି ପହଞ୍ଚିଯିବ ।"

"ତାହାହେଲେ ଅପେକ୍ଷା କରିବା ହିଁ ବରଂ ଭଲ ।"

ହଠାତ୍ ଠିଆ ହୋଇ ଯାଇ ପ୍ରଥମ ଅଫିସର ଜଣକ ଚିତ୍କାର କଲା, "ଏ ଡକାୟତ ଦଳ ! କାପୁରୁଷ, ଲାଲକୁର୍ତ୍ତାଧାରୀ ଶୂକର !" ପିସ୍ତଲର ବେଣ୍ଟରେ ତାର ହାତଟା ଲାଗି ରହିଥିଲା । ରାଇଫଲଧାରୀ ଆଉକୁ ଅନାଇ ଦ୍ୱିତୀୟ ଅଫିସର ମଥା ହଲାଇଲା । ଆଉ ଏଣେ ସେତେବେଳେ ପ୍ରଥମ ଅଫିସର ଅକଥ୍ୟ ଭାଷାରେ ଗାଳି ଦେବାରେ ଲାଗିଥିଲା । ମାତ୍ର ପାହାଡ଼ର ଚୂଡ଼ା ନିସ୍ତବ୍ଧ । ଏଥର ସେ ବିଲ୍‌କୁଲ ଫାଙ୍କା ଜାଗାକୁ ବାହାରି ଆସିଲା ।

"ଏ ବଦମାସ ସବୁ, ଯଦି ବଞ୍ଚିଛ ତେବେ ଗୁଳି କର ତ ଦେଖିବା ! କୌଣସି ଲାଲ-କୁର୍ତ୍ତାଧାରୀ ଶୂକରକୁ ମୁଁ ଭୟ କରେ

ନାହିଁ ।" ତାର ମୁଖଟା ଉତ୍ତେଜନାରେ ଲାଲ ଟକ ଟକ ହୋଇ ଯାଇଥିଲା ।

"ଏ ହତଭାଗା ଲାଲ ମାଙ୍କଡ଼, କାପୁରୁଷର ପୁଅମାନେ !"

ଭଲ ଭାବରେ ଉପରେର ନୃତ୍ତାଟାକୁ ଲକ୍ଷ୍ୟ କରି ସେ ଗୁଳି ଫୁଟାଇଲା । ତଥାପି ସର୍ଜେଣ୍ଟ ଓ ତାର ସଙ୍ଗୀମାନେ ନୀରବ ରହିଲେ । ଗୋଟାଏ ବୁଲେଟ୍ ଆସି ସର୍ଜେଣ୍ଟର ମଲା ଘୋଡ଼ାଟିର ଦେହରେ ଲାଗିଲା । ଟିକଏ ଧୂଳି ଉଡ଼ିଗଲା । କପ୍ତାନ କ୍ରମାଗତ ଭାବରେ ଆଉ କେତୋଟା ଗୁଳି ଫୁଟାଇଲା ।

"ନା, ବଦମାସଙ୍କ ଭିତରୁ ଜଣେ ହେଲେ କେହି ବଞ୍ଚି ନାହିଁ !" କପ୍ତାନ ରାଇଫଲଧାରୀ ସୈନ୍ୟଟି ଆଡ଼କୁ ଅନାଇ ହୁକୁମ ଦେଲା, "ତୁମେ ଯାଅ, ଉପରକୁ ଯାଇ ଦେଖ ।"

ରାଇଫଲଧାରୀ ସୈନିକଟି ମଥା ନୁଆଁଇ ଠିଆ ହୋଇ ରହିଲା ଏବଂ କୌଣସି ଜବାବ ଦେଲା ନାହିଁ ।

"ତୁମକୁ କଣ ଶୁଭୁ ନାହିଁ ?" କପ୍ତାନ ମୋଟା ଗର୍ଜନ କଲା ।

"ହଁ, କପ୍ତାନ ।"

"ତାହାହେଲେ ଯାଉ ନାହଁ କାହିଁକି ?"

"ମୁଁ ଯିବାକୁ ଚାହେଁ ନାହିଁ, କପ୍ତାନ ।"

"ଏଁ, ତୁମେ ଯିବାକୁ ଚାହଁ ନାହିଁ ?" ପିସ୍ତଲର ମୁହଁଟା ତା ପିଠି ଉପରେ ଚାପି ଧରି କପ୍ତାନ ମୋଟା କହିଲା, "ତୁମେ ଯିବାକୁ ଚାହଁ ନାହିଁ ?"

"ମରିବାକୁ ମୋତେ ଭୟ ଲାଗୁଛି, କପ୍ତାନ ।" ଲୋକଟି ସରଳ ଭାବରେ ଜବାବ ଦେଲା ।

କପ୍ତାନଙ୍କ ମୁହଁ ଓ ଅଦ୍ଭୁତ ଆଖି ଦୁଇଟା ଆଡ଼କୁ ଚାହିଁ ଲେଫ୍‌ଟେନାଣ୍ଟ ବେରେନ୍ତୋର ମନେ ହେଲା, ଲୋକଟି ଏକ୍ଷଣି ମରିବ ।

"କପ୍ତାନ ମୋର !" ଲେଫ୍‌ଟେନାଣ୍ଟ ତତ୍‌କ୍ଷଣାତ୍ କହି ପକାଇଲେ ।

"କୁହ, ଲେଫ୍‌ଟେନାଣ୍ଟ ବେରେନ୍ତୋ ।"

"ବୋଧହୁଏ ସେ ଠିକ୍ କହୁଛି ।"

"କଣ ? ସେ ଠିକ୍ କହୁଛି ଯେ, ସେ ମରିବାକୁ ଡରୁଛି ? ଜଣେ ସୈନିକ ହୋଇ ସେ ଠିକ୍ କହୁଛି ଯେ ସେ ମୋ ହୁକୁମ ମାନିବ ନାହିଁ ?"

"ନା, କପ୍ତାନ । ସେ ଠିକ୍ କହୁଛି ଯେ, ଏହା ଭିତରେ ବଦମାସଙ୍କର କିଛି ଚାଲକି ଅଛି ।"

"ବଦମାସଗୁଡ଼ାକ ସମସ୍ତେ ମରି ଯାଇଛନ୍ତି ।" କପ୍ତାନ ଦୃଢ଼ ସ୍ୱରରେ କହି ପକାଇଲେ, "ମୁଁ କହୁଛି, ସେମାନେ ମରି ଯାଇଛନ୍ତି । ଲାଲ-କୁକୁରଗୁଡ଼ାଙ୍କୁ ଆମେ ଖତମ କରି ଦେଇଛୁ । ମୋ କଥା ସତ କି ନା, ଟିକିଏ ଅନାଇ ଦେଖ ନା ।"

କହୁଁ କହୁଁ କପ୍ତାନ ଏକାବେଳେ ପଥରଟା ଉପରକୁ ଚଢ଼ି ଆସି ଠିଆ ହୋଇ ଚିତ୍କାର କରିବାକୁ ଲାଗିଲେ, "ରେ ଗୁଣ୍ଡାମାନେ, ଏଥର ଗୁଳି ଚଳାଅ ତ । ମାର, ମାର, ମୋତେ ମାରି ପକାଅ !"

ପାହାଡ଼ର ଚୂଡ଼ାରେ ମଲ୍ଲ ଘୋଡ଼ାଟାର ପଛରେ ଲହି ପଡ଼େ । ସେତେବେଳେ ହସ ଚାପି ରଖି ପାରୁ ନ ଥିଲା । ହସର ଧମକରେ ତାର ଆହତ ହାତଟା ଜ୍ୱାଳା କରୁଥିଲା ।

"ମାର ତ ଦେଖି ଲାଲ-କୁକୁର ! ଚଳାଅ ତ ଗୁଳି !"

କୌଣସି ମତେ ହସ ଗୁପି ରଖି ସର୍ଜ୍ଜେଣ୍ଟ ଦେଖିଲା, ତଳେ କପ୍ତାନ ପାଗଳଙ୍କ ପରି ହାତ ହଲାଉଛି । ଲେଫ୍‌ଟେନାଣ୍ଟ ଓ ସୈନିକଟି ମଧ୍ୟ ପଦାକୁ ବାହାରି ଆସିଲେଣି ।

ସର୍ଜ୍ଜେଣ୍ଟ ମନେ ମନେ କହି ଯିବାକୁ ଲାଗିଲା, "ଚଳାଅ ଗୁଳି ! ମାରି, ମାରି ପକାଅ, ମୋତେ !"

"କି ଲେଫ୍‌ଟେନାଣ୍ଟ ? ଏଥର ବିଶ୍ୱାସ ହେଲା ତ ?"

"ନା !"

"ଓଃ ! ମୋ ସାଙ୍ଗରେ କେତେଗୁଡ଼ାଏ ନିର୍ବୋଧ ଓ କାପୁରୁଷ ଛଡ଼ା କଣ ଆଉ କେହି ନାହାନ୍ତି ?" କପ୍ତାନ ପୁଣି ଚୂଡ଼ାଟାକୁ ଲକ୍ଷ୍ୟ କରି ଅତି ଅଭଦ୍ର ଭାବରେ ଗାଳି ଗୁଲଜ କରିବାକୁ ଲାଗିଲା । ତା ପରେ ହଠାତ୍ ସେ କହିଲା, "ଲେଫ୍‌ଟେନାଣ୍ଟ, ଚାଲ ଏଥର ତୁମେ ଓ ମୁଁ ଉପରକୁ ଯିବା ।"

"ନା । ମୁଁ ନୁହେଁ ।"

"କଣ ?" କପ୍ତାନ ମୁହୂର୍ତ୍ତକ ଭିତରେ ପୁଣି ପିସ୍ତଲଟାକୁ ହାତରେ ଟାଣି ଆଣିଲା ।

"ଯଦି ତୁମେ ହୁକୁମ ଦିଅ, ମୋତେ ଅବଶ୍ୟ ଯିବାକୁ ପଡ଼ିବ । କିନ୍ତୁ ମୁଁ ନିଶ୍ଚୟ ପ୍ରତିବାଦ କରିବି ।"

"ତାହାହେଲେ ମୁଁ ଏକା ଯିବି ! କାପୁରୁଷ, ତୁମେ ସମସ୍ତେ କାପୁରୁଷ !"

ଡାହାଣ ହାତରେ ପିସ୍ତଲଟା ଅତି ଯତ୍ନରେ ଧରି କପ୍ତାନ ଦୃଢ଼ ପଦକ୍ଷେପରେ ଉପରକୁ ଉଠିବାକୁ ଲାଗିଲା । କୌଣସି ପ୍ରକାର ଆବରଣ ନେବାକୁ ସେ ତିଳେ ମାତ୍ର ଚେଷ୍ଟା ବି କଲା ନାହିଁ ।

ସର୍ଜ୍ଜେଣ୍ଟ ଦେଖିଲା, ଜଣେ ଉପରକୁ ଉଠି ଆସୁଛି । ମାତ୍ର ଜଣେ ଲୋକ ! କିନ୍ତୁ ତାର କଥାବାର୍ତ୍ତାରୁ ଜଣା ଯାଉଥିଲା, ସେ ଯେମିତି

ଜଣେ ମାତବର ଲୋକ । ଜାଲରେ ବଡ଼ ମାଛ ପଡ଼ୁଛି ! ଦେଖ, ଦେଖ, ଲୋକଟାର ଗମନ-ଭଙ୍ଗୀକୁ ! ଗୋଟାଏ ଜାନୁଆର । ସେ ମନେ ମନେ କହିବାକୁ ଲାଗିଲା—ଆସ, ଆସ ବନ୍ଧୁ, ସାଥୀ, ଚାଲି ଆସ । ରହିଯାଅ ନାହିଁ, ବନ୍ଧୁ । ହଁ, ହଁ, ପଛକୁ ଆଉ ଫେରି ବୁଲ ନାହିଁ । ତଳକୁ ଅନାଅ ନା । ଆସ, ଆସ ! ଏହି ତ ତୁମର କୋଠରି ଚିହ୍ନୁଛି ଜଣା ଯାଉଛି, ତୁମେ ଜଣେ କପ୍ତାନ ! ମନ୍ଦ ନୁହେଁ, ବେଶ୍. ବେଶ୍ ! ଆହୁରି ପାଖକୁ, ଆହୁରି ପାଖକୁ ! ଏହି ସେ ସାଥୀ ବନ୍ଧୁ ମୋର, ଏହି ନିଅ ।

ସର୍ଜୋ ସ୍ୱୟଂ ଚାଳିତ ରାଇଫଲଟା କାନ୍ଧରେ ପକାଇ, ଲାଗେ ଲାଗେ ତିନିଟା ଗୁଳି ଫୁଟାଇ ଦେଲା ।

କପ୍ତାନ ମୋଗ୍ ପାହାଡ଼ ଉପରେ ମୁହଁ ତଳକୁ କରି ତତ୍‌କ୍ଷଣାତ୍ ଢଳି ପଡ଼ିଲା । ତାର ବାମ ହାତଟା ପେଟ ତଳେ ଥିଲା, ଆଉ ପିସ୍ତଲ ଧରିଥିବା ଡାହାଣ ହାତଟି ମଥା ଉପରେ ଲମ୍ବା ହୋଇ ପଡ଼ିଥିଲା । ପୁଣି ତତ୍କ୍ଷଣ ପାହାଡ଼ର ଚୂଡ଼ାକୁ ଲକ୍ଷ୍ୟ କରି ଗୁଳି ଚାଲିଲା ।

କିନ୍ତୁ ସେତେବେଳେ ସର୍ଜୋ ହସୁଥିଲା, ପ୍ରାଣ ଖୋଲି ହସ ହସୁଥିଲା ।

ହଠାତ୍ ତା କାନ୍ଧରେ ଆସି ଗୋଟାଏ ହାତ ପଡ଼ିଲା । ଜୋପ୍ରା-କୁଇନ ସର୍ଜୋର ପଛରେ ଆସି ଠିଆ ହୋଇଛି । ତାର ମୁଖଟି ରକ୍ତହୀନ । ସେ ଆଙ୍ଗୁଳିରେ ଆକାଶ ଆଡ଼କୁ ଠାରି ଦେଲା । ସର୍ଜୋ ଅନାଇ ଦେଇ ଦେଖିଲା ଏବଂ ଉଡ଼ାଜାହାଜର ଗୁଡ଼ୁ ଗୁଡ଼ୁ ଆବାଜ ଶୁଣିବାକୁ ପାଇଲା ।

"ଶୋଇ ପଡ଼ । ଶୋଇ ପଡ଼ । ଭଗବାନ୍‌ଙ୍କ ପାଇଁ, ସ୍ୱୟଂ ଚାଳିତ ରାଇଫଲଟାକୁ ଜୋପ୍ରାକୁଇନର କାନ୍ଧ ଉପରେ ଥୋଇ ଦିଅ ।

ବସି ଯାଅ ଜୋୟାକୁଇନ, ଆଦୌ ହଲଚଲ ହୁଅ ନାହିଁ । ଖାଲି ଗୁଳି ଚଳାଇ ଯାଅ ।"

ସେତେବେଳେ ଜୋୟାକୁଇନ ଅସ୍ପଷ୍ଟ ସ୍ୱରରେ କହୁଥିଲା, "ଦୁଇ ପାଦରେ ଠିଆ ହୋଇ ମରିବା··· । ମେରି ମାତା ! ମେରି ମାତା !"

ପରେ ପବନ ଭେଦ କରି ତୀକ୍ଷ୍ଣ ହୁଇସିଲର ସ୍ୱର ଶୁଣାଗଲା । ଲାଲ ମାଟି ଗର୍ଜନ କରି କୁଦି ପଡ଼ିଲା । ବିଶ୍ୱ ଫାଟି ଯାଇଛି । ସର୍ବୋ ତଳେ ରହିଲା—ତାର ଗୁଳି ଉପରେ ସ୍ୱପ୍ନ ଖଚିତ ବାଇଫଲଟା । ଉଡ଼ାଜାହାଜ ଗୁଡ଼ାକ ଘୂରି ଘୂରି ଆସି ତିନି ଥର ପାହାଡ଼ର ଚୂଡ଼ା ଉପରେ ବୋମା ପକାଇ ଦେଇ ଗଲେ, କିନ୍ତୁ ପାହାଡ଼ର ଚୂଡ଼ାରେ ଅଉ କେହି ତାହା ଜାଣି ପାରିଲେ ନାହିଁ ।

— ଆର୍ନେଷ୍ଟ ହେମିଙ୍ଗଓୟେ

# ଶୟତାନର ଖେଳ

ମାସାଚୁସେଟସ୍ ଯେଉଁଠି ଭରମଣ୍ଟ୍ ଓ ନିଉହାମଶାୟାର ପ୍ରଦେଶ ସହିତ ସଂଯୁକ୍ତ ହୋଇଛି, ସେହି ସୀମାନ୍ତ ଅଞ୍ଚଳରେ ଆଜି ବି ଲୋକ ମୁଖରୁ ଡାନିୟେଲ ଓ୍ୱେବ୍‌ଷ୍ଟାରର ନାମ ଶୁଣାଯାଏ ।

ଅନେକ ଦିନ ହେଲା ଡାନିୟେଲ ଓ୍ୱେବେଷ୍ଟାର ପରଲୋକ ଗମନ କଲେଣି । କିନ୍ତୁ ଝଡ଼-ବୃଷ୍ଟି ସମୟରେ ଆକାଶରେ ଯେତେ-ବେଳେ କଳା ମେଘର ସ୍ତର ଭେଦ କରି ବଜ୍ରାଘାତ ହୁଏ, ସେତେବେଳେ ମାର୍ସଫିଲ୍ଡର ଲୋକମାନେ କହିବାକୁ ଲାଗନ୍ତି— ସେଟା ବଜ୍ର ନୁହେଁ, ଡାନିୟେଲ ଓ୍ୱେବଷ୍ଟାରର ଗମ୍ଭୀର ଗଳାର ଆୱାଜ । ସେମାନେ ଆହୁରି କହନ୍ତି—ଯଦି କେହି ଏ କଥା ଅବିଶ୍ୱାସ କରୁଛି, ତାହାହେଲେ ସେ ଡାନିୟେଲର କବର ପାଖରେ ଯାଇ ଠିଆ ହେଉ ଏବଂ ଡାନିୟେଲ ଓ୍ୱେବଷ୍ଟାର ବୋଲି ଆକୁଳ ଭାବରେ ଆହ୍ୱାନ କରୁ । ତତ୍‌କ୍ଷଣାତ୍ ଚତୁର୍ଦ୍ଦିଗର ମାଟି ଓ ଗଛ ପତ୍ର କମ୍ପାଇ ଉତ୍ତର ଆସିବ—ପ୍ରତିବେଶୀ, ୟୁନିୟନର ଅବସ୍ଥା କିପରି ?

ସେତେବେଳେ ଯଦି ଭଲ ବୁଝ ତ ତାକୁ କହିବାକୁ ହେବ, ୟୁନିୟନ ପାହାଡ଼ ଭଳି ଅଟଳ ଭାବରେ ଠିଆ ହୋଇଛି ଏବଂ ତା ଦେହରେ କୌଣସି ଆଞ୍ଚ ଲାଗି ନାହିଁ । କିନ୍ତୁ ତାହା ଯଦି କୁହା ନ

ଯାଏ, ତାହାହେଲେ ବାଧ ହୋଇ ଡାନୟେଲ ଓ୍ୱେବଷ୍ଟାର ତାର ସମାଧି-ଶଯ୍ୟନ ଗୁଡ଼ ଆହ୍ୱାନକାଶ୍ମ ଆଗରେ ଆସି ଠିଆ ହୋଇଯିବ !

ସତରେ, ଦେଶରେ ଦଶ ଜଣଙ୍କ ଭିତରେ ଜଣେ ଥିଲା ସେ । ଯୁଏତ ରାଷ୍ଟ୍ରପତି ହେବାର ଯୋଗ୍ୟତା ତାର ନ ଥିଲା, କିନ୍ତୁ ସେ ଜଣେ ଗରିଷ୍ଠ ଲୋକ ଥିଲା । ଲୋକେ ତାକୁ ଉପ୍ସ କରୁଥିଲେ, ଭଲ ପାଉଥିଲେ, ଆଉ ତା ସମ୍ବନ୍ଧରେ ହଜାରେ ରକମର ଗପ କରୁ-ଥିଲେ । ଅର୍ଥାତ୍, ଯେତେବେଳେ ସେ ବକ୍ତୃତା ଦେବାକୁ ଠିଆ ହେଉଥିଲା, ସେତେବେଳେ ସ୍ୱୟଂ ବାଗ୍‌ଦେବୀ କୁଆଡ଼େ ତା କଣ୍ଠରେ ସମାସୀନ ହେଉଥିଲେ, ଆକାଶରେ ତାରକାଗଣ ଅଦୃଶ୍ୟ ଭାବରେ ଆସି ତା ପାଖରେ ଠିଆ ହେଉଥିଲେ ଏବଂ ଗ୍ରହ୍ମା-ପଥ ଶୁଭ୍ରତା ବିସ୍ତାର କରି ଦେଉଥିଲା । ମାଛ ଧରିବା ବନ୍ଶୀର ନାମ ଥିଲା 'କଲ-ଅଲ୍' । ସେଇଟା ହାତରେ ଧରି ସେ ମାଛ ମାରିବାକୁ ଗଲେ, ଟ୍ରାଉଟ ମାଛ ସବୁ ନଦୀରୁ ଡେଇଁ ପଡ଼ ସିଧା ତାର ପକେଟରେ ପଶି ଯାଉଥିଲେ । କାରଣ ସେମାନେ ଜାଣିଥିଲେ ଯେ ତା ସହିତ ଲଢ଼ିବା ବୃଥା ।

ମର୍ସଫିଲ୍‌ଡ଼ରେ ତାର ପ୍ରକାଣ୍ଡ ବଗିଚା ଓ ଖଳାବାଡ଼ି ଥିଲା —ବଟାଳ କହିଲେ ବି ଚଳେ । ତାର ଅସଂଖ୍ୟ ଗୋରୁ, ମେଣ୍ଢା, କୁକୁଡ଼ା ଓ ହଂସ ଥିଲେ । ସବୁଠାରୁ ବେଶୀ ଦେଖିବାର ଜିନିଷ ଥିଲା ତାର ମେଣ୍ଢା ଗଲିଆଥ । ତାର ଶିଙ୍ଗଗୁଡ଼ାକ ଥିଲା ପାକଳ ଓ ଚକଚକିଆ, ଯେମିତି ପ୍ରବାଳ-ଦ୍ରାକ୍ଷ ଅଙ୍ଗୁରଲତା । ଶିଙ୍ଗରେ ତାଏ ମାରିଦେଲେ ଲୁହାର ଦରଜା ବି କଣା ହୋଇଯିବ ।

ଏ ସବୁର ଉପଯୁକ୍ତ ମାଲିକ ଥିଲା ଡାନୟେଲ ଓ୍ୱେବଷ୍ଟାର । ତାର ମୁଖ ଓ ଓଠ ଥିଲା ମ୍ୟାଷ୍ଟିକ କୁକୁରର ମୁହଁ ପରି ଦୃଢ଼ । ଲଲାଟ ଥିଲା ଉଚ୍ଚ । ଆଉ ସବୁଠାରୁ ବେଶୀ ଯେଉଁ ଜିନିଷଟା

ଲୋକଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା, ତାହା ହେଉଛି ଜଳନ୍ତା କୋଇଲା ପରି ଉଜ୍ଜ୍ୱଳ ଚକ୍ଷୁର ପ୍ରଦୀପ୍ତି ।

ସେତେବେଳେ ଜୀବନର ଚରମ ସୌଭାଗ୍ୟ ଉଛୁଳି ପଡ଼ୁଥିଲା । ଏମିତି ସମୟରେ ତାକୁ ଯେଉଁ ମାମଲା ଲଢ଼ିବାକୁ ହୋଇଥିଲା, ଆଜ ତାର କାହାଣୀ କୌଣସି କଥାପଦର ଅନ୍ତର୍ଭୁକ୍ତ ହୋଇ ଉନ୍ତି ନାହିଁ । କାରଣ ଏହି ମାମଲାରେ ଶୟତାନ ବିରୁଦ୍ଧରେ ସଓୟାଲ ଜବାବ ଚଳାଇ ତାକୁ ସମସ୍ତ ତର୍କର ଅବସାନ ଘଟାଇବାକୁ ହୋଇଥିଲା । ତେବେ ଯାଇ ସେ ଏହି ମାମଲାରେ ବିଜୟ ଲାଭ କରି ପାରିଥିଲା ।

ଜ୍ୟାବେଜ ଷ୍ଟୋନ ଜଣେ ସାଧାରଣ ଗୃହସ୍ଥ ଥିଲା । ତାର ଘର ହାମସାୟାରରେ କ୍ରସ୍‌କର୍ଣ୍ଣାରସ୍‌ରେ ଥିଲା । ଭାଗ୍ୟ ତର ଦିନ ତା ପ୍ରତି ବିମୁଖ ଥିଲା । ଚାଷ ଆବାଦ କରି ସେ କେଉଁ ଦିନ ଭଲ ଫସଲ ପାଇ ନ ଥିଲା । ତାର ଗୋରୁ ମେଣ୍ଢା କ୍ରମେ କ୍ରମେ ମରି ମରି ଖତମ ହୋଇଗଲେ । ତାର ପୁଅ ଝିଅ ଗୁଡ଼ିକ ସୁନ୍ଦର ସ୍ୱାସ୍ଥ୍ୟ ଘେନି ଜନ୍ମ ହେଉଥିଲେ । କିନ୍ତୁ ଟିକିଏ ବଡ଼ ହେଲେ, ହଠାତ୍ ଦିନେ ବେମାର ପଡ଼ି ଯାଉଥିଲେ ଏବଂ ତାପରେ ରୋଗର ମାତ୍ରା ଦିନକୁ ଦିନ ବଢ଼ି ଯାଉଥିଲା । ଅବଶ୍ୟ ଏହିପରି ଭାଗ୍ୟର ବିଡ଼ମ୍ବନା କାହାରି କାହାରି ଜୀବନରେ ହୁଏ, କିନ୍ତୁ ସମସ୍ତେ ତ ତାହା ସହ୍ୟ କରି ପାରନ୍ତି ନାହିଁ । ସହ୍ୟର ସୀମା ଅବଶ୍ୟ କେବେ କେବେ ମଣିଷ ଅତିକ୍ରମ କରେ !

ସେ ଦିନ ବ୍ୟାପାର ତାହା ହିଁ ହେଲା । ସକାଳେ ବିଲକୁ ଯାଇ ଜ୍ୟାବେଜ ଥରେ ହଳ ବୁଲାଇଛି କି ନାହିଁ, ଏମିତି ସମୟରେ ଖଣ୍ଡିଏ ପଥୁରିଆ ଢେଲା ସାଙ୍ଗରେ ବାଜି ଫାଳଟା ଫାଟ୍‌ କରି ଭାଙ୍ଗି ଗଲା । ସେ ହତବାକ୍ ହୋଇ ଠିଆ ହୋଇ ରହିଲା । କିନ୍ତୁ

ଠିଆ ହୋଇ ରହିବା ବି ତା ଭାଗ୍ୟରେ ନ ଥିଲା । ଗୋଟାଏ ଘୋଡ଼ା ହଠାତ୍ ଏମିତି ଛାଣିବାକୁ ଲାଗିଲା ଯେ ଜ୍ୟାକେଜ ବୁଝିଲା, ଡାକ୍ତର ନ ଡାକିଲେ ଘୋଡ଼ାଟା ମରିଯିବ । ଘରେ ଦୁଇଟି ପିଲାଙ୍କ ହାମ୍ ହୋଇଛି, ସ୍ତ୍ରୀକୁ ଜର, ତାର ନିଜର ବୁଢ଼ା ଆଙ୍ଗୁଳିର କଣ ନଖ ପାଚି ବେଦନାରେ ଫାଟାଇ ଦେଉଛି, ଆଜି ତା ଉପରେ ଏଇ ଘଟଣା । ଏଥିରେ ସେ ଧୈର୍ଯ୍ୟ ହରାଇ କହି ପକାଇଲା—ହାୟ ଭଗବାନ, ମୁଁ କି ଅବସ୍ଥାରେ ପଡ଼ିଲି । ହାତରେ ଗୋଟିଏ ହେଲେ ପଇସା ନାହିଁ । କେଶୀ ନୁହେଁ, ମାତ୍ର ଦୁଇ ସେଣ୍ଟ ପାଇଲେ ବି ମୁଁ ଶୟତାନ ନିକଟରେ ଆତ୍ମା ବିକ୍ରୟ କରିଦେବି

କିନ୍ତୁ କଥାଟା କହି ଦେଇ ଜ୍ୟାକେଜ ଶିହରି ଉଠିଲା । ଚାରିଆଡ଼କୁ ଅନାଇ ସେ ଦେଖିଲା, କେହି କେଉଁଠି ଅଛନ୍ତି କି ନା । ସେ କାହାକୁ ଦେଖି ପାରିଲା ନାହିଁ । ଦିନର ଆଲୁଅ ଧୀରେ ଧୀରେ ଲିଭିଯାଇ ସନ୍ଧ୍ୟାର ମ୍ଳାନାୟମାନ ଅନ୍ଧକାର ଯେତେବେଳେ କଳା ପକ୍ଷରେ ଜଗ ଜଗନ୍ତ ଢ଼ାଙ୍କି ଦେଲା, ସେତେବେଳେ ସେ ଘରକୁ ଫେରୁ ଫେରୁ ସ୍ୱସ୍ତିର ନିଶ୍ୱାସ ପକାଇଲା—ନା, କଥାଟା କେହି ଶୁଣି ନାହାନ୍ତି !

ରାତିରେ ଭୋଜନ ଶେଷ ନ ହେଉଣୁ, ଖଣ୍ଡିଏ ଚଟକଦାର ଘୋଡ଼ାଗାଡ଼ିରେ ଚଢ଼ି ଜଣେ ଭଦ୍ରଲୋକ ଜ୍ୟାକେଜ ସାଙ୍ଗରେ ଦେଖା କରିବାକୁ ଆସିଲା । ତାର ପରିଷ୍କାର ପୋଷାକ କଳା ଏବଂ ଗଳାର ଆବାଜ ଅତ୍ୟନ୍ତ ମୃଦୁ ।

ଘରେ ସମସ୍ତେ ଜାଣିବାକୁ ଚାହିଁଲେ – କିଏ ଆସିଛନ୍ତି ?

ଜ୍ୟାକେଜ କହିଲା—ସେ ଜଣେ ଓକିଲ । ଗୋଟାଏ ଜଙ୍ଗଲରେ ମୋତେ ସାକ୍ଷୀ ହେବାକୁ ପଡ଼ିବ । ସେଥିପାଇଁ ସେ ଆସିଛନ୍ତି ।

କିନ୍ତୁ କିଏ ଯେ ଆସିଛି, ସେ କଥା କହିବା ବାହୁଲ୍ୟ । ଘରର କୁକୁରଟା ଆଗନ୍ତୁକ ଆଡ଼କୁ ଚାହିଁ ଥରେ ଭୋ ଭୋ କରି ଭୁକି, ତାପରେ ଲାଙ୍ଗୁଳଟା ପଛ ଦୁଇ ଗୋଡ଼ ଭିତରେ ଗୁଞ୍ଜି ଦେଇ ଘର ଗୁଡ଼ ପଳାଇଗଲା । ଆଗନ୍ତୁକ ସେହି ଆଡ଼କୁ ଚାହିଁ ଥରେ ହସିଲା । ଜ୍ୟାକେଜ ସେହି ହସ ଓ ଆଗନ୍ତୁକର ମୁନିଆ ଦାନ୍ତ ଦେଖି ବିବର୍ଣ୍ଣ ହୋଇଗଲା ।

ଆଗନ୍ତୁକ କହିଲା—ଯାହା ହେଉ, କେଉଁଠି ବସିବା, ମିଷ୍ଟାର ଷ୍ଟୋନ ?

—କାହିଁକି ? ଘର ପଛରେ ଖଳାବାଡ଼ରେ !

—ବେଶ୍, ସେଠାକୁ ଚାଲ । ଯାହା କିଛି କଥାବାର୍ତ୍ତା ସେଠାରେ ହେବା ।

ଖଳାବାଡ଼ରେ ବସି ଗୋଟାଏ ଚୁକ୍ତିନାମା ହେଲା । ଅବଶ୍ୟ କାଗଜ ବା କଲମରେ ଚୁକ୍ତିନାମା ନୁହେଁ, ଆଙ୍ଗୁଳିରୁ ରକ୍ତ ବାହାର କରି ଜ୍ୟାବେଜ ଦସ୍ତଖତ ଦେଇଥିଲା । ଏଥିପାଇଁ ଆଗନ୍ତୁକ ତାକୁ ଗୋଟାଏ ରୁପାର କଣ୍ଟା ଦେଇଥିଲା । କଣ୍ଟା ଫୁଟାଇଥିବା ଘାଆଟା ଦିନେ ଦି ଦିନ ଭିତରେ ଶୁଖିଗଲା ସତ, ମାତ୍ର ଘାଆର ସାଦା ଦାଗଟା ଗୋଟାଏ ଫୋଟକା ଭଳି ଚକ ଚକ କରିବାକୁ ଲାଗିଲା ।

ଏହା ପରେ ଜ୍ୟାବେଜ ଷ୍ଟୋନର ଭାଗ୍ୟ ଯେ ବଦଳି ଗଲା, ଏ କଥା କହିବା ନିଷ୍ପ୍ରୟୋଜନ । ସେ ତ ଖାଲି ଧନୀ ବ୍ୟକ୍ତି ହେଲା ନାହିଁ, ପ୍ରଚୁର ଖ୍ୟାତି ବି ଅର୍ଜନ କଲା । ଦେଶର ଲୋକମାନେ ତାକୁ ସେମାନଙ୍କର ପ୍ରତିନିଧି ନିର୍ବାଚନ କଲେ, ଏପରିକି ଷ୍ଟେଟ ସିନେଟର କରିବା ଯାଏ କଥା ଗଲା । ସୁଖ ସ୍ୱାଚ୍ଛନ୍ଦ୍ୟରେ ତାର

ସଂସାର ଉଚ୍ଛୁଳି ପଡ଼ିଲା । କିନ୍ତୁ ଜ୍ୟାବେଜ ତାର ମନର ଶକ୍ତି ହରାଇ ବସିଲା ।

ପ୍ରଥମ କେତେ ବର୍ଷ ସେ ବେଶ୍ ଖୁସି ବାସିରେ ରହିଲା । ଦୁର୍ଭାଗ୍ୟର ଅବସାନ ହୋଇ ସୁଦିନ ଆସିଲେ ଲୋକେ ଅନେକ ପୁରୁଣା କଥା ଭୁଲି ଯାଆନ୍ତି । ତଥାପି କଳା ମେଘରେ ଆକାଶ ଡ଼ାକି ହୋଇ ଯେଉଁ ଦିନ ବର୍ଷା ଆସୁଥିଲା, ଆଉ ଜଳର ଧାରା ଝର ଝର ଲୋତକ ଗଡ଼ାଉଥିଲା, ସେ ଦିନ ତାର ଆଙ୍ଗୁଳିର ସାଦା ଦାଗଟା ଚନ୍ ଚନ୍ କରୁଥିଲା ଏବଂ ଗୋଟାଏ ଅସହ୍ୟ ଯନ୍ତ୍ରଣାରେ ସେ ଆକୁଳ ହେଉଥିଲା । ଆଉ ଗୋଟାଏ ଘଟଣାର ବି ପୁନରାବୃତ୍ତି ହେଉଥିଲା । ଠିକ୍ ଘଡ଼ିର କଣ୍ଟା ପରି ନିର୍ଦ୍ଦିଷ୍ଟ ଦିନରେ ସେହି ଅପରିଚିତ ଭଦ୍ରଲୋକଟି ଜ୍ୟାବେଜର ଦୁଆର ମୂହଁରେ ଗାଡ଼ି ଅଟକାଇ ଥରେ ତାକୁ ଦେଖା କରି ଯାଉଥିଲା, କିନ୍ତୁ ସେ ଗାଡ଼ିରୁ ଓହ୍ଲାଉ ନ ଥିଲା । ଷଷ୍ଠ ବର୍ଷରେ ସେ ଗାଡ଼ିରୁ ଓହ୍ଲାଇଲା । ବର୍ଷାର ପାଣି କାଦୁଅରେ ପଶି ସେ ଜ୍ୟାବେଜର ବୈଠକଖାନାରେ ଆସି ଠିଆ ହେଲା—ହାତରେ ଧରିଥିବା ପତଳା ବେତ ଛଡ଼ିରେ ସେ ଜୋତାରୁ କାଦୁଅ ଛଡ଼ାଇଦେଲା । ସେତେବେଳେ ସନ୍ଧ୍ୟାର ଅନ୍ଧକାର ମାଡ଼ି ଆସିଥିଲା । ଗୋଟିଏ ଟେବୁଲ ଉପରେ ଦୁଇ ହାତରେ ଶରୀରର ଭାର ରଖି ଅପରିଚିତ ବ୍ୟକ୍ତିଟି କହିଲା—ମିଷ୍ଟାର ଷ୍ଟୋନ, ଦେଖୁଛି ଆପଣ ତ ପ୍ରଚୁର ସମ୍ପତ୍ତି କରି ଗଲେଣି !

ତତ୍‌କ୍ଷଣାତ୍ ଜ୍ୟାବେଜ ଉତ୍ତର ଦେଲା—ହଁ, କେହି କେହି ଏ କଥା ସ୍ୱୀକାର କଲେ ବି, ଅସ୍ୱୀକାର କରିବାର ଲୋକର ତ ଅଭାବ ନାହିଁ ।

କୋମଳ କଣ୍ଠରେ ଅପରିଚିତ ବ୍ୟକ୍ତି କହିଲା—ସତେ ନା କଣ ! ଏମିତି କଥା ବି ସେମାନେ କହନ୍ତି । ବିଚାରମାନେ ତ ଆଉ

ଜାଣନ୍ତି ନାହିଁ ଯେ ଏ ସମ୍ପତ୍ତି କେଉଁଠୁ ଆସିଲା, ସେଥିପାଇଁ ବୋଧହୁଏ···। କଥା ଅସମାପ୍ତ ରଖି ଅପରିଚିତ ବ୍ୟକ୍ତି ଏକ ଝଲକ ହସ ହସିଲା । ତାର ମୁନିଆ ଦାନ୍ତଗୁଡ଼ାକ ଆଲୁଅରେ ଝଲସି ଉଠିଲା ।

ଜ୍ୟାକେଜ ନୀରବରେ ବସି ରହିଲା । ଅପରିଚିତ ବ୍ୟକ୍ତିଟି ପୁଣି ଆରମ୍ଭ କଲା—ଆମର ସେହି ଚୁକ୍ତି କଥା ଆପଣଙ୍କର ମନେ ଅଛି ତ ? ଆଗାମୀ ବର୍ଷ ସେଟାର ମିଆଦ ପୂରି ଯାଉଛି । ତେଣୁ ଆଶା କରେ, ସେତେବେଳେ ଆପଣଙ୍କର ଅନୁତାପ କଲା ଭଳି କିଛି ଘଟିବ ନାହିଁ ।

—ଦେଖନ୍ତୁ, ସେହି ଚୁକ୍ତି ସମ୍ବନ୍ଧରେ ଗୋଟାଏ ଦୁଇଟା ସଂଶୟ ମୋ ମନ ଭିତରେ ଉଠୁଛି । ଯେମିତି ଧରନ୍ତୁ, ଦେଶଟା ହେଉଛି ସଂଯୁକ୍ତ ଆମେରିକା ରାଷ୍ଟ୍ର । ମୁଁ କେଉଁ ଦିନ ଅଧର୍ମ କରି ନାହିଁ। ମୋର ଧାରଣା, ଅଦାଲତରେ ଏ ଚୁକ୍ତିନାମାର କୌଣସି ମୂଲ୍ୟ ନାହିଁ ।

ଦାନ୍ତରେ ଦାନ୍ତ ଘଷି ଅପରିଚିତ ବ୍ୟକ୍ତି କହିଲା—ଆଇନ ଅଦାଲତ କଥା ପରେ ବିଚାର କରାଯିବ । ଯଦି ଆପଣଙ୍କର ଇଚ୍ଛା ହେଉଛି, ଖାସ ଦଲିଲଗୁଡ଼ାକ ଆପଣ ଥରେ ପରୀକ୍ଷା କରି ଦେଖି ପାରନ୍ତି । ସଙ୍ଗେ ସଙ୍ଗେ ସେ ଗୋଟାଏ ବଡ଼ କଳା ପକେଟ ବହି ନିଜର କୋଟ ପକେଟରୁ ବାହାର କରି ପକାଇଲା । ତା ପରେ ମୃଦୁ ସ୍ୱରରେ ନାମ ପଢ଼ି ସେ କହିଲା—ନା, ସବୁ କିଛି ଠିକ୍ ଅଛି ।

ଜ୍ୟାକେଜ ସେ କଥାର କୌଣସି ପ୍ରତିବାଦ କଲା ନାହିଁ । ସେ ଦେଖିଲା, ପକେଟ ବହି ଭିତରୁ ଗୋଟାଏ ପତଙ୍ଗ ବାହାରି ଆସି ମଣିଷର କଣ୍ଠ ସ୍ୱରରେ କହିଲା—ଭାଇ ଷ୍ଟୋନ, ମୋତେ ବଞ୍ଚାଅ ଭାଇ !

ଜ୍ୟାବେଜ କୌଣସି କଥା କହିବା ପୂର୍ବରୁ ଅପରିଚିତ ବ୍ୟକ୍ତି ସଜାଗ ହୋଇ ଖଣ୍ଡିଏ କଳା ରେଶମୀ ରୁମାଲରେ ପତଙ୍ଗଟାକୁ ଝପ୍ କରି ବାନ୍ଧି ପକାଇଥିଲେ ।

—ହଠାତ୍ ବନ୍ଦୀ ପଡ଼ିଗଲା । କିଛି ମନେ କରିବେ ନାହିଁ, ମିଷ୍ଟାର ଷ୍ଟୋନ !

—ଏଁ ବନ୍ଦୀ, ବନ୍ଦୀ ପଡ଼ିଲା ! କିନ୍ତୁ ଏ ଯେ କୃପଣ ଷ୍ଟିଭେନର ଗଳା ! ମଙ୍ଗଳବାର ସକାଳେ ତ ମୁଁ ତାକୁ ସୁସ୍ଥ ଶରୀରରେ ଦେଖିଛି !

—ଦେଖନ୍ତୁ, ମିଷ୍ଟାର ଷ୍ଟୋନ··· । କଥା ଶେଷ ନ କରି ଅପରିଚିତ ବ୍ୟକ୍ତି କହିଲେ—ଶୁଣନ୍ତୁ । ସେହି ଘଣ୍ଟା କାହିଁକି ବାଜୁଛି ଜାଣନ୍ତି ?

ଜ୍ୟାବେଜ ଶୁଣିଲେ ସମଗ୍ର ଉପତ୍ୟକା ଉଚ୍ଛୁଳାଇ ଢଂ ଢଂ ଶବ୍ଦରେ ଘଣ୍ଟା ବାଜୁଛି । ତାର ମୁଖ ମଣ୍ଡଳ ଘର୍ମାକ୍ତ ହୋଇଗଲା, ଷ୍ଟିଭେନ ମରିଗଲା !

ଦୀର୍ଘ ନିଶ୍ୱାସ ପକାଇ ଅପରିଚିତ ବ୍ୟକ୍ତି କହିଲେ—ଏହିସବୁ ବହୁ କାଳର ନେଣଦେଣ ମେଣ୍ଟାଇ ଦେବାକୁ ଘୃଣା ବୋଧ ହୁଏ । ତଥାପି ଉପାୟ ଯେ ନାହିଁ ।

ସେ କଥାକୁ କାନ ନ ଦେଇ ଜ୍ୟାବେଜ ପଚାରିଲେ—ସମସ୍ତେ କଣ ଏମିତି ଚ୍ଛୋଟ ଲୋକ ? ସେହି ପତଙ୍ଗ ଭଳି ?

—ସମସ୍ତେ ? ନା, ନା, ଧରନ୍ତୁ ଡାନିୟେଲ ଓ୍ୱେବଷ୍ଟାରଙ୍କ କଥା । ସେ ଯାହା ହେବ, ତାହା ତ ପରର କଥା । କିନ୍ତୁ ଜାଣନ୍ତି ତ, ତାଙ୍କୁ ଧରିବା ବଡ଼ କଷ୍ଟ । ଯଦି କେବେ ତାଙ୍କର ଦେଖା ମିଳେ······ହସରେ ଅପରିଚିତର ଦାନ୍ତଗୁଡ଼ିକ ପୁଣି ଝକଝକ ହେବାକୁ ଲାଗିଲା ।

ଜ୍ୟାକେଜ ମିନତି କଲା—ଆପଣ ଦୟା କରି ରୁମାଲଟା ଘୁଞ୍ଚାଇ ନଅନ୍ତୁ ।

—ରୁମାଲଟା ଘୁଞ୍ଚାଇ ନେଲେ ଆଉ କଣ ହେବ ? ଆପଣଙ୍କର ତ ସମୟ ହୋଇ ଆସିଲା ।

ଜ୍ୟାକେଜ କାକୁତି ମିନତି କରିବାକୁ ଲାଗିଲା—ନା, ନା, ମୋତେ ଆଉ କିଛି ସମୟ ଦେବାକୁ ହେବ ।

ଶେଷକୁ ସେ ଆଉ ସମୟ ପାଇଲା । ଚୁକ୍ତିର ମିଆଦ ଆଉ ତିନି ବର୍ଷ ବଢ଼ିଗଲା ।

ପକ୍ଷୀ ପରି ପକ୍ଷ ବିସ୍ତାର କରି ଚାରିଟା ବର୍ଷ ଯେମିତି ଉଡ଼ିଗଲା । ଚତୁର୍ଥ ବର୍ଷର ଶେଷ କେତେ ମାସର କଥା କିଏ କେବେ ସହଜରେ ଭୁଲି ପାରିବେ ? ସେତେବେଳେ ସମଗ୍ର ଦେଶ ଭିତରେ ବିଖ୍ୟାତ ଲୋକ ହେଉଛନ୍ତି ଜ୍ୟାକେଜ ଷ୍ଟୋନ । ଲୋକମାନେ କୁହାକୋହି ହେଉଥାନ୍ତି, ତାଙ୍କୁ ଶାସନକର୍ତ୍ତା କଲେ ଠିକ୍ ହେବ । ସୁଖ ସୌଭାଗ୍ୟ ଯେମିତି ଜ୍ୟାକେଜକୁ ସୁନାରେ ଗୁଡ଼ାଇ ଦେଇଛି । ତାର ଖ୍ୟାତି ଓ ସମ୍ପତ୍ତିର କଥା ଲୋକଙ୍କ ମୁହଁରେ ଉଚ୍ଛୁଳି ପଡ଼ୁଛି ।

କିନ୍ତୁ ସେତେବେଳେ ଜ୍ୟାକେଜର ଦିନ ଓ ରାତି ପଥର ଭଳି ଭାରି ହୋଇ ଯାଇଥାଏ । ସେ ବୁଝିଲା, ସମୟ ଶେଷ ହୋଇଗଲା । ନିତି ସକାଳେ ଯେତେବେଳେ ତାର ନିଦ ଭାଙ୍ଗିଯାଏ, ସେତେବେଳେ ସେ ଭାବେ, ଆଉ ଗୋଟାଏ ରାତି ଚାଲିଗଲା । ପ୍ରତି ସନ୍ଧ୍ୟାରେ ଘନାୟମାନ ଅନ୍ଧକାର ଆଡ଼କୁ ଚାହିଁ ତାର ମନେ ପଡ଼େ, ଜୀବନର ଗୋଟାଏ ଦିନ କମିଗଲା । ଆଖି ଆଗରେ ସେ ଯେମିତି ସବୁବେଳେ ସେହି କଳା ରେଶମୀ ରୁମାଲରେ ବନ୍ଧା ହୋଇଥିବା ଷ୍ଟିଭେନକୁ ଦେଖିବାକୁ ପାଏ । ଅହରହ ତାର ଅନ୍ତରାତ୍ମାକୁ ଧରି କିଏ ଯେମିତି ମୋଡ଼ି ଦେଉଛି ।

ଅବଶେଷରେ ଯଦି ସେ ଆଉ ରହି ପାରିଲା ନାହିଁ । ସେ ଡାନିଏଲ ଓ୍ବେବଷ୍ଟାର ପାଖକୁ ଗଲା । ଡାନିଏଲ ତାର ସବୁ କଥା ଶୁଣିଲା । ପିଠି ପଛେ ହାତରେ ହାତ ଛନ୍ଦି ରଖି ଘର ଭିତରେ ପଦଚାରଣ କରୁଁ କରୁଁ ଡାନିଏଲ ଯାହା ଜାଣିବାର ସବୁ କଥା ଜାଣି ପକାଇଲା । ତାପରେ ମୁହଁରେ କୋମଳ ହସ ଫୁଟାଇ ସେ କହିଲା—ଯଦିଓ ସୁପ୍ରୀମ କୋର୍ଟର କୌଣସି ମାମଲା ଛଡ଼ା ମୁଁ ଆଜିକାଲି ଆଉ କେଉଁଠାକୁ ଯାଉ ନାହିଁ, ତଥାପି ଆପଣଙ୍କର ଏ ମାମଲାଟା ମୁଁ ହାତକୁ ନେଲି । ଆପଣ ନିଜ ହାତରେ ଜୀବନ-ତରୀର ହାଲ ଶୟତାନଙ୍କୁ ସମର୍ପଣ କରି ଦେଇଛନ୍ତି । ତାହା ହେଉ ପଛେ, ଆପଣଙ୍କର ହୋଇ ମୁଁ ଥରେ ଚେଷ୍ଟା କରି ଦେଖିବି, ସେହି ହାଲ ମୁଁ ଛଡ଼ାଇ ଆଣି ପାରୁଛି କି ନା ।

—ସତରେ ଆପଣ ଏ ମାମଲା ଲଢ଼ିବେ ?

—ହଁ, ମୋର ଅନେକ କାମ । ତଥାପି ମୋତେ ଏ ମାମଲା ଲଢ଼ିବାକୁ ହେବ । ଯଦି ନିଉ ହାମଶାୟାରର ଦୁଇ ଜଣ ଅଧିବାସୀ ଏକାଠି ମିଳି ଶୟତାନ ସହିତ ଲଢ଼ାଇ କରି ନ ପାରିବା, ତାହା-ହେଲେ ସେହି ପରାଜୟର କାଳିମା ବୋଲି ହେବା ପୂର୍ବରୁ ଏ ଦେଶ ଲୋହିତ ଭାରତୀୟମାନଙ୍କୁ ଫେରାଇ ଦେବା ଉଚିତ । କଥା ଶେଷ କରି ସେ ଜ୍ୟାବେଜର ହାତ ଧରି ଟାଣି ଦେଇ କହିଲା—ଚାଲନ୍ତୁ, ଯିବା ।

ଭୋଜନ ସାରି ସେମାନେ ରୋଷାଇ ଘରେ ଯାଇ ବସିଲେ । ସେମାନଙ୍କ ଆଗରେ ଟେବୁଲ ଉପରେ ଏକ ପାତ୍ର ରହିଲା । ଅଗ୍ନି କୁଣ୍ଡରେ ନିଆଁ ଜଳିବାକୁ ଲାଗିଲା । ସେମାନେ ପ୍ରତୀକ୍ଷା କରିବାକୁ ଲାଗିଲେ, କେତେବେଳେ ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେବ ଏବଂ ସେହି ଅପରିଚିତ ବ୍ୟକ୍ତିଟି ଆବିର୍ଭୂତ ହେବ ।

ଲୋକେ ଡାନଫୋର୍ଲ ଓ୍ୱେବଷ୍ଟାର ଓ ଏକ ପାତ୍ର ମଦ ଅପେକ୍ଷା ଆଉ କୌଣସି ଭଲ ସଙ୍ଗୀ ଆଶା କରନ୍ତ ନାହିଁ । କିନ୍ତୁ ଘଡ଼ିର ଟିକ୍ ଟିକ୍ ଶବ୍ଦ ସଙ୍ଗେ ସଙ୍ଗେ ଜ୍ୟାବେଜ ମିନୁଟମାଣରୁ ମିନୁଟମାଣଠାରୁ ହୋଇ ଯିବାକୁ ଲାଗିଲା । ଅସ୍ଥିର ଚକ୍ଷୁରେ ସେ ଘଣ୍ଟା ଆଡ଼କୁ ଅନାଇବାକୁ ଲାଗିଲା ଏବଂ ପାତ୍ରରୁ ମଦ ଢ଼ାଳି ବାରମ୍ବାର ପାନ କରିବାକୁ ଲାଗିଲା । ମଦ ତାକୁ ଅତ୍ୟନ୍ତ ବିସ୍ୱାଦ ବୋଧ ହେଲା । ଘରର ହାଓ୍ୱା ବି ତାକୁ ଗରମ ଜଣାଗଲା । ଅବଶେଷରେ ଢଂ ହୋଇ ଯେତେବେଳେ ଘଣ୍ଟା ସାଢ଼େ ଏଗାରଟା ବାଜିଲା, ସେହି ଶବ୍ଦରେ ଚିତ୍କାର କରି ସେ ଦୁଇ ହାତରେ ଡାନଫୋର୍ଲ ଓ୍ୱେବ-ଷ୍ଟାରକୁ କୁଣ୍ଢାଇ ପକାଇଲା । ତାପରେ ସେ ଅକସ୍ମାତ୍ କାକୁତି ମିନତି କରିବାକୁ ଲାଗିଲା ଏବଂ ସେଠାରୁ ପଳାଇଯିବା ପାଇଁ ବାରମ୍ବାର ଡାନଫୋର୍ଲକୁ କହିବାକୁ ଲାଗିଲା ।

ଡାନଫୋର୍ଲ ଶାନ୍ତ ଚକ୍ଷୁରେ ଏହି ଉନ୍ମତ୍ତତା ଦେଖିଲା । ଅଗ୍ନି କୁଣ୍ଡର ଉଜ୍ଜ୍ୱଳ ଆଲୋକରେ ସ୍ପଷ୍ଟ ଜଣାଗଲା, ଜ୍ୟାବେଜ ଏକବାରେ ବିବର୍ଣ୍ଣ ହୋଇ ଯାଇଛି ଏବଂ ତାର ସର୍ବାଙ୍ଗ ଥରଥର ହୋଇ କମ୍ପୁଛି ।

ଡାନଫୋର୍ଲ ତାର କାନ୍ଧକୁ ଧରି ଥରେ ହଲାଇଦେଲା ଏବଂ କହିଲା—ଷ୍ଟୋନ, ଆପଣଙ୍କ ମନଟା ସତରେ ଖୁବ୍ ଭଲ ; ମାତ୍ର କଥା କଣ ଜାଣନ୍ତି, ଆଗରେ ଟେବୁଲ ଉପରେ ଅଧା ମଦର ଗ୍ଲାସ୍ ରହିଛି ତ ଏଣେ ହାତରେ ଅଧା ମାମଲା ରହିଛି । ଆଜି ଯାଏ ମୁଁ ଅଧା ମଦର ପାତ୍ର ଓ ଅଧା ମାମଲା ଶେଷ କରିବାକୁ ବାକି ରଖି ନାହିଁ ।

ଡାନଫୋର୍ଲର କଥା ଶେଷ ହେଉ ନ ହେଉଣୁ ଦରଜା ଉପରେ ଆଙ୍ଗୁଳିର ସଜୋର ଆଘାତ ହେଲା ।

ଡାନପୋର୍ଟ ଘଡ଼ିଟା ଆଡ଼କୁ ଥରେ ଚାହିଁଲା ଏବଂ ତା'ପରେ ନିର୍ଲିପ୍ତ କଣ୍ଠରେ କହିଲା—"ଷ୍ଟୋନ, ଆପଣଙ୍କ ଘଡ଼ିଟା ଟିକିଏ ଧୀର ଅଛି।" କଥା କହୁଁ କହୁଁ ସେ ଉଠି ଯାଇ ଦୁଆର ଖୋଲି କହିଲା—"ଆସନ୍ତୁ !"

ଜଣେ ଅପରିଚିତ ବ୍ୟକ୍ତି ପ୍ରବେଶ କଲା। ଅଗ୍ନି କୁଣ୍ଡର ଆଲୋକରେ ସେ ଜଣେ ଘୋର କୃଷ୍ଣ ବର୍ଣ୍ଣ ଓ ଦୀର୍ଘକାୟ ବ୍ୟକ୍ତି ବୋଲି ମନେ ହେଲା। ତାର କାଖ ତଳେ କଳା ରେଶମୀ ରୁମାଲରେ ଆବୃତ ଗୋଟିଏ ବାକ୍‌ସ ରହିଥିଲା। ସେହି ଆଡ଼କୁ ଅନାଇ ଜ୍ୟାବେଜ ଅସ୍ଫୁଟ କଣ୍ଠରେ ଚିତ୍କାର କରି ଉଠିଲା।

ଅପରିଚିତ ବ୍ୟକ୍ତି କହିଲା—ଯଦି ମୁଁ କହେ, ଆପଣ ହେଉଛନ୍ତି ମିଷ୍ଟାର ଓ୍ୱେବଷ୍ଟାର, ମୋର ବୋଧହୁଏ କିଛି ଭୁଲ୍ ହେବ ନାହିଁ। ସେ ଅତି ଭଦ୍ର ଭାବରେ କଥାଗୁଡ଼ିକ କହିଲା। କିନ୍ତୁ ତାର ଚକ୍ଷୁ ଦୁଇଟି ଗହନ ବନର କୋକିଶିଆଳିର ଚକ୍ଷୁ ଭଳି ପ୍ରଦୀପ୍ତ ଦେଖାଗଲା।

ଅପରିଚିତର ଚକ୍ଷୁ ଆଡ଼କୁ ଚାହିଁ ଡାନପୋର୍ଟର ଚକ୍ଷୁ ବି ଉଜ୍ଜ୍ୱଳ, ଦୀପ୍ତ, ଜ୍ୟୋତିର୍ମୟ ହୋଇଗଲା। ସେ ଗମ୍ଭୀର ଗଳାରେ କହିଲା—ଜ୍ୟାବେଜ ଷ୍ଟୋନଙ୍କର ଓକିଲ ମୁଁ। ଆପଣଙ୍କ ନାମ କଣ ଦୟା କରି ଜଣାଇବେ କି ?

ଅପରିଚିତ ବ୍ୟକ୍ତିଟି ନାକ ବଙ୍କାଇଲା ଏବଂ ତା'ପରେ କହିଲା—ମୋର ନାମ···ମୋର ଅନେକ ନାମ ଅଛି। ତେବେ ଆଜିକା ମାମଲାରେ ମୋତେ ସ୍କ୍ର୍ୟାଚ ବୋଲି ଜାଣିବେ।

କଥା ଶେଷ କରି ଗୋଟିଏ ଷ୍ଟୁଲରେ ବସି ପଡ଼ି ସେ ମଦ ପାତ୍ରଟି ତା ଆଡ଼କୁ ଟାଣି ନେଲା। ଗ୍ଲାସରେ ମଦ ଢାଳି ସେ ଟିକିଏ

ଟିକିଏ କରି ପାନ କରିବାକୁ ଲାଗିଲା । ଡାନସ୍ପେଲ ସବିସ୍ମୟରେ ଲକ୍ଷି ଦେଖିଲା, ଅଣ୍ଡା ମଦରୁ ଗରମ ଧୂଆଁ ବାହାରୁଛି ।

ସେହି ଗରମ ମଦ ଟିକିଏ ପିଇ ଦେଇ ମିଷ୍ଟର ସ୍କ୍ୟାଚ କହିଲା—ଆପଣ ତ ଏକ୍ଷଣି ଜଣେ ଆଇନଜ୍ଞ ନାଗରିକ । ଆପଣଙ୍କ ନିକଟରେ ମୋର ପ୍ରାର୍ଥନା, ମୋ ସମ୍ପତ୍ତିର ଆଇନଗତ ଦଖଲ ନେବାରେ ମୋତେ ଟିକିଏ ସାହାଯ୍ୟ କରନ୍ତୁ ।

ଡାନସ୍ପେଲ ତା କଥାର ଜବାବ ଦେଲା—ଯଦି ସତରେ ଆପଣଙ୍କ ସମ୍ପତ୍ତି ହୁଏ, ତାହାହେଲେ ତ ମୁଁ ନିଶ୍ଚୟ ସାହାଯ୍ୟ କରିବି । ତା ନ ହେଲେ ମୋତେ ଆପଣଙ୍କ ବିରୁଦ୍ଧରେ ଯିବାକୁ ପଡ଼ିବ । ତର୍କ ବିତର୍କ ଆରମ୍ଭ ହେଲା । ଉତ୍ତର ଆଦାନ ପ୍ରଦାନର ଢଙ୍ଗ କ୍ରମେ କ୍ରମେ କୁଟୀଳ ଓ ଉତ୍ତେଜନାପୂର୍ଣ୍ଣ ହେବାକୁ ଲଗିଲା । କିନ୍ତୁ ଶେଷ ଅବଧି ଜଣାଗଲା, ଡାନସ୍ପେଲ ଓଟସ୍ପୁବଷ୍ଟାର ସବୁ କଥାରେ ହାରି ଯାଇଛି ଏବଂ ମିଷ୍ଟର ସ୍କ୍ୟାଚ ତାକୁ ଗୋଟାଏ କୋଣକୁ ଠେଲି ନେଇ ଯାଇଛି । ଯେତେବେଳେ ଯୁକ୍ତିର ଅସ୍ତ୍ର ଅକାମୀ ହୋଇଗଲା, ଡାନସ୍ପେଲର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ସେ ଜଣେ ଶକ୍ତ ଲୋକର ହାବୁଡ଼ରେ ପଡ଼ିଛି । ଏପରି ପ୍ରତିଦ୍ୱନ୍ଦୀ ସେ ଆଗରୁ କେବେ ହେଲେ ଦେଖି ନାହିଁ ।

ତର୍କ ବନ୍ଦ ହେଲା । ମିଷ୍ଟର ସ୍କ୍ୟାଚ ଆକାଶ ଆଡ଼କୁ ଲକ୍ଷି ଗୋଟାଏ ଢୋଟ ହାଇ ମାରିଲା ଏବଂ ମଦ ପାତ୍ରରେ ଟିକିଏ ଓଠ ଲଗାଇଲା । ତାପରେ ଡାନସ୍ପେଲର ମୁହଁକୁ ଅନାଇ ସେ କହିଲା—ମହକଲ ପାଇଁ ଯଥେଷ୍ଟ କରିଛନ୍ତି, ମିଷ୍ଟର ଓଟସ୍ପୁବଷ୍ଟାର ! ମୁଁ ଏବେ କାମ କରି ପାରିଥାନ୍ତି କି ନା ସନ୍ଦେହ । ନୂଆ କିଛି ଯୁକ୍ତି ଥିଲେ ପ୍ରକାଶ କରନ୍ତୁ । ଆଉ ସମୟ ନଷ୍ଟ କରି କି ଲାଭ ?

ଡାନଫ୍ରେଲ୍ ଜୋର ଦେଇ କହିଲା—ଅଛି, ଯଥେଷ୍ଟ ଅଛି । ଏହି ଭଦ୍ରଲୋକ ମୋର ମହକିଲ, ମିଷ୍ଟାର ଷ୍ଟୋନ ହେଉଛନ୍ତି ଜଣେ ମାର୍କିନ ନାଗରିକ । କୌଣସି ବିଦେଶୀ ରଜା ରଜୁଡ଼ାଙ୍କର ପ୍ରଜା ହେବାକୁ ସେ ବାଧ୍ୟ ନୁହନ୍ତି । ଏହି କାରଣ ହେତୁ ୧୯୧୨ ମସିହାରେ ଆମ ସହିତ ଇଂଲଣ୍ଡର ଯୁଦ୍ଧ ସଂଘଟିତ ହୋଇଥିଲା ଏବଂ ଯଦି ଆଜ ପୁଣି ଦରକାର ହୁଏ, ତାହାହେଲେ ନରକକୁ ଗଲେ ସୁଦ୍ଧା ଆମେ ପୁଣି ଏହି କାରଣ ଯୋଗୁଁ ଲଢ଼ାଇ ଆରମ୍ଭ କରିଦେବୁ ।

ବିଦେଶୀ ? କିଏ କହିବ, ମୁଁ ବିଦେଶୀ ?—ମିଷ୍ଟାର ସ୍କ୍ରାଚର କଣ୍ଠରେ ଗମ୍ଭୀର ବିସ୍ମୟ । ବିସ୍ମୟର ଧୂଆଁ କଟିଗଲା । ମିଷ୍ଟାର ସ୍କ୍ରାଚ ଗୋଟାଏ ଭୟାବହ ହସ ହସି କହିଲା—ଏ ଦେଶ ଉପରେ ମୋ ଠାରୁ କାହାର ବେଶୀ ଅଧିକାରର ଦାବୀ ନାହିଁ । ଯେତେବେଳେ ଲୋହିତ ହରିଣାଙ୍ଗମାନଙ୍କ ଉପରେ ପ୍ରଥମ ଅତ୍ୟାଚାର ହେଲା, ସେ ଅନୁଷ୍ଠାନରେ ମୁଁ ଥିଲି । ଯେତେବେଳେ ପ୍ରଥମ ଦାସ-ବ୍ୟବସାୟୀ ଜାହାଜରେ ପାଲ ଉଡ଼ିଲା, ସେହି ଜାହାଜର ଡେକ୍‌ରେ ମୁଁ ଥିଲି । ପ୍ରଥମ ଉପନିବେଶ ସ୍ଥାପନ ବେଳେ ଲୋକେ କଣ ନିତି ସନ୍ଧ୍ୟାରେ ମୋ ନାମ ଧରୁ ନ ଥିଲେ ? ଗୀର୍ଜାର ପାଦ୍ରୀ ଓ ଲେଖକ କଣ ପୁସ୍ତକରେ ମୋ ନାମ ଉଲ୍ଲେଖ କରି ନାହାନ୍ତି ? ଆଜକାଲି ଦକ୍ଷିଣ ଅଞ୍ଚଳର ଲୋକେ ମୋତେ 'ଉତ୍ତରୀ' ଓ ଉତ୍ତର ଅଞ୍ଚଳର ଲୋକେ ମୋତେ 'ଦକ୍ଷିଣୀ' ବୋଲି କହୁ ନାହାନ୍ତି କି ? ଆପଣଙ୍କ ପରି ମୁଁ ବି ଜଣେ ନାଗରିକ, ପ୍ରାଚୀନ ବିଖ୍ୟାତ ବଂଶଜାତ । ସତ କଥା କହିବାକୁ ଗଲେ, ଏ ଦେଶରେ ଆପଣଙ୍କ ଠାରୁ ମୋର ଖ୍ୟାତି ସୁପ୍ରତିଷ୍ଠିତ ।

ମିଷ୍ଟାର ସ୍କ୍ୟାଟ ଅତି କଠିନ ସତ୍ୟ କଥା କହିଛନ୍ତି । ଜାନପ୍ଲେଲର କପାଳର ଶିର ଫୁଲି ଉଠିଲା । ସେ ଏଥର ଶେଷ ଅସ୍ତ୍ର ଛାଡ଼ିଲା । ସେ କହିଲା—ଆପଣଙ୍କ ତର୍କ ଶୁଣି ମୁଁ ଖୁସି ହେଲି । ମାନବ ଶାସନ ବିଧାନର ନିୟମ ଅନୁଯାୟୀ ମୁଁ ଚାହେଁ, ପ୍ରକାଶ୍ୟ ଅଦାଲତରେ ମୋ ମକଦ୍ଦମାର ବିଚାର ହେଉ ।

ମିଷ୍ଟାର ସ୍କ୍ୟାଟର ଚକ୍ଷୁରୁ ଅଗ୍ନି ସ୍ଫୁଲିଙ୍ଗ ନିର୍ଗତ ହେଲା । ଦାନ୍ତରେ ଦାନ୍ତ ଘଷି ସେ କହିଲା—ପ୍ରକାଶ୍ୟ ଅଦାଲତ ! ବେଶ୍ !

—ହଁ, ପ୍ରକାଶ୍ୟ ଅଦାଲତ, ମାର୍କିନ ଜୁରି ଓ ମାର୍କିନ ବିଚାରକଙ୍କୁ ନେଇ ସଂଗଠିତ । ବିନା ତର୍କବାଦରେ ସେମାନଙ୍କର ରାୟ ମୁଁ ଗ୍ରହଣ କରିନେବି ।

ହେଉ, ଆପଣଙ୍କ କଥା ଥାଉ—ମିଷ୍ଟାର ସ୍କ୍ୟାଟ ଦରଜା ଆଡ଼କୁ ଆଙ୍ଗୁଳି ଦେଖାଇଲା । ଅକସ୍ମାତ ବାହାରେ ପବନର ପ୍ରଚଣ୍ଡ ଶବ୍ଦ ଶୁଭିଲା । ମନେ ହେଲା, ଅସଂଖ୍ୟ ପଦକ୍ଷେପ ପକାଇ ଯେମିତି କେଉଁମାନେ ଆସୁଛନ୍ତି । ରାତିର ଗାଢ଼ ଅନ୍ଧକାରରେ ପରିଷ୍କାର ଭାବରେ ପଦ-ଧ୍ୱନି ଶୁଣାଗଲା । କିନ୍ତୁ ସେହି ଲଘୁ ପଦ ଶବ୍ଦ ମଣିଷର ନୁହେଁ । ସେହି ପଦ ଶବ୍ଦ ଯେ କି ଭଳି ଅମାନୁଷିକ, ତାହା ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ ।

ଜ୍ୟାବେଜ କମ୍ପିବାକୁ ଲାଗିଲା । ସେ ଭଙ୍ଗା ଗଳାରେ କହିଲା—କିଏ, କିଏ ଏମାନେ ? ଏହି ରାତିରେ ଆସୁଛନ୍ତି ?

ମଦ ପାତ୍ରରେ ଶେଷ ଥର ପାଇଁ ଓଠ ଲଗାଇ ମିଷ୍ଟାର ସ୍କ୍ୟାଟ କହିଲା—ଏମାନେ ହେଉଛନ୍ତି ମିଷ୍ଟାର ଓ୍ୱେବଷ୍ଟାରଙ୍କ ପ୍ରାର୍ଥିତ ଜୁରି ।

ତାର କଥା ଶେଷ ହେବା ସଙ୍ଗେ ସଙ୍ଗେ ଖୋଲା ଦରଜା ବାଟେ ପ୍ରବଳ ପବନ ବେଗରେ ବାର ଜଣ ଲୋକ ଜଣ ଜଣ

ହୋଇ ଘର ଭିତରକୁ ପଶି ଆସିଲେ । ଅଗ୍ନିକୁଣ୍ଡର ନିଆଁର ରଙ୍ଗ ତତ୍‌କ୍ଷଣାତ୍ ବଦଳିଗଲା । ରକ୍ତାକ୍ତ ଶିଖା ମାଳାଗ୍ରରେ ପରିଣତ ହେଲା ଏବଂ କୁହୁଡ଼ି ଭଳି ପଡ଼ଲା ଅନ୍ଧକାରରେ ଘର ପୂରିଗଲା ।

ଜ୍ୟାବେଜ ସେତେବେଳକୁ ଭୟରେ ଦରମରା ହୋଇ ଯାଇଥିଲା । ଏକ୍ଷଣି ତାର ଖାଲି ମରିବାକୁ ବାକି ରହିଲା । ବିପ୍ଳବ ବେଳେ ମନୁଷ୍ୟଙ୍କ ଉପଦ୍ରବୀଙ୍କାରେ ଅଗ୍ନି ଶିଖା ଓ ନୃଶଂସତା ଜାଗରଣର ନାୟକ ରାଜଧର୍ମୀ ଓୟାଲଟାର ବାଟଲାର ଓ ଦଳ ପରିତ୍ୟାଗକାରୀ ସାଇମନ୍ ଗର୍ଟି, ଯେଉଁମାନେ ଲୋହିତ ଘରଶତ୍ରୁଙ୍କ ସହିତ ମିଶି ଶ୍ୱେତାଙ୍ଗମାନଙ୍କୁ ଜଳନ୍ତା ନିଆଁରେ ଜଅନ୍ତା ପୋଡ଼ି ଦେଉଥିଲେ ଏବଂ ଆନନ୍ଦରେ ଚିତ୍କାର କରୁଥିଲେ, ସେହି ଦୁଇ ଜଣ ଏହି ଦଳଟି ପରିଚାଳନା କରୁଥିଲେ । ସାଇମନ୍ ଗର୍ଟିର ଆଖି ବନ୍ୟ ବିରାଡ଼ିର ଆଖି ପରି ସବୁଜ ଏବଂ ତାର କାମିଜରେ ମଣିଷ ରକ୍ତର ଦାଗ ଝଟକୁଛି, ଯେମିତି ବର୍ତ୍ତମାନ ଲାଗିଛି । ଏମାନଙ୍କ ଉପରେ ଥିଲେ ରାଜା ଫିଲିପ ଓ ନର୍ଦ୍ଦୁ ଶାସନକର୍ତ୍ତା ଡେଲ । ଡେଲର କାମ ଥିଲା ଲୋକ ପାଇଲା ମାତ୍ରେ କୌଣସି ବିଚାର ନ କରି ଗାଡ଼ିର ଚକ ତଳେ ତାକୁ ପେଶି ମାରି-ଦେବା । ଆଉ ରାଜା ଫିଲିପ ଅନବରତ ଘୂରିଆଡ଼କୁ ଆଖି ବୁଲାଉଥିଲେ, ଯଦି କାହାରି ଉପରେ ତାଙ୍କ ହାତରେ ବନ୍ଧୁକ ପାହାର ବସି ଯାଇପାରେ । ଏହି ଗୁରି ଜଣଙ୍କ ପଛରେ ଥିଲା ଧାର୍ମିକମାନଙ୍କ ଉପରେ ଅତ୍ୟାଚାର-ଲୋଲୁପ ପ୍ଲାଇମାଉଥ ଉପନିବେଶ ପୀଡ଼ନକାରୀ ମେରିମଣ୍ଟର ମର୍ଟନ୍ । ତା ପରେ ଥିଲା ଦୁର୍ଦ୍ଧର୍ଷ ରକ୍ତପାୟୀ ଦସ୍ୟୁ ଟିଚ୍ । ଏହା ପରେ ଆସିଲା ରେଭରେଣ୍ଡ ଜନ ସ୍ମିଥ । ତାର ମଣିଷର ଗଳା ଟିପି ମାରିବା ହାତ ଓ ଜେନେରା ଆଲଖାଲ ପିନ୍ଧି ସେ ଯେମିତି ନର୍ଦ୍ଦଙ୍କ ପଦକ୍ଷେପରେ ଫାଶି ମଞ୍ଚରେ

ଆବେଦନ କରିଥିଲା, ଠିକ୍ ସେହି ଲଘୁତା ସଂରକ୍ଷଣ କରି ସେ ଆସିଲା । ଫାଶୀ ଦଉଡ଼ିର ଦାଗ ତାର ଗଳାରେ ଦୃଶ୍ୟ, କିନ୍ତୁ ବାମ ହାତରେ ଧରିଛି ସେ ଖଣ୍ଡିଏ ସୁଗନ୍ଧ ରୁମାଲ । ଏହାପରେ ଭୀଡ଼ରେ ଅଙ୍ଗରୁ ନରକାଗ୍ନି ବିଚ୍ଛୁରିତ କରି କରି ସେହି ବାର ଜଣ ଯାକ ଜଣ ଜଣ ହୋଇ ଆସି ପହଞ୍ଚିଗଲେ ।

ସେମାନଙ୍କର ପରିଚୟ ଦେଇ ମିଷ୍ଟାର ସ୍କ୍ରାଚ କହିଲା— ଏମାନେ ଯେ ମାର୍କିନ ନାଗରିକ ଏ ବିଷୟରେ ଆପଣଙ୍କର କୌଣସି ସନ୍ଦେହ ଅଛି, ମିଷ୍ଟାର ଓ୍ୱେବଷ୍ଟାର ?

—ନା ।

—ବେଶ୍ । ଅତୀତ ମାସେରେ କେତେଗୁଡ଼ିଏ ବାଳକାଙ୍କୁ ଡାହାଣୀ ବୋଲି ଦୋଷାରୋପ କରି ପୋଡ଼ି ମାରି ଦିଆ ହୋଇଥିଲା । ସେହି ବିଚାରରେ ରାୟ ଦେଇଥିଲେ ବିଚାରପତି ହ୍ୟାଥୋର୍ନ ଏବଂ ସେଥିପାଇଁ ସେହି ଅଦାଲତରେ ଜୁରୀମାନେ ଅନୁତପ୍ତ ହେଲେ ସୁଦ୍ଧା ବିଚାରପତି ହ୍ୟାଥୋର୍ନ କଦାପି ଅନୁତାପ କରି ନ ଥିଲେ ।

ଅନୁତାପ ! କେଉଁଥି ପାଇଁ ଅନୁତାପ ! ଏମିତି ବିଚାରରେ ଯେ ଜୁରୀ ନ ହୁଏ ତାକୁ ଫାଶି ଦେବା ଉଚିତ—ନବାଗନ୍ତୁକ ବିଚାରପତି ହ୍ୟାଥୋର୍ନ ନିଷ୍ଠୁର ଚକ୍ଷୁରେ ଗୃହଆଡ଼କୁ ଚାହିଁ ବିଚାରକର ଆସନ ଗ୍ରହଣ କଲେ ।

ବିଚାର ଆରମ୍ଭ ହେଲା । ଡାନିଏଲ ଓ୍ୱେବଷ୍ଟାର ତା ଜୀବନରେ ବହୁ ନନ୍ଦିତ ଜୁରୀ ଓ ଅତ୍ୟାଚାର-ଲୋଲୁପ ବିଚାରକର ଅଦାଲତରେ ମାମଲା ଚଳାଇଛି । କିନ୍ତୁ କେଉଁଠି ହେଲେ ଏମିତି ହୁଏ ନାହିଁ । ଅଦାଲତରେ ପ୍ରତ୍ୟେକ ଯୁଗଳ ଚକ୍ଷୁରୁ ଯେମିତି ନିଆଁ ନିର୍ଗତ ହେଉଥିଲା । ମିଷ୍ଟାର ସ୍କ୍ରାଚର ପ୍ରତ୍ୟେକ ଆବେଦନ

ଅଦାଲତ ମଞ୍ଜୁର କଲା, ଆଉ ଡାନପ୍ଲେଲର ଆବେଦନଗୁଡ଼ିକ ନାମଞ୍ଜୁର ହୋଇଗଲା ।

ଯେତେବେଳେ ଶୁଣାଣୀ ଉପସଂହାରରେ ଆସି ପହଞ୍ଚିଲା, ସେତେବେଳେ ଡାନପ୍ଲେଲ କ୍ରୋଧରେ ଆତ୍ମହରା ହୋଇ ଭାବିଲେ, ଆଇନର ଅପବ୍ୟବହାର ଲାଗି ସେ ଅଦାଲତକୁ ଥରେ ମନ ଇଚ୍ଛା ଗାଳି ଦେବେ । ସେଥିପାଇଁ ଯଦି ତାର ଶାସ୍ତି ହୁଏ ତ ହେଉ ।

ସୱାଲ ଜବାବ ପାଇଁ ଡାନପ୍ଲେଲ ଓଏ୍ଲେବଷ୍ଟାର ଉଠି ଠିଆ ହେଲା । ଅଙ୍ଗାର ପରି ତାର ଆଖି ଜଳୁଥିଲା । କଥା ଆରମ୍ଭ କରିବା ଆଗରୁ ସେ ଥରେ ଜୁରିଆଡ଼କୁ ଚାହିଁଲା । ସେ ଦେଖିଲା, ସ୍କ୍ରାଚ ଓ ଜୁରିମାନେ ଆଗ୍ରହରେ ତା ଆଡ଼କୁ ଶିକାରୀ କୁକୁର ପରି ଚାହିଁ ରହିଛନ୍ତି, ଆଉ ଏଣେ ଘରର ମାଳାଭ ଅନ୍ଧକାର ଘନତର ହୋଇ ଆସୁଥାଏ । ନେତ୍ରବନ୍ଧତା ଯେମିତି ଅଗାଧ ଅତଳ ସ୍ପର୍ଶୀ ହୋଇ ଯାଇଛି ।

ଡାନପ୍ଲେଲ ଟିକିଏ ଅଟକି ଗଲା । ତାପରେ ଦ୍ରୁତ ହାତରେ ସେ କପାଳର ଝାଳ ପୋଛିବାକୁ ଲାଗିଲା । ଉଃ ! କି ସର୍ବନାଶର ହାତରୁ ସେ ପରିତ୍ରାଣ ପାଇଛି । ଏହି ଅଦାଲତ ଆଜି ଡାନପ୍ଲେଲ ଓଏ୍ଲେବଷ୍ଟାର ପାଇଁ ବସିଛି, ମାତ୍ର ଜ୍ୟାବେଜ ଷ୍ଟୋନ ପାଇଁ ନୁହେଁ । ଯେଉଁ କ୍ରୋଧ ଓ ଘୃଣା ଅଦାଲତ ଆଇନର ଅପବ୍ୟବହାର କରେ, ତାହା ତାର ହୃଦୟରେ ଘନୀଭୂତ ହୋଇଛି । ଯଦି ସେଥିରେ ସେ ଆତ୍ମହରା ହୋଇ ଗାଳି ଗୁଲଜ ଦେବାକୁ ଆରମ୍ଭ କରିଥାନ୍ତା, ତାହାହେଲେ ସେ ମାମଲାରେ ହାରି ଯାଇ ଥାଆନ୍ତା । ଆଉ ଏସବୁ ମାମଲାରେ ତ ଦରଜସ୍ତ ଘଟେ ।

କପାଳରୁ ଝାଳ ପୋଛୁ ପୋଛୁ ଡାନସ୍ୱେଲ ଠିକ୍ କଲା, ଅଦାଲତର ଅସ୍ତ୍ରରେ ଅଦାଲତକୁ ପରାଭୂତ କରିବାକୁ ହେବ । ତା ହେଲେ ହୁଏତ ଜ୍ୟାକେଜ ବଞ୍ଚିବ ।

ସେ ଧୀରେ ଧୀରେ କଥା କହିବାକୁ ଆରମ୍ଭ କଲା । ଚିତ୍କାର, ବିଦ୍ୱେଷ କମ୍ବା ଜ୍ୱାଳା ତା କଥାରେ ନ ଥିଲା । ନିଜ ଘରର ଟିକ-ନିଖ କଥା ସେ ଯେମିତି କହୁଛି । କୃଷୀ ଯେମିତ କୃଷ ଆବାଦର କଥା କହେ, ଧର୍ମ ଯାଜକ ଯେମିତ ଗୀର୍ଜାରେ ଭଗବାନଙ୍କ କଥା ଆଲୋଚନା କରେ, ଠିକ୍ ସେମିତି ।

ସେ ମଣିଷର କଥା କହୁଥିଲା । ମଣିଷ ମୁହଁରେ ହସେ । ଶାନ୍ତିରେ ତାର ପ୍ରାଣର ବୀଣା ଝଙ୍କୃତ ହୋଇ ଉଠେ । ରାତିର ତମିର ଅବଗୁଣ୍ଠନ ଉନ୍ମୋଚନ କରି ଯେତେବେଳେ ଲାସ୍ୟମୟୀ ଉଷା ଆସେ, ଅରୁଣାଲୋକର ରକ୍ତାଭ ସ୍ପର୍ଶ ଯେତେବେଳେ ଦିଗ୍ବଳୟରେ ମୁଠିଏ ମୁଠିଏ ହି ଗୁଣ୍ଡ ହୋଇଯାଏ, ସେତେବେଳେ ନୂତନ ସୂର୍ଯ୍ୟ ବିକୀରିତ ଦୀପ୍ତ ମୁକୁଟ ପିନ୍ଧି ମଣିଷ କଣ ଅନନ୍ତ କାଳ ଧରି ଏହି ବସୁନ୍ଧରାର କୋଳ ସ୍ଥଳରେ ବଞ୍ଚି ରହିବାକୁ ଚାହେ ନା ! ଏହି ବସୁନ୍ଧରାର ବକ୍ଷ ଭେଦ କରି ଯେଉଁ ସବୁଜ କମଳ ପ୍ରସ୍ଫୁଟିତ ହୁଏ, ତାର ଅଙ୍କରେ ପ୍ରତ୍ୟହ ନବ ଜାତକ ମାନବ ଶିଶୁ ଯେତେବେଳେ କ୍ଷୁଧା ନିବୃତ୍ତି କରେ, ସେତେବେଳେ ସେ ବାରମ୍ବାର କଣ ମନେ କରେ ନା ଯେ ଏହି ସ୍ନେହମୟୀର ବକ୍ଷରେ ସେ ଚିର ଦିନ ଏମିତି ଅବସ୍ଥାରେ ଥାଉ ଏବଂ କ୍ଷୁଧାର ନିବୃତ୍ତି ତାର ଏପରି ଭାବରେ ହେଉଥାଉ ! ମାନବର ନବ ପ୍ରଭାତରେ ଏହି ନବ ଜୀବନ ଲାଭ, ସୁଖରେ ହସ, ଶାନ୍ତିରେ ପରମାନନ୍ଦରେ ସୁପ୍ତ ହେବା ଭିତରେ ଯେଉଁ ଅପୂର୍ବତା ଅଛି, ତାହା କଣ କେବେ ବିସ୍ମୃତ ହୋଇଯାଇ ପାରେ ? କିନ୍ତୁ ଏମିତି ସୁଖର ଦିନ ବି କ୍ରନ୍ଦନରେ କଳା ହୋଇ-

ଯାଏ – ଯେତେବେଳେ ସ୍ୱାଧୀନତା ନ ଥାଏ, ସେତେବେଳେ ଜୀବନର ସ୍ପନ୍ଦନ ବି ଗତିହୀନ ।

ଡାନିଏଲ ଟିକିଏ ରହିଲା । ଗଳାର ସ୍ୱର ସେ ସାମାନ୍ୟ ପରିବର୍ତ୍ତନ କଲା ଏବଂ ତାପରେ ଭଙ୍ଗା ଗଳାରେ କହି ଚାଲିଲା, ସେହିସବୁ ବିଗତ ଦିନର କଥା । ସେହି ଅତୀତରେ ଯେବେ ଆମେରିକାରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା; ସେ ଦିନ ପବନ ଥିଲା ଦୀର୍ଘ ନିଶ୍ୱାସରେ ମନ୍ଥର, ନୟନର ନୀରରେ କୁହୁଡ଼ିଶାଚ୍ଛନ୍ନ ଥିଲା ଆକାଶ । କିନ୍ତୁ ସେସବୁ ଦିନ ଚାଲି ଯାଇଛି । ଅତୀତର ସେହି କାଳିମା ଲିପ୍ତ ଆମେରିକା ଆଜି କଣ ଆଉ ଅଛି ? ମଣିଷ, ମଣିଷ ହିଁ ନିଜ ଅନ୍ତରର ଦରଦରେ ସେହି ଦିନଗୁଡ଼ିକୁ, ଦୁଃଖ ବିଜଡ଼ିତ ମ୍ଳାନ ଛବିଗୁଡ଼ିକୁ ପୋଛି ଦେଇଛି । ମଣିଷ ତା ନିଜ ହାତରେ ସେଇ ଦିନ ସକଳ ଅନ୍ୟାୟର ପ୍ରତିକାର କରିଛି । ଚକ୍ଷୁର ଜଳ, ଅନଶନର ନିପୀଡ଼ନ ଓ ଅତ୍ୟାଚାରର ଦାମ୍ଭିକତା ମଣିଷ ହିଁ ସଂଶୋଧନ କରିଛି । ଯେତେବେଳେ ଦୁର୍ଦ୍ଦିନର କଳା ମେଘ ଅପସାରିତ ହୋଇଛି, ସେତେବେଳେ ସୁଦିନର ସ୍ୱର୍ଣ୍ଣାଲୋକ ମଣିଷର ଆଖି ଆଗରେ ଝଲସି ଉଠିଛି । ଯେଉଁମାନଙ୍କୁ ଆମେ ଅତ୍ୟାଚାରୀ, ଦେଶଦ୍ରୋହୀ ବୋଲି କହୁଁ, ସେମାନେ ବି ମଣିଷର ଏହିସବୁ ସୁଖ ଦୁଃଖର ଦିନରେ କିଛି ନା କିଛି ଅଂଶ ଗ୍ରହଣ କରିଛନ୍ତି ।

ଡାନିଏଲ ଆଉ ଥରେ ରହିଗଲା । ତା'ପରେ ଜ୍ୟାବେଜକୁ ଦେଖାଇ ସେ କହିଲା—ଏ ହେଉଛି ଜଣେ ଅତି ସାଧାରଣ ଲୋକ । ଦୁର୍ଭାଗ୍ୟ ଏହାକୁ ବିପର୍ଯ୍ୟସ୍ତ କରି ପକାଇଲା । ତେଣୁ ସେ ଦିନେ ଭାବିଲା; ଯଦି ସୁଯୋଗ ମିଳେ ତେବେ ଏହି ଭାଗ୍ୟ ବିଡ଼ମ୍ବନାର ହାତରୁ ସେ ନିଜକୁ ବଞ୍ଚାଇବ । ସତରେ ସେ ନିଜକୁ ଦିନେ ବଞ୍ଚାଇଲା । ତାର ଭାଗ୍ୟ ପରିବର୍ତ୍ତିତ ହେଲା । ଏହା କେମିତି ଭାବରେ ସମ୍ଭବପର

ହେଲା, ସେ ଇତିହାସ ମୁଁ ଆଲୋଚନା କରିବାକୁ ଚାହେଁ ନାହିଁ । ମୁଁ ଖାଲି କହିବାକୁ ଚାହେଁ, ଏହି ଭାଗ୍ୟ ପରିବର୍ତ୍ତନ ପାଇଁ କି ମୂଲ୍ୟ ତାକୁ ଦେବାକୁ ନ ପଡ଼ୁଛି । ଅନନ୍ତ କାଳ, ଅନନ୍ତ ଯୁଗ ଯାଏ ତାକୁ ସେହି ଦାସତ୍ୱ ବରଣ କରିବାକୁ ପଡ଼ିବ, ଯାର ବିଲୋପ ପାଇଁ ଆମେରିକାର ମଣିଷ ପରସ୍ପରର ସହିତ ହଣାକଟା କରୁଛି ଏବଂ ରକ୍ତ ସ୍ରୋତ ବୁହାଇ ଦେଉଛି । ତାପରେ ଯେଉଁ ଦିନ ସେମାନେ ଦାସ-ମାନଙ୍କର ବନ୍ଦୀ-ଜୀବନର ଅବସାନ ଘଟାଇ ସେମାନଙ୍କୁ ମୁକ୍ତ ଦେଇ ପାରିଲେ, ସେ ଦିନ ସଗର୍ବରେ ସେମାନେ ବିଶ୍ୱର ଅଧିବାସୀ-ମାନଙ୍କୁ ଜଣାଇଲେ, ମଣିଷ ପାଇଁ ଭଲ କିଛି କରିବାକୁ ସେମାନେ ଜାଣନ୍ତି । ସେମାନେ ମଣିଷ । ସେହି କାରଣରୁ ତ ମଣିଷ ପାଇଁ ସେମାନଙ୍କ ପ୍ରାଣର ବୀଣା ମଣିଷର ସୁଖ ଦୁଃଖରେ ବାରମ୍ବାର ଅନୁରଣିତ ହୋଇ ଉଠିଛି ।

ଡାନସ୍ପେଲର କଣ୍ଠ ସ୍ୱର ଝଣ ଝଣ କରି ବାଜିବାକୁ ଲାଗିଲା । ସେହି ଶବ୍ଦ ଝଙ୍କାର ଶୁଣିଲେ ମନେ ହୁଏ, ଯେମିତି କେତେ ଦୀର୍ଘ ଦୁର୍ଗମ ପଥ ସେ ଅତିକ୍ରମ କରି ଆସିଛି । ଯେତେବେଳେ ପୃଥିବୀର ଆକାଶରେ ପ୍ରଥମ ସୂର୍ଯ୍ୟ ଉଦିତ ହୁଏ, ଯେତେବେଳେ ମଣିଷ ତାର ମନୁଷ୍ୟ ସତ୍ତାର କଥା ପ୍ରଥମେ ଜ୍ଞାତ ହୁଏ, ହସ କାନ୍ଦରେ ପ୍ରାଣବନ୍ତ ହୋଇ ଓ ସୁଖ ଦୁଃଖରେ ଆବର୍ତ୍ତିତ ହୋଇ ସେ ଯେତେବେଳେ ତାର ପ୍ରଥମ ଯାତ୍ରା ଆରମ୍ଭ କରେ, ସେହି ଦିନରୁ, ସେହି ଆଦିମତମ ଦିନରୁ ଯେମିତି ସେ ଚାଲି ଆସୁଛି—ଏକ ଦୀର୍ଘ ଦୁର୍ଗମ ଅଥଚ ବିଚିତ୍ର ପଥ ଅତିକ୍ରମ କରି ସେ ଆସୁଛି । ଆଜି ଏହି ଡାନସ୍ପେଲ୍ ଓସ୍ପେବିଷ୍ଟାର ଯେମିତି ମଣିଷର ସେହି ଅଭିଯାନର ଜୟ ଗାଥା ଗାଇବା ପାଇଁ ତାର ସ୍ୱରଣ କଣ୍ଠରେ ବୀଣାରେ ସେହି ଝଙ୍କାର ଫୁଟା-ଇଲା, ଯାହା ଚିର ଦିନ ଧରି ମଣିଷକୁ ସୁଖରେ ହସାଇଛି, ଦୁଃଖରେ

ଜନ୍ମାଇଛୁ ଏବଂ ପ୍ରେମିକର ପ୍ରେମରେ ଉଜ୍ଜ୍ୱଳ ମହାନ୍ କରି ଦେଇ ଯାଇଛୁ । ତା କଥାର ସୀମା ବାରମ୍ବାର କହିଲା, ମଣିଷ ଏହି ପଥ ଅତିକ୍ରମ କରିଛୁ । ଯେଉଁମାନେ ମଣିଷ ନୁହନ୍ତି, ଯେଉଁମାନଙ୍କୁ ଏହି ପିଚ୍ଛିଳ ଓ ପଙ୍କିଳ ପଥରେ କୌଣସି ଅଂଶ ଗ୍ରହଣ କରିବାକୁ ହୋଇ ନାହିଁ, କପରି ଭାବରେ ସେମାନେ ଏହାର ଅନ୍ତର୍ଲୀନ ରହସ୍ୟ ଜାଣି ପାରିବେ ?

ସେତେବେଳକୁ ଅଗ୍ନିକୁଣ୍ଡର ନିଆଁ ନିସ୍ତେଜ ହୋଇ ଗଲାଣି । ଘରର ମଳାଭ ଅନ୍ଧକାର ପ୍ରାୟ ଅଦୃଶ୍ୟ ହେଲାଣି । ଧୂସର ବର୍ଣ୍ଣର ଏକ ଛାୟା ଘରର ଗୋଟାଏ କୋଣରେ ଆତ୍ମଗୋପନ କରୁଛି । ଭୋରର ପବନ ଧୀରେ ଧୀରେ ଅତି ମୃଦୁ ଭାବରେ ବହୁଛି । ଭାନହ୍ୱେଲର କଥା ବି ସେତେବେଳେ ଶେଷ ହୋଇ ଯାଇଛି । ସେ ସେତେବେଳେ ନର୍ଥହାମଶାୟାରର କଥା କହୁଛି । ପ୍ରତ୍ୟେକ କଥା ପଛରେ ତାର ସେହି ଏକ ପ୍ରଚେଷ୍ଟା, ହୃଦୟର ବିଲୁପ୍ତ ଅନୁଭୂତିଗୁଡ଼ିକ ଯେଉଁଥିରେ ସଂବେଦନଶୀଳ ହୋଇଯାଏ । ତାର କଣ୍ଠ ଯେମିତି ଥରେ ନିବିଡ଼ ଅରଣ୍ୟାନୀର ଗାମ୍ଭୀର୍ଯ୍ୟରେ ପ୍ରଶାନ୍ତ ହୋଇଗଲା ଏବଂ ପର ମୁହୂର୍ତ୍ତରେ ସେହି ଗାମ୍ଭୀର୍ଯ୍ୟ ମିଳାଇ ଯାଇ ଦୂରବଗାହ ସାମୁଦ୍ରିକ କଲ୍ଲୋଳ ଉଦ୍‌ବେଳିତ ହୋଇ ଉଠିଲା । କେତେବେଳେ ମନେ ହେଲା ସେ ସର୍ବହରା ହୋଇ କାନ୍ଦୁଛି, ଆଉ କେତେବେଳେ ବୋଧଗମ୍ୟ ହେଲା ଶିଶୁର ସରଳତା ଓ କଳହାସ୍ୟରେ ସେ ଯେମିତି ଚଞ୍ଚଳ ହୋଇ ଯାଉଛି । ଅବଶେଷରେ ସେ ଯେତେବେଳେ କହିଲା, ସେତେବେଳେ ଯାଏ ସେ ଜାଣି ପାରିଲା ନାହିଁ ଯେ ସେ ଜ୍ୟାକେଜକୁ ବଞ୍ଚାଇ ପାରିଛି କି ନା, ମାତ୍ର ସେ ଦେଖିଲା ଯେ ବର୍ତ୍ତକ ଓ ଜୁଗମାନଙ୍କ ଚକ୍ଷୁରୁ ସେହି ଅସ୍ୱାଭାବିକ ଦୀପ୍ତି ବିଲୁପ୍ତ ହୋଇ ଯାଇଛି । ଆଉ ସେହି ଜାଗାରେ ମଣିଷ

ଚକ୍ଷୁର ସ୍ନିଗ୍ଧ ଆଭା ଜାଗିଛି—ସେମାନେ ପୁଣି ମଣିଷ ହୋଇ ଯାଇଛନ୍ତି ।

ସବାଲ ଜବାବ ଶେଷ ହେଲା । ଡାନସ୍ପେଲ ମାରକ । ବିଚାରପତି ହ୍ୟାଥେନ ଆଦେଶ ଦେଲେ—ଜୁରିମାନେ ମତାମତ ପ୍ରକାଶ କରିବା ପାଇଁ ଗୋପନୀୟ ଆଲୋଚନା ଲାଗି ଖାସ କାମରାକୁ ଯାଇ ପାରନ୍ତି ।

ଜୁରିମାନଙ୍କର ସଭାପତି ଓ୍ୱାଲ୍‌ଟାର ବଟଲାର ଉଠି ଠିଆ ହେଲେ । ତାଙ୍କର ସମଗ୍ର ମୁଖ ଗର୍ବ ଓ ଗାମ୍ଭୀର୍ଯ୍ୟରେ ଥମ ଥମ କରୁଥାଏ । ମିଷ୍ଟାର ସ୍କ୍ରାଚର ମୁହଁକୁ ଅନାଇ ଗମ୍ଭୀର ଗଳାରେ ସେ କହିଲେ—ଜୁରିମାନେ ମତାମତ ସ୍ଥିର କରିଛନ୍ତି । ଜ୍ୟାବେଜ ଷ୍ଟୋନ ବିରୁଦ୍ଧରେ ଏ ମାମଲା ଖାରଜ ହେଲା ।

ମିଷ୍ଟାର ସ୍କ୍ରାଚର ମୁହଁରୁ ହସର ଆଭା ମିଳାଇଗଲା । ଅଗ୍ନି-କୁଣ୍ଡ ପରିତ୍ୟାଗ କରି ନିଆଁର ମାଳାଭ ଯେମିତି ତା ମୁଖ ମଣ୍ଡଳରେ ପଡ଼ି ଉଦ୍ଦୀପ୍ତ ହୋଇଗଲା । ସେହି ମୁହଁ ଆଡ଼କୁ ଚାହିଁ ଓ୍ୱାଲଟାର ବଟଲାର ବିନ୍ଦୁ ମାତ୍ର ସଙ୍କୁଚିତ ହେଲେ ନାହିଁ । ସେ ନିର୍ଭୀକ କଣ୍ଠରେ କହି ଯିବାକୁ ଲାଗିଲେ—ହଁ, ହୁଏତ ଆଇନ ଏ କ୍ଷେତ୍ରରେ ରକ୍ଷିତ ହେଲା ନାହିଁ । ତାହା ହେଉ, କିନ୍ତୁ ମିଷ୍ଟାର ଓ୍ୱେବଷ୍ଟାର୍ ଯେଉଁ କଥା କହିଛନ୍ତି, ତାହା ଖୁବ୍ ସତ, ଖୁବ୍ ସତ । ଯେତେବେଳେ ମଣିଷ ଅନ୍ୟାୟ କରୁଛି, ସେତେବେଳେ ବି ସେ ଭାବୁଛି, ମଣିଷର ଭଲ ପାଇଁ ସେ ଏହା କରୁଛି, ଅନ୍ୟ କୌଣସି କାରଣ ପାଇଁ ନୁହେଁ । ସେଥିପାଇଁ ତାକୁ ଦୋଷୀ ସାବ୍ୟସ୍ତ କରିବା, ଶାସ୍ତି ଦେବା ? ନା, ତାହା କଦାପି ହୋଇ ନ ପାରେ ।

ଓ୍ୱାଲଟାର ବଟଲରଙ୍କ କଥା ଶେଷ ହେବା ମାତ୍ରେ ଘରର ପାଟଳ ଆକାଶଟା ପଞ୍ଝାଏ କାକର କୃଷ୍ଣ ବର୍ଣ୍ଣ ପକ୍ଷରେ ବିଚଳିତ

ହୋଇଗଲା ଏବଂ ମୁହଁଗୁଡ଼ିକ ଭିତରେ ବର୍ତ୍ତୁଳ ଓ ଜୁଗ୍ନୁମାନେ ଧୂଆଁ ଭଳି ଅନ୍ତର୍ହିତ ହୋଇଗଲେ ।

ମିଷ୍ଟାର ସ୍କ୍ୟାଚ ଡାନଫୋର୍ଡର ମୁହଁକୁ ଚାହିଁ ମ୍ଳାନ ହସ ହସି କହିଲା—ମେଜର ବର୍ଟଲାରଙ୍କୁ ମୁଁ ଜଣେ ଦୁଃସାହସୀ ବୋଲି ଜାଣିଥିଲି । କିନ୍ତୁ ତାଙ୍କ ଦୁଃସାହସର ମାତ୍ରା ଯେ ଏତେ ପର୍ଯ୍ୟନ୍ତ ଯାଇପାରେ, ମୋତେ ତାହା ଜଣା ନ ଥିଲା । ଯାହା ହେଉ, ମୋର ଅଭିବାଦନ ଗ୍ରହଣ କରନ୍ତୁ । ଆମ ଭିତରେ ଆଉ କୌଣସି ବିରୋଧ ନାହିଁ, ମିଷ୍ଟାର ଓଏ୍ୟବଷ୍ଟାର !

ସମସ୍ତ ଦଳକ ଗୋଟି ଗୋଟି ହୋଇ ବିନଷ୍ଟ କରିଗଲା । ମିଷ୍ଟାର ସ୍କ୍ୟାଚ ଯିବାକୁ ଗୋଡ଼ କାଢ଼ିଲା, ହଠାତ୍ ବିଦ୍ୟୁତ୍ ଗତିରେ ହାତ ବଢ଼ାଇ ଡାନଫୋର୍ଡ ତାର କାନ୍ଧ ଉଡ଼ି ଧରି କହିଲା—ତୁମେ ଯାଇ ପାରିବ ନାହିଁ, ମିଷ୍ଟାର ସ୍କ୍ୟାଚ !

—କାହିଁକି ? କାହିଁକି ?

—ମାମଲାରେ ତୁମେ ହାରି ଯାଇଛ । ତାର କ୍ଷତିପୂରଣ କିଏ ଦେବ ?

—କ୍ଷତିପୂରଣ ? କେଉଁଥି ପାଇଁ କ୍ଷତିପୂରଣ ?—ସ୍କ୍ୟାଚ ସନ୍ତ୍ରସ୍ତ ହୋଇ ଉଠିଲା ।

—କେଉଁଥି ପାଇଁ ତାହା ବୁଝି ପାରୁ ନାହଁ ? ବୋକା ! —ଡାନଫୋର୍ଡ ଦାନ୍ତ ଦେଖାଇଲା ଏବଂ କହିଲା—ଖଣ୍ଡିଏ ମୁଚୁଲିକା ଲେଖି ଦେଇ ଯାଅ ଯେ ଆଉ କେବେ ଜ୍ୟାବେଜ ଷ୍ଟୋନ ଅବା ଅନ୍ୟ କୌଣସି ନଡ଼ି ହାମଶାୟାର ବାସୀର ପାଖ ପଶିବ ନାହିଁ ।

—ଓ, ଏଇ କଥା ! କିନ୍ତୁ ସ୍କ୍ୟାଚ ସବିସ୍ମୟରେ କହିଲା— ଆପଣ, ଆପଣ କଣ କିଛି ବୁଝାନ୍ତି ନାହିଁ, ମିଷ୍ଟାର ଓଏ୍ୟବଷ୍ଟାର ?

ନା, କିଛି ନୁହେଁ—ଗମ୍ଭୀର କଣ୍ଠରେ ଡାନିଏଲ ଓ୍ୱେବଷ୍ଟାର କହିଲେ।

• କିଛି ନୁହେଁ ? ଭାବି ଦେଖନ୍ତୁ—କଥା ଅସମାପ୍ତ ରଖି ସ୍କ୍ରାଚ ଆର୍ତ୍ତନାଦ କରି କହିଲା—ମୋ କାନ୍ଧ ଯେ ଭାଙ୍ଗିଗଲା, ମିଷ୍ଟାର ଓ୍ୱେବଷ୍ଟାର !

—ତୁମର କାନ୍ଧ ନୁହେଁ ଯେ ମୋର ଲୋଭ। ତଥାପି ତୁମକୁ ଛାଡ଼ି ଦେଉଛି। କିନ୍ତୁ ମୋର ଗୋଟିଏ କଥାର ଉତ୍ତର ଦିଅ। ମୋର ରାଷ୍ଟ୍ରପତି ହେବାର ଆଶା କଣ ସଫଳ ହେବ ?

—ନା। କିନ୍ତୁ ଯଦି ମୋ କଥା ଶୁଣ —।

—ତୁମ କଥା ! ଡାନିଏଲ ଆଉ ଥରେ ସ୍କ୍ରାଚର କାନ୍ଧ ହଲାଇ ଦେଲେ।

—ନା, ନା, ଆଉ କହିବି ନାହିଁ। ମୋତେ ଛାଡ଼ି ଦିଅ। ଏ ଯନ୍ତ୍ରଣା ମୁଁ ଆଦୌ ସହି ପାରୁ ନାହିଁ।

—ରାଷ୍ଟ୍ରପତି ହେବାକୁ ମୁଁ ଚାହେଁ ନାହିଁ। ଆମ ୟୁନିୟନର ଅବସ୍ଥା କଣ ହେବ ?

—ଆପଣଙ୍କ ମୃତ୍ୟୁ ପରେ ବିଖ୍ୟାତ ହେବ।

—ଏଁ, ମୋ ମୃତ୍ୟୁ ପରେ ! ତାହା ହେଉ, ତାହାହେଲେ ମୋର ମୃତ୍ୟୁ ହେଉ। ୟୁନିୟନ ତ ବିଖ୍ୟାତ ହେବ ! ଡାନିଏଲ ଓ୍ୱେବଷ୍ଟାରର ମୁଖ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା। ସେ ହସି ହସି କହିଲେ—ବେଶ୍, ବେଶ୍, ତୁମକୁ ଆଉ କ୍ଷତିପୂରଣ ଦେବାକୁ ପଡ଼ିବ ନାହିଁ। ତୁମେ ଚାଲି ଯାଅ।

ମିଷ୍ଟାର ସ୍କ୍ରାଚର କାନ୍ଧ ଉପରୁ ହାତ କାଢ଼ି ନେବା ମାତ୍ରେ, ସେ ଯେମିତି ପବନରେ ମିଳାଇଗଲା।

ଯେତେବେଳେ ନୂତନ ସୂର୍ଯ୍ୟର ପ୍ରଦୀପ୍ତ ସ୍ୱର୍ଣ୍ଣାଲୋକ ଦିଗନ୍ତ ଉଦ୍‌ଭାସିତ କରି ଆକାଶରୁ ଝରି ପଡ଼ୁଥାଏ । ଶାନ୍ତ ଥଣ୍ଡା ପବନ ବହୁଥାଏ । ସେହି ଅରୁଣ ଆଲୋକରେ ଡାନିୟେଲ ଓ୍ୱେବଷ୍ଟାରଙ୍କ ଚକ୍ଷୁ ଝଟକିବାକୁ ଲାଗିଲା ଏବଂ ପବନରେ ତା କପାଳର ଝାଳ ଶୁଖି ଯିବାକୁ ଲାଗିଲା । ଅଚେତନ ଜ୍ୟାବେଜ ଷ୍ଟୋନର ହାତ ଧରି ଟାଣି ନେଇ ସେ କହିଲା – ସୁପ୍ରଭାତ, ମିଷ୍ଟାର ଷ୍ଟୋନ !

ଲୋକେ କହନ୍ତି – ସେହି ଦିନ ଠାରୁ ଶୟତାନ ଆଉ କେବେ ନଇଁ ହାମଶାୟାରକୁ ଆସେ ନାହିଁ– ମାସାଚୁସେଟସ୍ ଓ ଭରମଣ୍ଟର କଥା ଅବଶ୍ୟ ସ୍ୱତନ୍ତ୍ର ।

— ଷ୍ଟିଫେନ ଭିନ୍‌ସେଣ୍ଟ ବେନେଟ

